# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January- 2020**

**୭୬ ଭାଗ   ୬ଷ୍ଠ ସଂଖ୍ୟା   ପୌଷ-ମାଘ   ଜାନୁଆରୀ - ୨୦୨୦**

ସଂଜୟ କୁମାର ସିଂ, ଆଇ.ଏ.ଏସ୍
କମିଶନର ତଥା ଶାସନ ସଚିବ

କୃପାସିନ୍ଧୁ ମିଶ୍ର, ଓ.ଏ.ଏସ୍.
ନିର୍ଦ୍ଦେଶକ

ଡ. ଲେନିନ୍ ମହାନ୍ତି
ସମ୍ପାଦକ

ସମ୍ପାଦନା ସହଯୋଗୀ
ଗୋବିନ୍ଦ ଚନ୍ଦ୍ର ମଲ୍ଲିକ
ସଚ୍ଚିଦାନନ୍ଦ ବାରିକ

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ
ମାନସ ନାୟକ

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
ହେମନ୍ତ କୁମାର ସାହୁ
ସୁମିତ୍ରା କର

ଫଟୋ :
କିଶୋର କୁମାର ସିହ୍ନା, ରାଜୁ ସିଂ
ମନୋରଂଜନ ମହାନ୍ତି


---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ଜାନୁଆରୀ-୨୦୨୦





# ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– ରବୀନ୍ଦ୍ରନାଥ ଠାକୁର




# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।।।




– ବଙ୍କିମଚନ୍ଦ୍ର ଚାଟାର୍ଜୀ





# ଶ୍ରଦ୍ଧାଞ୍ଜଳି



ବୀର ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ





ଚାଖି ଖୁଣ୍ଟିଆ



ନେତାଜୀ ସୁଭାଷ ବୋଷ

# THE CONSTITUTION OF INDIA

## PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

# 'ସାଢ଼େ ଚାରି କୋଟି ଓଡ଼ିଶାବାସୀ ହେଉଛନ୍ତି ମୋର ପରିବାର'

– ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଲୋକସେବା ଭବନର ନୂତନ କନ୍‌ଭେନ୍‌ସନ ହଲ୍‌ରେ ବରିଷ୍ଠ ଅଧିକାରୀଙ୍କ ସମ୍ମିଳନୀର ଉଦ୍‌ଘାଟନ କରିଛନ୍ତି । ଏଥିରେ ଯୋଗ ଦେଇଥିବା ବରିଷ୍ଠ ପ୍ରଶାସକ ଓ ଜିଲ୍ଲାପାଳମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, 'ସାଢ଼େ ଚାରି କୋଟି ଓଡ଼ିଶାବାସୀ ମୋର ପରିବାର । ସେମାନଙ୍କ ଜୀବନଧାରଣର ମାନରେ ପରିବର୍ତ୍ତନ ଆଣିବା ପାଇଁ ଆପଣମାନେ କାମ କରନ୍ତୁ ।'






ମୁଖ୍ୟମନ୍ତ୍ରୀ କହିଥିଲେ-

ପରିବାର ଆମ ସମସ୍ତଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ।

ଆମେ ଚାହୁଁ ଯେ ଆମର ପିଲାମାନେ ଭଲ ପାଠ ପଢନ୍ତୁ ।

ଆମେ ଚାହୁଁ ଯେ ଆମର ଭାଇଭଉଣୀମାନେ ସବୁଠାରୁ ଭଲ ଚାକିରି ପାଆନ୍ତୁ ।

ଆମେ ଚାହୁଁ ଯେ ଆମର ବାପାମା'ଙ୍କୁ ଭଲ ସ୍ୱାସ୍ଥ୍ୟ ସୁବିଧା ମିଳୁ ।

ମୋର ବି ଗୋଟିଏ ପରିବାର ଅଛି । ସାଢେ ଚାରି କୋଟି ଓଡ଼ିଶାବାସୀଙ୍କୁ ନେଇ ମୋର ପରିବାର । ସେମାନଙ୍କ ଆଶୀର୍ବାଦରେ ମୁଁ ଗତ ୨୦ ବର୍ଷ ଧରି ସେବା କରିଆସୁଛି ।

ମୁଁ ଚାହେଁ, ଆମର ପିଲାମାନେ ଗୁଣାତ୍ମକ ଶିକ୍ଷା ପାଆନ୍ତୁ । ଆମର ଭାଇଭଉଣୀମାନେ ଭଲ ଚାକିରି କରନ୍ତୁ । ଆମ ପରିବାରର ବରିଷ୍ଠମାନେ ଉତ୍ତମ ସ୍ୱାସ୍ଥ୍ୟ ସେବା ପାଆନ୍ତୁ ।

ଆପଣମାନେ ସମସ୍ତେ ହେଉଛନ୍ତି ପରିବର୍ତ୍ତନର ଏହି ଧାରାର ମୁଖ୍ୟ ବାହକ । ମୁଁ ନିଶ୍ଚିତ ଯେ ଏହି ସମ୍ମିଳନୀ ଏହି ଲକ୍ଷ୍ୟ ପୂରଣ ଦିଗରେ ନିଶ୍ଚିତ ଭାବେ ସହାୟକ ହେବ ।

'ମୋ ସରକାର'ର ମୁଖବନ୍ଧରେ ଆମର ପ୍ରଶାସନର ବିଶେଷତ୍ୱ ପ୍ରତିଫଳିତ ହୋଇଛି । ତେଣୁ ଆପଣମାନେ ମୋ ସହିତ ଏହି ଶପଥ ନିଅନ୍ତୁ । (ମୁଖ୍ୟମନ୍ତ୍ରୀ ଉପସ୍ଥିତ ସବୁ ମନ୍ତ୍ରୀ ଓ ଅଧିକାରୀମାନଙ୍କୁ ନିମ୍ନୋକ୍ତ ଶପଥପାଠ କରାଇଥିଲେ ।)

'ଜନସାଧାରଣ ହେଉଛନ୍ତି ଗଣତନ୍ତ୍ରର ଆତ୍ମା । ଗଣତନ୍ତ୍ରରେ ପ୍ରତିଟି ଅନୁଷ୍ଠାନ ଲୋକଙ୍କ କଲ୍ୟାଣ ପାଇଁ, ଲୋକଙ୍କ ପଇସାରେ, ଲୋକଙ୍କ ସେବା ଓ ସଶକ୍ତିକରଣ ପାଇଁ ସୃଷ୍ଟି କରାଯାଇଛି ।

ଏହି ପୋଲିସ ଥାନା/ଡାକ୍ତରଖାନା/କାର୍ଯ୍ୟାଳୟ ଲୋକଙ୍କ ସେବା ପାଇଁ ଅଛି । ଲୋକମାନେ ହିଁ ଏହାର ପ୍ରକୃତ ମାଲିକ ।

ଏହି କାର୍ଯ୍ୟାଳୟକୁ ଆସୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଉତ୍ତମ ବ୍ୟବହାର ପ୍ରଦର୍ଶନ କରାଯିବା ସହ ବୃତ୍ତିଗତ ଏବଂ ସେବା ମନୋଭାବ ନେଇ ସେମାନଙ୍କ ସମସ୍ୟା ସମାଧାନ ପାଇଁ ପଦକ୍ଷେପ ଗ୍ରହଣ କରାଯିବ ।

ଲୋକମାନେ ହେଉଛନ୍ତି ପ୍ରକୃତ ସରକାର ଏବଂ ଏଠାରେ କାମ କରୁଥିବା ସମସ୍ତ କର୍ମଚାରୀ ଲୋକଙ୍କ ପଇସାରେ ହିଁ ବେତନ ପାଉଛନ୍ତି' ।



### ଖଲ୍ଲିକୋଟର ରାଜା ବାହାଦୂର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓଙ୍କ ୧୨୧ତମ ଜୟନ୍ତୀ ପାଳିତ

# ରାଜା ବାହାଦୂର ଜଣେ ସ୍ୱାଭିମାନୀ ଓଡ଼ିଆ ଓ ନିଷ୍ଠାପର ଜନସେବକ ଥିଲେ

– ମୁଖ୍ୟମନ୍ତ୍ରୀ




ସୂଚନା ଓ ଲୋକସମ୍ପର୍କ ବିଭାଗ ଓ ପୂଜ୍ୟପୂଜା ସାହିତ୍ୟ ସଂସଦର ମିଳିତ ଆନୁକୂଲ୍ୟରେ ସ୍ଥାନୀୟ ଜୟଦେବ ଭବନଠାରେ ଖଲ୍ଲିକୋଟର ରାଜା ବାହାଦୂର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓଙ୍କ ୧୨୧ତମ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବ ପାଳିତ ହୋଇଯାଇଛି । ଏହି କାର୍ଯ୍ୟକ୍ରମରେ ମୁଖ୍ୟ ଅତିଥିଭାବେ ଯୋଗ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଥିଲେ ଯେ ସ୍ୱର୍ଗତ ରାଜା ବାହାଦୂର ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ଜଣେ ସଫଳ ବ୍ୟକ୍ତିତ୍ୱ ଥିଲେ । ଉଭୟ ରାଜତନ୍ତ୍ର ଓ ଗଣତନ୍ତ୍ରରେ ସେ ସଫଳତାର ସହିତ ତାଙ୍କର ଦାୟିତ୍ୱ ନିର୍ବାହ କରି ଜନସାଧାରଣଙ୍କର ଶ୍ରଦ୍ଧା ଓ ଆଦର ଲାଭ



କରିପାରିଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଅବଦାନ ଯେତିକି ଗୁରୁତ୍ୱପୂର୍ଣ୍ଣ ଥିଲା, ଗଞ୍ଜାମ ଓ ଓଡ଼ିଶାର ବିକାଶ କ୍ଷେତ୍ରରେ ତାଙ୍କର ଅବଦାନ ତତ୍ତୁଲ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା । ଜଣେ ସ୍ୱାଭିମାନୀ ଓଡ଼ିଆ ଓ ନିଷ୍ଠାପର ଜନସେବକ ଭାବରେ ସେ ସବୁଦିନ ପାଇଁ ଲୋକଙ୍କ ହୃଦୟରେ ବଞ୍ଚି ରହିବେ । ତାଙ୍କର କାର୍ଯ୍ୟଧାରା, ଆଦର୍ଶ, ପ୍ରତିବଦ୍ଧତା ଏବଂ ଓଡ଼ିଶା ମାଟି ପ୍ରତି ତାଙ୍କର ନିଷ୍ଠା ଆମ ସମସ୍ତଙ୍କ ପାଇଁ ପ୍ରେରଣା ବୋଲି ମୁଖ୍ୟମନ୍ତ୍ରୀ ବର୍ଣ୍ଣନା କରି ରାଜା ବାହାଦୂରଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।








# ପ୍ରବାସୀ ଶ୍ରମିକଙ୍କ ସୁରକ୍ଷା ଓ ସହାୟତା ନିମନ୍ତେ ସ୍ୱତନ୍ତ୍ର ପ୍ୟାକେଜ୍

ଓଡ଼ିଶାକୁ ଦେଶର ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବାର ସ୍ୱପ୍ନର ଏକ ଅଂଶ ନିର୍ଭର କରେ ରାଜ୍ୟର ଶ୍ରମ ଶକ୍ତିର ସୁବିନିଯୋଗ । ଏହାକୁ ସାକାର କରିବା ପାଇଁ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ଓଡ଼ିଆ ପ୍ରବାସୀ ଶ୍ରମିକଙ୍କ ଉଦ୍ଦେଶ୍ୟରେ ତିଆରି ହୁଏ ଏକ ରାଜ୍ୟ ଖସଡା (State Action plan)। ବଲାଙ୍ଗୀର ଓ ନୂଆପଡା ଜିଲ୍ଲାରୁ ଉଦ୍ୟମ ଆରମ୍ଭ ହୁଏ ଏବଂ କାର୍ଯ୍ୟକ୍ରମ ସଂପ୍ରସାରିତ ହୁଏ ୧୧ ଗୋଟି ଜିଲ୍ଲା ଯଥା- ବଲାଙ୍ଗୀର, ବରଗଡ, କଳାହାଣ୍ଡି, ନୂଆପଡା, ସୁବର୍ଣ୍ଣପୁର, ଗଞ୍ଜାମ, ଗଜପତି, କୋରାପୁଟ, ରାୟଗଡା, ନବରଙ୍ଗପୁର ଏବଂ ଖୋର୍ଦ୍ଧାକୁ ।

ରାଜ୍ୟ ଶ୍ରମ ଓ ଇଏସ୍ଆଇ ବିଭାଗର ପ୍ରମୁଖ ସଚିବ ଏବଂ ବରିଷ୍ଠ ଅଧିକାରୀ ଜିଲ୍ଲା ସ୍ତରରେ ଗସ୍ତ କରି ଗ୍ରାମ ଏବଂ ପଞ୍ଚାୟତ



ସ୍ତରରେ ପ୍ରବାସୀ ଶ୍ରମିକ ଏବଂ ତାଙ୍କର ପରିବାରମାନଙ୍କ ସହ ଆଲୋଚନା କରି ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ପଞ୍ଚାୟତ ସ୍ତରରେ ପ୍ରବାସୀ ନିର୍ମାଣ ଶ୍ରମିକମାନଙ୍କୁ ଚିହ୍ନଟ କରି ଓଡ଼ିଶା କୋଠାବାଡି ଓ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡରେ ପଞ୍ଜିକୃତ କରି ବିଭିନ୍ନ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଅଛି ।

ଏକ ସ୍ୱତନ୍ତ୍ର ରାଜ୍ୟ ଖସଡା ମାଧ୍ୟମରେ ରାଜ୍ୟ ସରକାର ଅନ୍ୟାନ୍ୟ ସରକାରୀ ବିଭାଗ ସହିତ ସମନ୍ୱୟ ରକ୍ଷା କରି ଏ ଦିଗରେ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ସର୍ବୋପରି ପ୍ରବାସୀ ଶ୍ରମିକମାନଙ୍କୁ ଆର୍ଥିକ ମାନଦଣ୍ଡର ମୁଖ୍ୟସ୍ରୋତରେ ସାମିଲ କରିବା ପାଇଁ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ସହିତ ସମନ୍ୱୟ ରକ୍ଷା କରି ଓଡ଼ିଶାର ୪ଗୋଟି ଜିଲ୍ଲା ଯଥା- ବରଗଡ, ବଲାଙ୍ଗୀର, କଳାହାଣ୍ଡି ଓ ନୂଆପଡାର ୨୦ଟି

ବ୍ଲକ୍‌ରେ ଥିବା ସମସ୍ତ ପଞ୍ଚାୟତରେ ମହାତ୍ମା ଗାନ୍ଧୀ ନରେଗା ଏବଂ ଓଡ଼ିଶା ଜୀବିକା ମିଶନର ବିଭିନ୍ନ ପ୍ରକଳ୍ପ ମାଧ୍ୟମରେ ନାନାଦି ବିକାଶମୂଳକ କାର୍ଯ୍ୟକ୍ରମର ଆରମ୍ଭ କରାଯାଇଅଛି ।

ଓଡ଼ିଶା ସରକାରଙ୍କ ବିଦ୍ୟାଳୟ ଏବଂ ଗଣଶିକ୍ଷା ବିଭାଗ ସହଯୋଗରେ ୪ଗୋଟି ଜିଲ୍ଲା ଯଥା- ବଲାଙ୍ଗୀର, ବରଗଡ, କଳାହାଣ୍ଡି ଏବଂ ନୂଆପଡାଠାରେ ପ୍ରବାସୀ ଶ୍ରମିକ ପିଲାମାନଙ୍କ ପାଇଁ ଋତୁକାଳୀନ ଛାତ୍ରାବାସ ପ୍ରତିଷ୍ଠା କରାଯାଇଅଛି । ୨୦୧୮-୧୯ ବର୍ଷରେ ୧୬୪ଗୋଟି ଛାତ୍ରାବାସ ଖୋଲାଯାଇ ୭,୨୦୮ ଜଣ ପିଲାଙ୍କୁ ରଖାଯାଇଥିଲା ।

ଏହାଛଡା ଗୃହ ବିଭାଗ ସହାୟତାରେ ଜିଲ୍ଲାସ୍ତରରେ ଆଣ୍ଟି ହ୍ୟୁମ୍ୟାନ ଟ୍ରାଫିକିଙ୍ଗ୍ ୟୁନିଟ୍‌କୁ ସଶକ୍ତ କରାଯାଇଅଛି । ଖୁବ୍‌ଶୀଘ୍ର ଏହା ଅନ୍ୟ ରାଜ୍ୟ ଯଥା ତାମିଲନାଡୁ, କର୍ଣ୍ଣାଟକ, ଗୁଜୁରାଟ ଏବଂ କେରଳକୁ ସଂପ୍ରସାରିତ ହେବ ।

ଓଡ଼ିଆ ପ୍ରବାସୀ ଶ୍ରମିକମାନଙ୍କର ସୁରକ୍ଷା ଓ କଲ୍ୟାଣ ନିମନ୍ତେ ଏକ ନିଃଶୁଳ୍କ ଶ୍ରମିକ ସହାୟତା ନମ୍ବର (୧୫୫୩୬୮) ରାଜ୍ୟ ଭିତରେ ଏବଂ ରାଜ୍ୟ ବାହାର ପାଇଁ ୧୮୦୦୩୪୫୬୭୦୩ । ରାଜ୍ୟ ସରକାରଙ୍କର ଶ୍ରମ ଏବଂ ଇଏସ୍‌ଆଇ ବିଭାଗ ଦ୍ୱାରା ପ୍ରଚଳନ କରାଯାଉଅଛି । ଏହା ମାଧ୍ୟମରେ ପ୍ରବାସୀ ଶ୍ରମିକମାନଙ୍କର ତ୍ୱରିତ ଉଦ୍ଧାର ସହ ବିଭିନ୍ନ ଅଭିଯୋଗର ସମାଧାନ ନିମନ୍ତେ 'ଇ-ଶ୍ରମିକ ସମାଧାନ' ବ୍ୟବସ୍ଥାର ଶୁଭାରମ୍ଭ କରାଯାଇଅଛି । ଏହା ୫'ଟି' ଏବଂ 'ମୋ ସରକାର' ଅନ୍ତର୍ଗତ ଆରମ୍ଭ କରାଯାଇଥିବା ସ୍ୱତନ୍ତ୍ର ପ୍ରୟାସକୁ ବିଶେଷ ଭାବରେ ସହାୟକ ହେବ ।

ଏତଦ୍‌ବ୍ୟତୀତ ବିଭିନ୍ନ ସଂଗଠନର ସହଯୋଗରେ ବ୍ୟାପକ ସଚେତନତା କାର୍ଯ୍ୟକ୍ରମ ହାତକୁ ନିଆଯାଇଅଛି । 'ଶ୍ରମିକ ସାରଥି' ଏବଂ 'ଶୁଣ ଶ୍ରମିକ' ଜରିଆରେ ଏହା ପ୍ରବାସୀ ଶ୍ରମିକଙ୍କ ପରିବାର ପାଖରେ ପହଞ୍ଚିପାରିଛି ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପ୍ରବାସୀ ଶ୍ରମିକମାନଙ୍କର ଦୁର୍ଦ୍ଦଶାର ଅନ୍ତ ଏବଂ ଆର୍ଥିକ ମାନଦଣ୍ଡର ସୁଦୃଢୀକରଣ ନିମନ୍ତେ ଘୋଷଣା କରିଥିବା ବିଭିନ୍ନ ସ୍ୱତନ୍ତ୍ର ସହାୟତା ପ୍ୟାକେଜ୍ ଓଡ଼ିଶାକୁ ଜାତୀୟସ୍ତରରେ ଏକ ଆଦର୍ଶ ରାଜ୍ୟ ଭାବରେ ପରିଗଣିତ କରିବ, ଏଥିରେ ସନ୍ଦେହ ନାହିଁ ।

୧. ମହାତ୍ମା ଗାନ୍ଧୀ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା ଅନୁଯାୟୀ ଅଣକୁଶଳୀ ଶ୍ରମିକମାନେ ଦୈନିକ ୧୮୮ ଟଙ୍କା ମଜୁରି ହାରରେ ବର୍ଷକୁ ୧୦୦ ଦିନ କାର୍ଯ୍ୟ କରିବା ବ୍ୟବସ୍ଥା ରହିଥିବାବେଳେ ଓଡ଼ିଶାର ରାଜ୍ୟ ସରକାର ପ୍ରବାସୀ ଶ୍ରମିକ ପ୍ରବଣ ୪ଗୋଟି ମୁଖ୍ୟ ଜିଲ୍ଲା ଯଥା- ବରଗଡ, ବଲାଙ୍ଗୀର, ନୂଆପଡା ଓ କଳାହାଣ୍ଡିର ୨୦ଟି ବ୍ଲକ୍‌ରେ ପ୍ରତ୍ୟେକ ଗ୍ରାମୀଣ ପରିବାର ନିମନ୍ତେ ଅତିରିକ୍ତ ୧୦୦ ଦିନ କାର୍ଯ୍ୟ ସହିତ ଦୈନିକ ଟ. ୨୮୬.୩୦ପ.କୁ ବୃଦ୍ଧି କରିଛନ୍ତି ଏବଂ ଶ୍ରମିକ ଭାଇଭଉଣୀମାନେ ବାହାର ରାଜ୍ୟକୁ ଯାଇ ଭୋଗୁଥିବା ଦୁର୍ଦ୍ଦଶାରୁ ମୁକ୍ତି ପାଇବା ସକାଶେ ଏହି ବାବଦ ଅତିରିକ୍ତ ଆର୍ଥିକ ଭାର ରାଜ୍ୟ ସରକାର ବହନ କରିବା ପାଇଁ ସ୍ଥିର କରିଛନ୍ତି ।

୨. ନିଯୁକ୍ତି ପାଇଥିବା ଶ୍ରମିକମାନଙ୍କର ପ୍ରାପ୍ୟ ନିର୍ଦ୍ଧାରିତ ସମୟରେ ଏବଂ ବିନା ଅସୁବିଧାରେ ପ୍ରଦାନ ନିମନ୍ତେ ୫୦୦ କୋଟି ଟଙ୍କାର ଏକ ରାଜ୍ୟସ୍ତରୀୟ କର୍ପସ ପାଣ୍ଠି ଗଠନ ।

୩. ଉପରୋକ୍ତ ୪ଗୋଟି ଜିଲ୍ଲାର ୨୦ ଗୋଟି ବ୍ଲକ୍‌ର ସମସ୍ତ ଗ୍ରାମପଞ୍ଚାୟତଗୁଡିକୁ ଓଡ଼ିଶା ଜୀବିକା ମିଶନର ସଘନ ପଞ୍ଚାୟତ (ଇନ୍‌ଟେନସିଭ୍ ଜିପି) ଭାବରେ କାର୍ଯ୍ୟକାରୀ କରାଯାଉଅଛି ।

୪. ଉକ୍ତ ପଞ୍ଚାୟତରେ ଥିବା ପ୍ରତ୍ୟେକ ପରିବାରକୁ ସ୍ୱୟଂ ସହାୟକ ଗୋଷ୍ଠୀରେ ଅନ୍ତର୍ଭୁକ୍ତ କରିବା ପାଇଁ ବ୍ୟବସ୍ଥା କରାଯାଇଅଛି ।

୫. ଗୋଷ୍ଠୀ ବିନିଯୋଗ ପାଣ୍ଠି (ସିଆଇଏଫ୍) ଏବଂ ନିରାପତ୍ତା ପାଣ୍ଠି (ଭିଆର୍ଏଫ୍)ରୁ ଆର୍ଥିକ ସହାୟତା ଉପରୋକ୍ତ ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ଏହାର ସଦସ୍ୟମାନଙ୍କୁ ଯଥାକ୍ରମେ ଯୋଗାଇ ଦିଆଯିବାର ବ୍ୟବସ୍ଥା ରହିଛି ।

୬. ସୁରକ୍ଷିତ ଜୀବିକା ଓ ସଶକ୍ତିକରଣ ପାଇଁ ସହାୟତା ଚାହୁଁଥିବା ବ୍ୟକ୍ତି ନିଜ ଅଞ୍ଚଳର ଗୋଷ୍ଠୀ ଉନ୍ନୟନ ଅଧିକାରୀ (ବିଡିଓ)ଙ୍କ ପାଖରେ ନିରାପତ୍ତା ପାଣ୍ଠିରୁ ଆର୍ଥିକ ସହାୟତା ନିମନ୍ତେ ଆବେଦନ କରିପାରିବେ ।

୭. ସମସ୍ତ ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟଙ୍କୁ ବୀମାଭୁକ୍ତ କରିବା ନିମନ୍ତେ ପଦକ୍ଷେପ ନିଆଯାଉଅଛି ।

୮. ପ୍ରବାସୀ ଶ୍ରମିକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି କରିବା ସହିତ ନିଜ ଅଞ୍ଚଳରେ କାମ କରିବା ପାଇଁ ବ୍ୟାଙ୍କିଂ ସୁବିଧା ସହିତ ଅର୍ଥରାଶି ଯୋଗାଇ ଦେବା ନିମନ୍ତେ ଉପରୋକ୍ତ ୨୦ ଗୋଟି ବ୍ଲକ୍‌ରେ ଚିହ୍ନଟ ହୋଇଥିବା ସ୍ୱୟଂ ସହାୟକ ଗୋଷ୍ଠୀ ସଦସ୍ୟଙ୍କୁ ବ୍ୟାଙ୍କ୍ ମିତ୍ର ହିସାବରେ ଘୋଷିତ କରାଯିବ ।

୯. ୧୮ରୁ ୩୫ ବର୍ଷ ମଧ୍ୟରେ ଥିବା ଯୋଗ୍ୟ ଯୁବକଯୁବତୀମାନଙ୍କୁ ଧନ୍ଦାମୂଳକ ଓ ନିଯୁକ୍ତିଭିତ୍ତିକ ତାଲିମ 'ଓରମାସ୍' ମାଧ୍ୟମରେ ଦିଆଯାଉଛି ।

୧୦. ଉପରୋକ୍ତ ୪ଟି ଜିଲ୍ଲାର ୨୦ ଗୋଟି ବ୍ଲକ୍‌ରେ ଯୋଗ୍ୟ ବିବେଚିତ ପରିବାରକୁ ପକ୍କା ଘର ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଉଅଛି ।

୧୧. ଉପରୋକ୍ତ ୪ଟି ଜିଲ୍ଲାର ୨୦ଗୋଟି ବ୍ଲକ୍‌ରେ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇ ଯୋଗ୍ୟ ବିବେଚିତ ନିର୍ମାଣ ଶ୍ରମିକମାନଙ୍କୁ ଓଡ଼ିଶା କୋଠାବାଡି ଏବଂ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ ଜରିଆରେ ପେନ୍‌ସନ୍, ବିବାହ, ଶିକ୍ଷା ନିମନ୍ତେ ସହାୟତା ଏବଂ ପକ୍କା ଘର ଦେବା ସହ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି ।

୧୨. ଉପରୋକ୍ତ ୪ଟି ଜିଲ୍ଲାର ୨୦ଗୋଟି ବ୍ଲକ୍‌ରେ ପ୍ରବାସୀ ଶ୍ରମିକମାନଙ୍କର ସହାୟତା ନିମନ୍ତେ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ଶ୍ରମିକ ମିତ୍ରମାନଙ୍କୁ ନିୟୋଜନ କରାଯିବ ।

୧୩. ପ୍ରବାସୀ ଶ୍ରମିକମାନଙ୍କୁ ଶୋଷଣରୁ ରକ୍ଷା କରିବା ଏବଂ ସରକାରଙ୍କ ବିଭିନ୍ନ ବିକାଶମୂଳକ ଯୋଜନାରେ ସାମିଲ କରିବା ନିମନ୍ତେ ଜିଲ୍ଲା ଏବଂ ରାଜ୍ୟସ୍ତରରେ ଡାଟାବେସ୍ ତିଆରି କରାଯିବାର ବ୍ୟବସ୍ଥା କରାଯାଇଅଛି ।

୧୪. ପ୍ରବାସୀ ଶ୍ରମିକମାନଙ୍କର ବ୍ୟାପକ ସଚେତନତା ନିମନ୍ତେ ଏକ ସ୍ୱତନ୍ତ୍ର ସୂଚନା, ଶିକ୍ଷା ଏବଂ ଯୋଗାଯୋଗ କାର୍ଯ୍ୟପନ୍ଥା କାର୍ଯ୍ୟକାରୀ କରାଯାଇଅଛି ।



# ସାଧାରଣତନ୍ତ୍ର ଦିବସ -୨୦୨୦ ଅବସରରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଙ୍କ ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ,

୭୧ତମ ସାଧାରଣତନ୍ତ୍ର ଦିବସ ଅବସରରେ, ମୁଁ ଆପଣ ସମସ୍ତଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି । ଏହି ପବିତ୍ର ଦିବସଟି ଆମ ସମସ୍ତଙ୍କ ପାଇଁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଅଟେ । ଏହା ଆମମାନଙ୍କ ପାଇଁ ଏକ ଗର୍ବ ଓ ଗୌରବର ଦିନ ହେବା ସହିତ ଆମମାନଙ୍କୁ ଅତୀତର ସ୍ମୃତିଚାରଣ କରିବା ଓ ଭବିଷ୍ୟତ ନିମନ୍ତେ ସଙ୍କଳ୍ପବଦ୍ଧ ହେବାକୁ ଅବସର ପ୍ରଦାନ କରିଥାଏ । ୧୯୫୦ ମସିହାର ଏହି ଐତିହାସିକ ଦିବସରେ ଆମେ ସାର୍ବଭୌମତ୍ୱ ଲାଭ କରିଥିଲୁ । ଏହାକୁ ହାସଲ କରିବାରେ ଆମର ବୀର ସହିଦ୍‌ମାନଙ୍କ ଆତ୍ମବଳିଦାନକୁ ସମ୍ମାନର ସହ ସ୍ମରଣ କରିବା ନିମନ୍ତେ ଏହି ଦିବସଟି ଆମମାନଙ୍କୁ ମଧ୍ୟ ଏକ ସୁଯୋଗ ପ୍ରଦାନ କରିଥାଏ । ଏହି ଅବସରରେ, ଆମେ ଆମର ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଅବୁଲ କଲାମ ଆଜାଦ୍, ଆମ ସମ୍ବିଧାନର ପ୍ରଣେତା ଡକ୍ଟର ଭୀମ୍‌ରାଓ ଆମ୍ବେଦକର, ବହୁ ରାଷ୍ଟ୍ରନୀତିଜ୍ଞ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆମର ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ରାଜ୍ୟର ମହାନ୍ ସଂଗ୍ରାମୀ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଚାଖି ଖୁଣ୍ଟିଆ, ବିର୍ସା ମୁଣ୍ଡା, ଲକ୍ଷ୍ମଣ ନାଏକ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଚୌଧୁରୀ, ମାଳତୀ ଚୌଧୁରୀ, ମା' ରମାଦେବୀ, ପାର୍ବତୀ ଗିରି, ଡକ୍ଟର ହରେକୃଷ୍ଣ ମହତାବ, ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପରି ଯେଉଁ ଅଗଣିତ ଦେଶପ୍ରେମୀ ଏବଂ ମହାମନୀଷୀମାନେ ଅବିରତ ସଂଗ୍ରାମ ଓ ଅତୁଳନୀୟ ବଳିଦାନ ରଖିଯାଇଛନ୍ତି, ଏହି ପବିତ୍ର ଦିବସ ପାଳନ ଅବସରରେ, ଆମେ ତାଙ୍କର ସେହି ନିଃସ୍ୱାର୍ଥପର ଅବଦାନ ପ୍ରତି ମଧ୍ୟ ଗଭୀର କୃତଜ୍ଞତା ଜଣାଉଛୁ ।

ଏହି ଦିବସଟି ଭାରତର ସମ୍ବିଧାନ ଗୃହୀତ ହେବାର ସ୍ମୃତିକୁ ଉଜ୍ଜୀବିତ କରିଥାଏ ଏବଂ ଆମ ଦେଶକୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ସ୍ୱୀକୃତି ଦେଇଥାଏ । ଆମର ସମ୍ବିଧାନ, ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ର ନିମନ୍ତେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ସୁନିଶ୍ଚିତ କରିଛି । ଗଣତନ୍ତ୍ରର ସାରବତ୍ତା ଏବଂ ଧର୍ମନିରପେକ୍ଷତା ହେଉଛି ଆମ ସମ୍ବିଧାନର ଆତ୍ମା ସଦୃଶ ।

ପ୍ରତ୍ୟେକ ନାଗରିକର ମୌଳିକ ଅଧିକାରଗୁଡିକର ସୁରକ୍ଷା ଉପରେ ଆଧାରିତ ଆମର ଗଣତନ୍ତ୍ର ହେଉଛି ଭାରତୀୟ ସମ୍ବିଧାନର ମୂଳପିଣ୍ଡ । ସମ୍ବିଧାନର ମୁଖବନ୍ଧ, ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟଗୁଡିକୁ ଧାରଣ କରିଛି । ସ୍ୱତନ୍ତ୍ରତା, ସମାନତା ଏବଂ ଭ୍ରାତୃତ୍ୱଭାବ ସହ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ ବିଧାନର ଚିନ୍ତାଧାରା, ଆମ ସମ୍ବିଧାନର ମୂଳଭିତ୍ତି ଓ ନୀତି ଅଟେ । ବିବିଧତାରେ ଏକତା ହେଉଛି ଆମର ପରମ୍ପରା ଏବଂ ଏପରି ପରମ୍ପରାକୁ ଧରି ରଖିବାରେ ଆମ ସମ୍ବିଧାନ ତଥା ଗଣତନ୍ତ୍ର ନିମନ୍ତେ ଆମର ସର୍ବୋଚ୍ଚ ସମ୍ମାନ ପ୍ରଦର୍ଶନ ହେବ । ନିଷ୍ଠା ତଥା ଉତ୍ସର୍ଗୀକୃତ ମନୋଭାବ ସହ ଆମର କର୍ତ୍ତବ୍ୟ ସଂପାଦନ କରି ସ୍ୱାଧୀନତାକୁ ସୁରକ୍ଷିତ ରଖିବା ପ୍ରତ୍ୟେକ ଭାରତୀୟ ନାଗରିକର ପ୍ରଧାନ କର୍ତ୍ତବ୍ୟ ଅଟେ ।

ଗଣତନ୍ତ୍ରରେ ଲୋକଙ୍କ ନିକଟରେ ସାଧାରଣ ସେବା ପହଞ୍ଚାଇବା ହେଉଛି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଏବଂ ସାଧାରଣ ଜନତାଙ୍କ ସଶକ୍ତିକରଣ ଗଣତନ୍ତ୍ରକୁ ସୁଦୃଢ଼ କରିଥାଏ । ଓଡ଼ିଶା ବର୍ତ୍ତମାନ ଏହି ପଥରେ ଦୃଢ଼ ଭାବେ ଅଗ୍ରସର ହେବା ସହ ଶାସନ ବ୍ୟବସ୍ଥାରେ ଜନସାଧାରଣଙ୍କୁ କେନ୍ଦ୍ରରେ ରଖି ନିଜର ଏକ ନୂତନ ପରିଚୟ ସୃଷ୍ଟି କରିପାରିଛି । ଓଡ଼ିଶାରେ ଏକ ଦୃଢ଼ ଏବଂ ସ୍ଥିର ପ୍ରଶାସନିକ ବ୍ୟବସ୍ଥା ମଧ୍ୟରେ ସଶକ୍ତିକରଣ ସହ ବିକାଶ ତ୍ୱରାନ୍ୱିତ ହୋଇଛି । ପରିବର୍ତ୍ତନର ଧାରା

ଉଲ୍ଲେଖନୀୟ ହେବା ସହ ସାମଗ୍ରିକ ଅଭିବୃଦ୍ଧିରେ ସହାୟକ ହୋଇପାରିଛି । ଦୁର୍ନୀତି ବିରୁଦ୍ଧରେ ଶୂନ ସହନଶୀଳତା ଏବଂ ୫ 'ଟି' ଆଧାରରେ ସ୍ୱଚ୍ଛ ପ୍ରଶାସନିକ ନୀତି ସହ ଅଧୁନା ରାଜ୍ୟ ଦ୍ରୁତ ଉନ୍ନତି ପଥରେ ଆଗେଇ ଚାଲିଛି । ନାଗରିକଙ୍କ ମତାମତ ଆଧାରରେ ସାଧାରଣ ସେବାଗୁଡ଼ିକ ପ୍ରଦାନ କରିବାରେ ସ୍ୱଚ୍ଛତା ଆଣିବାକୁ ଲକ୍ଷ୍ୟ ରଖିଥିବା ତଥା ୫'ଟି' ଆଧାରିତ ପଦକ୍ଷେପ ଦ୍ୱାରା ପରିଚାଳିତ 'ମୋ ସରକାର' ନିଜର ଉତ୍ତରଦାୟିତ୍ୱ ନିର୍ବାହ କରିବା ସହ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ନାଗରିକମାନଙ୍କୁ ପ୍ରକୃତ ମାଲିକ ବୋଲି ବିବେଚନା କରେ । ପ୍ରଶାସନିକ ପ୍ରକ୍ରିୟାରେ ଜନସାଧାରଣଙ୍କ ସକାରାତ୍ମକ ସହଯୋଗ ଓ ସକ୍ରିୟ ଅଂଶଗ୍ରହଣ ଦ୍ୱାରା ଓଡ଼ିଶାର ଅଭିବୃଦ୍ଧି ଉଲ୍ଲେଖନୀୟ ହୋଇପାରିଛି । ନାଗରିକକେନ୍ଦ୍ରିକ ସେବା ପ୍ରଦାନରେ ଉନ୍ନତି ଆଣିବାକୁ ଗୁରୁତ୍ୱ ଦେଇ, 'ମୋ ସରକାର', ମର୍ଯ୍ୟାଦାପୂର୍ଣ୍ଣ, ବୃତ୍ତିଗତ ତଥା ସକ୍ରିୟ ପ୍ରଶାସନ ସହ ଜନହିତୈଷୀ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନକୁ ସୁନିଶ୍ଚିତ କରିଛି ।

ଗରିବ, ବଞ୍ଚିତ ଶ୍ରେଣୀ, ଭିନ୍ନକ୍ଷମ ହିତାଧିକାରୀଙ୍କ ମଙ୍ଗଳବିଧାନ, ଶିଶୁକନ୍ୟାମାନଙ୍କ ସଶକ୍ତିକରଣ, ମହିଳା, ଯୁବଗୋଷ୍ଠୀ, କୃଷକ, ଶ୍ରମିକ ଶ୍ରେଣୀର ଉନ୍ନତି, ଅନୁସୂଚିତ ଜନଜାତି ଓ ଜାତି ବର୍ଗର ବିକାଶ ଉପରେ ରାଜ୍ୟ ସରକାର ବିଶେଷ ଗୁରୁତ୍ୱାରୋପ କରିଛନ୍ତି । ଏଥିସହିତ ବିଭିନ୍ନ ଜନକଲ୍ୟାଣମୂଳକ ଯୋଜନାର ସଫଳ ରୂପାୟନ ସହ ସମାନୁପାତିକ ତଥା ସାମଗ୍ରିକ ବିକାଶ ଓଡ଼ିଶାର ନିଶ୍ଚିତ ଅଭିବୃଦ୍ଧିକୁ ସୂଚିତ କରୁଛି ।

ସମସ୍ତଙ୍କୁ ଉତ୍ତମ ତଥା ସହଜଲବ୍ଧ ସ୍ୱାସ୍ଥ୍ୟସେବା ପ୍ରଦାନକୁ ସୁନିଶ୍ଚିତ କରିବା ଦିଗରେ ଓଡ଼ିଶା ବିଭିନ୍ନ ପରିବର୍ତ୍ତନମୂଳକ ପଦକ୍ଷେପ ଗ୍ରହଣ କରିଛି । ଓଡ଼ିଶାରେ ଲକ୍ଷ ଲକ୍ଷ ମହିଳାମାନଙ୍କର ଅର୍ଥନୈତିକ ସ୍ୱାଧୀନତା ଓ ସଶକ୍ତିକରଣର ଏକ ବଳିଷ୍ଠ ମାଧ୍ୟମରୂପେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକର ସଫଳତା ତଥା ମିଶନ୍ ଶକ୍ତି କାର୍ଯ୍ୟକ୍ରମ ଆଜି ଆଦର୍ଶ ସ୍ଥାନୀୟ ହୋଇପାରିଛି । ଓଡ଼ିଶାର ବିକାଶ କାର୍ଯ୍ୟକ୍ରମରେ ମହିଳାମାନଙ୍କୁ ଅବିଚ୍ଛେଦ୍ୟ ଅଙ୍ଗରୂପେ ସାମିଲ କରି ସେମାନଙ୍କୁ ସଶକ୍ତ କରିବା ନିମନ୍ତେ ଓଡ଼ିଶାର ଲକ୍ଷ୍ୟ ରହିଛି ଏବଂ ଏଥିନିମନ୍ତେ ମହିଳାମାନଙ୍କୁ ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶୀଦାର ରୂପେ ଗ୍ରହଣ କରାଯାଉଛି । ପ୍ରାକୃତିକ ବିପର୍ଯ୍ୟୟ ପରିଚାଳନା, ସାମାଜିକ ନିରାପତ୍ତା ଓ ବିଭିନ୍ନ ଜନକଲ୍ୟାଣକାରୀ ଯୋଜନା କ୍ଷେତ୍ରରେ ରାଜ୍ୟ ଅଗ୍ରଣୀ ଭୂମିକା ନିର୍ବାହ କରିଛି ଏବଂ ଏପରି କେତେକ କାର୍ଯ୍ୟକ୍ରମ ବିଶ୍ୱସ୍ତରରେ ପ୍ରଶଂସିତ ହେବା ସହ ଜାତୀୟସ୍ତରରେ ଅନୁକରଣୀୟ ହୋଇପାରିଛି ।

ଜାତୀୟ ଶିଶୁ ମୃତ୍ୟୁହାର ତୁଳନାରେ ରାଜ୍ୟରେ ଶିଶୁ ମୃତ୍ୟୁହାର ଉଲ୍ଲେଖନୀୟଭାବେ ହ୍ରାସ ପାଇଛି । ଖାଦ୍ୟ ନିରାପତ୍ତା, ଶିଶୁର ଉତ୍ତମ ପୁଷ୍ଟିସାଧନ ଓ ସାଧାରଣ ସ୍ୱାସ୍ଥ୍ୟସେବା ପ୍ରଦାନ କ୍ଷେତ୍ରରେ ଓଡ଼ିଶା ଏକ ନେତୃତ୍ୱ ବହନକାରୀ ରାଜ୍ୟରୂପେ ପରିଚିତି ହାସଲ କରିଛି ।

ଓଡ଼ିଶାର ଉଲ୍ଲେଖନୀୟ ସଫଳତା ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ଉଚ୍ଚ ପ୍ରଶଂସିତ ହୋଇଛି । 'ଜାଗା ମିଶନ୍' ନିମନ୍ତେ ଓଡ଼ିଶା ସମ୍ମାନଜନକ ବିଶ୍ୱ ବସତି ପୁରସ୍କାର (ୱାର୍ଲ୍ଡ ହାବିଟାଟ୍ ଆୱାର୍ଡ) ହାସଲ କରିଛି । ଉଲ୍ଲେଖନୀୟ କୃଷିଭିତ୍ତିକ ଉତ୍ପାଦନ ଓ କୃଷକଙ୍କ ଆୟ ବୃଦ୍ଧି କରିପାରିଥିବାରୁ ଆମ ରାଜ୍ୟ ପୁଣିଥରେ 'କୃଷି କର୍ମଣ' ପୁରସ୍କାରରେ ସମ୍ମାନିତ ହୋଇଛି । ପ୍ରାକୃତିକ ବିପର୍ଯ୍ୟୟର ସୁପରିଚାଳନା ଦିଗରେ ଓଡ଼ିଶା ଏହାର ଭିତ୍ତିଭୂମି ସୁଦୃଢ଼ କରିପାରିଛି ତଥା ଏହାର ଆନୁଷ୍ଠାନିକ ସାମର୍ଥ୍ୟକୁ ବୃଦ୍ଧି କରିପାରିଛି । ରାଜ୍ୟଗୁଡ଼ିକର ଷ୍ଟାର୍ଟ ଅପ୍ ର୍ୟାଙ୍କିଙ୍ଗ୍-୨୦୧୮ରେ ଓଡ଼ିଶା ଶ୍ରେଷ୍ଠ ପ୍ରଦର୍ଶନକାରୀ ରାଜ୍ୟଭାବେ ଉଭା ହୋଇଛି ଏବଂ ଯୁବଗୋଷ୍ଠୀଙ୍କ ଦକ୍ଷତା ବୃଦ୍ଧି ତଥା ସେମାନଙ୍କ ନିଯୁକ୍ତିକୁ ସୁନିଶ୍ଚିତ କରିବାକୁ ସ୍ୱଳ୍ପ ଅବଧିଭିତ୍ତିକ ଦକ୍ଷତା ତାଲିମ ପ୍ରଦାନ କ୍ଷେତ୍ରରେ ଓଡ଼ିଶା ଶ୍ରେଷ୍ଠ ରାଜ୍ୟର ମାନ୍ୟତା ଲାଭ କରିଛି । ଏଫ୍ଆଇସିସିଆଇ ଇଣ୍ଡିଆ ସ୍ପୋର୍ଟସ୍ ଆୱାର୍ଡ୍ସ-୨୦୧୯ରେ ଓଡ଼ିଶା ଉତ୍ତମ କ୍ରୀଡ଼ା ପ୍ରୋତ୍ସାହକ ରାଜ୍ୟ ଭାବେ ପୁରସ୍କାର ଲାଭ କରିଛି । ଆମ ରାଜ୍ୟ ୨୦୨୩ ବିଶ୍ୱ ହକି ଚମ୍ପିଅନ୍‌ସିପ୍ସ ଆୟୋଜନ କରିବା ନିମନ୍ତେ ସମ୍ପୂର୍ଣ୍ଣ ପ୍ରସ୍ତୁତ ଅଛି । ଆମର ଗୋଷ୍ଠୀ ପରିଚାଳିତ ପରିବେଶଭିତ୍ତିକ ପର୍ଯ୍ୟଟନ ମଡେଲ ଭାରତରେ ଶ୍ରେଷ୍ଠ ପରିବେଶ-ପର୍ଯ୍ୟଟନ କ୍ଷେତ୍ରରେ ପୁରସ୍କାର ମଧ୍ୟ ହାସଲ କରିଛି ।

ଆଜି ଶାସନ ବ୍ୟବସ୍ଥାର ପ୍ରତ୍ୟେକଟି କ୍ଷେତ୍ରରେ ଜନସାଧାରଣଙ୍କୁ କେନ୍ଦ୍ରରେ ରଖି ଓଡ଼ିଶା ଏହାର ସମସ୍ତ ଉଦ୍ୟମରେ ସଫଳତା ହାସଲ କରିବା ସହ ସଠିକ୍ ପଥରେ ଅଗ୍ରସର । ଲକ୍ଷ୍ୟ ରହିଛି ଏକ ସମୃଦ୍ଧ ନୂତନ ଓଡ଼ିଶା ଗଠନ କରିବା ସହ ପ୍ରତ୍ୟେକଙ୍କ ସହଯୋଗକ୍ରମେ ଦେଶର ଏକତା ଓ ଅଖଣ୍ଡତା ବଜାୟ ରଖିବା । ଆଜି ହେଉଛି ଆମର ସାଧାରଣତନ୍ତ୍ର ନିମନ୍ତେ ଆତ୍ମସମୀକ୍ଷାର ଦିନ । ଏହି ପବିତ୍ର ଦିବସ ଅବସରରେ, ଆସନ୍ତୁ, ଆମର ଗୁରୁଦାୟିତ୍ୱ ନିର୍ବାହ କରିବା ସହ ନିଷ୍ଠାପରଭାବେ କର୍ତ୍ତବ୍ୟ ପାଳନ କରିବା ନିମନ୍ତେ ଦୃଢ଼ ସଂକଳ୍ପବଦ୍ଧ ହେବା ।

**ଜୟ ହିନ୍ଦ୍ ।**

# ସାଧାରଣତନ୍ତ୍ର ଦିବସ –୨୦୨୦ ଅବସରରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବାର୍ତ୍ତା



ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ଏହି ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ଡକ୍ଟର ବି.ଆର୍. ଆମ୍ବେଦକର, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ଶହୀଦ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ମା' ରମାଦେବୀ, ମାଳତୀ ଚୌଧୁରୀ, ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଓ ପାର୍ବତୀ ଗିରିଙ୍କ ପରି ମହାନ୍ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ଶାନ୍ତି ଓ ସୁରକ୍ଷା ପାଇଁ ଶହୀଦ ହୋଇଥିବା ଆମର ଜୱାନମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଭାରତ ଗାନ୍ଧୀଙ୍କ ଦେଶ । ସତ୍ୟ ଓ ଅହିଂସାର ଦେଶ । ବିଭିନ୍ନ ବିଚାର, ବିଭିନ୍ନ ବିଶ୍ୱାସର ଦେଶ । ସମସ୍ତଙ୍କୁ ସାଥିରେ ଧରି ସବୁ ବିଚାରକୁ ନିଜର କରି ଭାରତ ଆଜି ବିକାଶର ବିଭିନ୍ନ କ୍ଷେତ୍ରରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ।

ଦେଶର ବିକାଶରେ, ଦେଶର ସମୃଦ୍ଧିରେ ରାଜ୍ୟମାନଙ୍କର ମଧ୍ୟ ବିଶେଷ ଅବଦାନ ରହିଛି । ସାଢେ ଚାରି କୋଟି ଓଡ଼ିଶାବାସୀଙ୍କ ଆଶା ଓ ସ୍ୱପ୍ନକୁ ସାକାର କରିବା ପାଇଁ ଓଡ଼ିଶା ଆଜି ବିକାଶ ପଥରେ ଆଗେଇ ଚାଲିଛି । ନିରନ୍ତର ବିକାଶ ଲକ୍ଷ୍ୟ ହାସଲରେ ଓଡ଼ିଶା ଆଜି ଦେଶର ଦ୍ୱିତୀୟ ସର୍ବବୃହତ୍ ପ୍ରଦର୍ଶନକାରୀ ରାଜ୍ୟର ମାନ୍ୟତା ପାଇଛି ।

ଚାଷୀ, ମହିଳା, ଶ୍ରମିକ ଓ ଯୁବସମାଜ ହେଉଛନ୍ତି ଆମ ଅର୍ଥନୀତିର ମେରୁଦଣ୍ଡ । ଏମାନଙ୍କର ସଶକ୍ତିକରଣ ହିଁ ବିକାଶର ଧାରାକୁ ଅଧିକ ଶକ୍ତି ଦେଇଛି । ସୁ-ଶାସନ କ୍ଷେତ୍ରରେ ୫'ଟି' ସାରା ଦେଶ ପାଇଁ ଏକ ମଡେଲ ହୋଇପାରିଛି । ଲୋକଙ୍କୁ ଠିକ୍ ସମୟରେ ଉତ୍ତମ ସେବା ଯୋଗାଇବାରେ ୫'ଟି' ମନ୍ତ୍ର ଲୋକପ୍ରିୟ ହୋଇପାରିଛି । ଆମର 'ମୋ ସରକାର' କାର୍ଯ୍ୟକ୍ରମ ଜନସାଧାରଣ ଓ ସରକାରଙ୍କ ମଧ୍ୟରେ ସମ୍ପର୍କକୁ ଅଧିକ ମଜବୁତ କରିଛି । ବ୍ୟବସ୍ଥା ପ୍ରତି ଲୋକଙ୍କ ଭରସା ବଢ଼ିଛି । ପ୍ରଶାସନର ଦାୟିତ୍ୱବଦ୍ଧତା ବଢ଼ିଛି ।

ଜଗନ୍ନାଥ ଦେଶ ହେଉଛି ଓଡ଼ିଶାର ଶ୍ରେଷ୍ଠ ପରିଚୟ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପବିତ୍ର ପୁରୀଧାମ ଏବଂ ଏକାମ୍ର କ୍ଷେତ୍ରର ବିକାଶ ପାଇଁ ସରକାରଙ୍କ ପଦକ୍ଷେପ ଆମ କଳା ଓ ସଂସ୍କୃତିର ଗୌରବ ବୃଦ୍ଧି କରିଛି ।

ଓଡ଼ିଶା ଆଜି ନୂତନ ସଂକଳ୍ପ ନେଇ ଆଗକୁ ବଢ଼ୁଛି । ନୂଆ ଓଡ଼ିଶା ହେବ ବିଶ୍ୱସନୀୟ ଓଡ଼ିଶା । ସବୁ ଆହ୍ୱାନକୁ ମୁକାବିଲା କରିବାର ସାହସ ଓ ଦକ୍ଷତା ଓଡ଼ିଶାର ଯୁବପିଢ଼ିଙ୍କ ନିକଟରେ ରହିଛି । ବିପର୍ଯ୍ୟୟ ପରିଚାଳନାଠାରୁ ଆରମ୍ଭ କରି କ୍ରୀଡ଼ା କ୍ଷେତ୍ରରେ ଏବଂ ବସତି ମିଶନ୍ ଆଦି ବିଭିନ୍ନ କ୍ଷେତ୍ରରେ ଆମେ ଆଜି ବିଶ୍ୱସ୍ତରୀୟ ଦକ୍ଷତା ହାସଲ କରିପାରିଛୁ । ସେବା, ସାହସ, ଦକ୍ଷତା ଓ ପ୍ରତିବଦ୍ଧତା ହେବ ନୂଆ ଓଡ଼ିଶାର ପରିଚୟ । ନୂଆ ଓଡ଼ିଶା ହେବ ଶ୍ରେଷ୍ଠ ଓଡ଼ିଶା । ଆସନ୍ତୁ, ନୂଆ ଓଡ଼ିଶା ଗଠନ ପାଇଁ ଆମେ ସମସ୍ତେ ମିଳିତ ଭାବରେ କାମ କରିଚାଲିବା ।

**ବନ୍ଦେ ଉତ୍କଳ ଜନନୀ**

**ଜୟ ହିନ୍ଦ୍ ।**

# ସାଧାରଣତନ୍ତ୍ର ଦିବସ –୨୦୨୦ ଅବସରରେ ଓଡ଼ିଶାର ମାନ୍ୟବର ଜଳ ସମ୍ପଦ, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ

# ଶ୍ରୀ ରଘୁନନ୍ଦନ ଦାସଙ୍କ

# ବାର୍ତ୍ତା



ଐତିହାସିକ ସାଧାରଣତନ୍ତ୍ର ଦିବସ– ୨୦୨୦ ପାଳନ ଅବସରରେ ମୁଁ ଆପଣ ସମସ୍ତଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି । ଭାରତବର୍ଷକୁ ଏକ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଘୋଷଣା ପୂର୍ବକ ଭାରତୀୟ ସମ୍ବିଧାନ ୨୬ ଜାନୁଆରୀ ୧୯୫୦ ମସିହାରେ ଗୃହୀତ ହୋଇଥିଲା ।

ଆଜି ଭାରତୀୟ ଗଣତନ୍ତ୍ର ପୃଥିବୀର ସର୍ବବୃହତ୍ ଏବଂ ସର୍ବଶ୍ରେଷ୍ଠ ଗଣତନ୍ତ୍ରର ମାନ୍ୟତା ପାଇଛି । ଭାରତବର୍ଷକୁ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ କରିବାରେ ତଥା ଆମର ଅନନ୍ୟ ସମ୍ବିଧାନ ପ୍ରଣୟନ ସହ ଏହାକୁ କାର୍ଯ୍ୟକାରୀ କରିବାରେ ଦେଶର ଯେଉଁ ସୁଯୋଗ୍ୟ ସନ୍ତାନମାନେ ସ୍ୱକୀୟ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ସେମାନେ ଆମମାନଙ୍କ ପାଇଁ ଚିର ନମସ୍ୟ । ଏତଦ୍‌ବ୍ୟତୀତ, ଆମର ବୀର ପୁରୋଧା, ସ୍ୱାଧୀନତା ସଂଗ୍ରାମୀଗଣ, ଯେଉଁମାନେ ଅଭୂତପୂର୍ବ ସାହସ ଓ ତ୍ୟାଗ ସ୍ୱୀକାର କରି ଆମ ଦେଶକୁ ଇଂରେଜ ଶାସନ କବଳରୁ ମୁକ୍ତ କରିଥିଲେ, ସେମାନଙ୍କୁ ମଧ୍ୟ ପବିତ୍ର ସାଧାରଣତନ୍ତ୍ର ଦିବସ ପାଳନ ଅବସରରେ ଆମେ ଶ୍ରଦ୍ଧା ଓ ସମ୍ମାନର ସହ ସ୍ମରଣ କରୁଛୁ ଏବଂ ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ମଧ୍ୟ ପ୍ରକାଶ କରୁଛୁ ।

ଅହିଂସା ଉପରେ ମହାତ୍ମା ଗାନ୍ଧୀଙ୍କ ମତ ଥିଲା ଯେ, ଗରିବୀ ଓ ସାମାଜିକ ଅନୀତି ହେଉଛି ସବୁଠାରୁ ବଡ ହିଂସା । ଶାନ୍ତି ବଜାୟ ରଖିବା ଦ୍ୱାରା ଦାରିଦ୍ର୍ୟର ମୂଳୋତ୍ପାଟନ ହୋଇପାରିବ । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ୧୫୦ତମ ଜନ୍ମବାର୍ଷିକୀ ପାଳନ ଅବସରରେ 'ଅହିଂସା' ଶବ୍ଦକୁ ଭାରତୀୟ ସମ୍ବିଧାନର ମୁଖବନ୍ଧରେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ରାଜ୍ୟ ସରକାର କେନ୍ଦ୍ରକୁ ପ୍ରସ୍ତାବ ଦେଇଛନ୍ତି । ବାସ୍ତବିକ, ଏହା ମହାତ୍ମା ଗାନ୍ଧୀଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ହୋଇପାରିବ ।

ସ୍ୱାଧୀନତା ପ୍ରାପ୍ତି ପରଠାରୁ ଆଜି ପର୍ଯ୍ୟନ୍ତ ଦେଶ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିଛି । ଦେଶର ସଫଳତା ସହ ତାଳ ଦେଇ ଆମ ରାଜ୍ୟ ଓଡିଶାରେ ମଧ୍ୟ ପ୍ରଗତି ତ୍ୱରାନ୍ୱିତ ହୋଇଛି । ଆଜି ଓଡିଶା ଦେଶର ଏକ ପ୍ରମୁଖ ଏବଂ ଆଦର୍ଶ ସ୍ଥାନୀୟ ରାଜ୍ୟ ଭାବେ ପରିଗଣିତ ହେଉଛି । ମହିଳା ସଶକ୍ତିକରଣ, କୃଷି, ଜଳସେଚନ, ଶିକ୍ଷା, ସ୍ୱାସ୍ଥ୍ୟସେବା, ଅନୁସୂଚିତ ଜନଜାତି ଓ ଜାତିବର୍ଗର ବିକାଶ ଓ ଶିଳ୍ପ ଆଦି ସମସ୍ତ କ୍ଷେତ୍ରରେ ଆମ ରାଜ୍ୟ ଅଗ୍ରଣୀ ଭୂମିକା ନିର୍ବାହ କରୁଛି । ସମାଜର ସାଧାରଣ ଜନତାଙ୍କର ଆଶା ଓ ଆକାଙ୍କ୍ଷାକୁ ଦୃଷ୍ଟିରେ ରଖି ବିଭିନ୍ନ ଲୋକାଭିମୁଖୀ ଯୋଜନା କାର୍ଯ୍ୟକାରୀ କରାଯାଇଛି, ଯଦ୍ୱାରା ବିଭିନ୍ନ ବର୍ଗର ଲୋକେ ବେଶ୍ ଉପକୃତ ହେଉଛନ୍ତି ।

ଜନକଲ୍ୟାଣକାରୀ ସେବା ପ୍ରଦାନକୁ ଗୁରୁତ୍ୱ ପ୍ରଦାନ ସହ ରାଜ୍ୟ ସରକାର ୫–'ଟି' ଆଧାରରେ କାର୍ଯ୍ୟ କରୁଛନ୍ତି । ଦଳଗତ ପ୍ରଚେଷ୍ଟା (ଟିମ୍‌ୱାର୍କ), ବୈଷୟିକ ଜ୍ଞାନକୌଶଳ (ଟେକ୍ନୋଲୋଜି), ସ୍ୱଚ୍ଛତା(ଟ୍ରାନ୍ସପାରେନ୍ସି), ରୂପାନ୍ତରଣ(ଟ୍ରାନ୍ସଫରମେସନ୍) ଏବଂ ସମୟ(ଟାଇମ୍)ର ଉପଯୁକ୍ତ ସମନ୍ୱୟ ସହ ଜନସାଧାରଣଙ୍କୁ ସଠିକ୍ ସମୟରେ ନ୍ୟାୟୋଚିତ ସେବା ପ୍ରଦାନ ଉପରେ ଗୁରୁତ୍ୱ ଦିଆଯାଉଛି । ଏସବୁ ସେବା ପ୍ରଦାନ ବ୍ୟବସ୍ଥାକୁ ଅଧିକ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ ପକ୍ଷରୁ ଆରମ୍ଭ କରାଯାଇଛି 'ମୋ ସରକାର' କାର୍ଯ୍ୟକ୍ରମ । ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର, ଯେଉଁଠି ନାଗରିକମାନେ ହେଉଛନ୍ତି ପ୍ରକୃତ ମାଲିକ । ଏହାକୁ ଲକ୍ଷ୍ୟ ରଖି ରାଜ୍ୟ ସରକାର ଆରମ୍ଭ କରିଛନ୍ତି– 'ମୋ ସରକାର' କାର୍ଯ୍ୟକ୍ରମ, ଯେଉଁଠି ସାଧାରଣ ଜନତାଙ୍କୁ ଅଗ୍ରାଧିକାର ପ୍ରଦାନ କରାଯାଇଛି । ଏହାଦ୍ୱାରା ସରକାରଙ୍କ ସମସ୍ତ ବ୍ୟବସ୍ଥାରେ ସାଧାରଣ ଜନତାଙ୍କୁ ସାମିଲ କରିବା ପାଇଁ ରାଜ୍ୟ ସରକାରଙ୍କର ଲକ୍ଷ୍ୟ ରହିଛି ।

ଆଜି ଓଡିଶାର ପ୍ରଗତି ଅନ୍ୟ ରାଜ୍ୟମାନଙ୍କ ପାଇଁ ଅନୁକରଣୀୟ ହେବା ସହ ସାରା ଦେଶରେ ପ୍ରଶଂସିତ ହୋଇଛି । ଓଡ଼ିଶା ଆଜି ଦେଶର କ୍ରୀଡା ରାଜଧାନୀ ରୂପେ ବିଶ୍ୱସ୍ତରୀୟ ପରିଚିତି ଲାଭ କରିପାରିଛି । ମହିଳା, ଯୁବବର୍ଗ, କୃଷକ, ଶ୍ରମିକ, ସାଧାରଣ ନାଗରିକ ସମସ୍ତେ ଆଜି ରାଜ୍ୟରେ ବିକାଶର ଜୟଯାତ୍ରାରେ ସାମିଲ ହୋଇଛନ୍ତି ।

ସ୍ୱାଧୀନତା ଲାଭ ସହ ଆମମାନଙ୍କ ନିମନ୍ତେ ଏକ ଅନନ୍ୟ ସମ୍ବିଧାନ ପ୍ରଣୟନ ଦିଗରେ ଆମ ପୂର୍ବପୁରୁଷମାନେ ଯେଉଁ ବହୁ ପ୍ରତୀକ୍ଷିତ ଆଶାପୋଷଣ କରିଥିଲେ, ଆଜି ତାହା ସାର୍ଥକ ହୋଇଛି । ଆସନ୍ତୁ, ଆଜିର ଏହି ପବିତ୍ର ଦିବସରେ ଓଡିଶାକୁ ଦେଶର ସର୍ବଶ୍ରେଷ୍ଠ ରାଜ୍ୟରେ ପରିଣତ କରିବା ପାଇଁ ଆମେ ଏକାଠି ହୋଇ ଦୃଢ ସଂକଳ୍ପ ନେବା ।

**ଜୟ ହିନ୍ଦ୍ ।**

# ସମ୍ପାଦକୀୟ



ଜାନୁଆରୀ ମାସ ୨୬ ତାରିଖ ଆମ ଦେଶ ଓ ଜାତି ପାଇଁ ଏକ ଗର୍ବ ଓ ଗୌରବର ଦିନ ।

୧୯୪୭ ମସିହା ଅଗଷ୍ଟ ପନ୍ଦରର ସୂର୍ଯ୍ୟ ଏ ଦେଶରୁ ଦୀର୍ଘ ଦୁଇ ଶତାବ୍ଦୀର ପରାଧୀନତାର ଘନ ଅନ୍ଧକାରକୁ ସିନା ଦୂରେଇ ଦେଲା, ହେଲେ ୧୯୫୦ ମସିହା ଜାନୁଆରୀ ୨୬ ତାରିଖ କିନ୍ତୁ ଭାରତୀୟମାନଙ୍କର ବହୁ ଦିନର ସ୍ୱପ୍ନକୁ ସାକାର କରି ଭାରତବର୍ଷକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରଭାବେ ସମଗ୍ର ବିଶ୍ୱରେ ପରିଚିତ କରିଥିଲା । ସୁତରାଂ, 'ସାଧାରଣତନ୍ତ୍ର ଦିବସ' ଭାବରେ ଏହି ଦିବସଟିର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି ।

ଆଧୁନିକ ଯୁଗକୁ ଗଣତନ୍ତ୍ରର ଯୁଗ ରୂପେ ଅଭିହିତ କରାଯାଏ । ଏହାର ପ୍ରତିନିଧିମୂଳକ ଗଣତାନ୍ତ୍ରିକ ବ୍ୟବସ୍ଥା ଅଧିକ ଲୋକପ୍ରିୟତା ହାସଲ କରିଛି । ସାବାଳକ ଭୋଟ ପ୍ରଥା ଏହାର ଅନ୍ୟତମ ବିଶେଷତ୍ୱ । ଗଣତନ୍ତ୍ରରେ ସ୍ୱେଚ୍ଛାଚାରିତା ନାହିଁ । ଜନସାଧାରଣଙ୍କ ହୃଦୟକୁ ଜୟ କରି ନ ପାରିଲେ ଗଣତାନ୍ତ୍ରିକ ଶାସନ ତିଷ୍ଠି ରହିବା ଅସମ୍ଭବ । 'ବହୁଜନ ହିତାୟ ଓ ବହୁଜନ ସୁଖାୟ' – ଗଣତନ୍ତ୍ରର ମୂଳମନ୍ତ୍ର ଅଟେ । ସମାଜର ସବୁ ଶ୍ରେଣୀର ଲୋକଙ୍କୁ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରଦାନ କରିବା ପାଇଁ ଗଣତନ୍ତ୍ର ବଦ୍ଧପରିକର । ଜାତୀୟ ଚରିତ୍ର ଗଠନରେ ଗଣତନ୍ତ୍ରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସାମାଜିକ ଜୀବନକୁ ନିର୍ମଳ ଓ ଦୁର୍ନୀତିମୁକ୍ତ କରିବା ପାଇଁ ଏହା ଅନେକାଂଶରେ ସହାୟକ ହୋଇଥାଏ । ଗଣତନ୍ତ୍ର ନଥିଲେ ବ୍ୟକ୍ତି ସ୍ୱାଧୀନତା ନଥାନ୍ତା । ଏଣୁ ଗଣତନ୍ତ୍ର ହେଉଛି ବ୍ୟକ୍ତି ସ୍ୱାଭିମାନର ପ୍ରତୀକ ସ୍ୱରୂପ ।

ପ୍ରଗତି ନିମନ୍ତେ ଶାନ୍ତି ଓ ସ୍ଥିରତା ଏକାନ୍ତ କାମ୍ୟ । ସମସ୍ତଙ୍କୁ ସାଥୀରେ ନେଇ ଅହିଂସା ମାର୍ଗରେ ଏହା ଆହରଣ କରାଯାଇପାରିବ । ଏଥିନିମନ୍ତେ ଆମ ମୁଖ୍ୟମନ୍ତ୍ରୀ 'ଅହିଂସା' ଶବ୍ଦକୁ ସମ୍ବିଧାନର ମୁଖବନ୍ଧରେ ଅନ୍ତର୍ଭୁକ୍ତ କରିବା ପାଇଁ କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦେଇଛନ୍ତି । ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ସମୟରେ ଦେଶର ସଫଳତା ସହ ତାଳ ଦେଇ ଆମ ରାଜ୍ୟ ଓଡିଶାରେ ମଧ୍ୟ ନିରନ୍ତର ପ୍ରଗତି ପରିଲକ୍ଷିତ ହେଉଛି । ବିକାଶ କ୍ଷେତ୍ରରେ ଓଡ଼ିଶା ବହୁ ମାଇଲ ଖୁଣ୍ଟ ଅତିକ୍ରମ କରିଛି । ନୂଆ ପୁଞ୍ଜିନିବେଶ ପ୍ରସ୍ତାବଗୁଡିକୁ ଆକୃଷ୍ଟ କରିବାରେ ଶ୍ରେଷ୍ଠ ରାଜ୍ୟର ମାନ୍ୟତା ପାଇଛି । ପୁଷ୍ଟିହୀନତାରେ ସୁଧାର ଆଣି ବାମନପଣ କମାଇବାରେ ବହୁ ରାଜ୍ୟକୁ ପଛରେ ପକାଇଦେଇଛି । ବିଶ୍ୱ ଦକ୍ଷତା ପ୍ରତିଯୋଗିତାରେ ହାତେଇଛି ପ୍ରଥମ ସ୍ୱର୍ଣ୍ଣ ପଦକ । ଓଡ଼ିଶା ଶିଳ୍ପ କ୍ଷେତ୍ରରେ ମଧ୍ୟ ଅନେକ ଅଗ୍ରଗତି କରିଛି । ଦେଶକୁ ଆସିଥିବା ମୋଟ୍ ନୂଆ ପୁଞ୍ଜିନିବେଶ ପ୍ରସ୍ତାବର ୧୮ ପ୍ରତିଶତ ଏକାକୀ ଆକୃଷ୍ଟ କରି ନିଜକୁ ଶ୍ରେଷ୍ଠ ପୁଞ୍ଜିନିବେଶ ପେଣ୍ଠ ଭାବେ ପ୍ରମାଣିତ କରିଛି ଓଡ଼ିଶା । ଏହାସହ ୨୦୧୮ ଷ୍ଟାର୍ଟଅପ୍

କ୍ଷେତ୍ରରେ ରାଜ୍ୟ ଶୀର୍ଷ ପ୍ରଦର୍ଶନକାରୀର ମାନ୍ୟତା ପାଇଥିଲା । ୧୧ଟି ଜିଲ୍ଲାରେ ୧୦ଟି ବିଭିନ୍ନ କ୍ଷେତ୍ରରେ ୨୭ଟି ଶିଳ୍ପ ପ୍ରକଳ୍ପ ଶୁଭାରମ୍ଭ ହୋଇଥିଲା । ୨ବର୍ଷରୁ କମ୍ ସମୟ ମଧ୍ୟରେ ଗୋ-ସ୍ୱିଫ୍ଟ୍ ଜରିଆରେ ହଜାରେ ନିବେଶ ପ୍ରସ୍ତାବ ଗ୍ରହଣ କରିଛି ଓଡ଼ିଶା । ଏକ ଟ୍ରିଲିୟନ୍ ଡଲାର ଅର୍ଥନୀତିର ସ୍ୱପ୍ନ ପୂରଣ ପାଇଁ ଓଡ଼ିଶା ପ୍ରସ୍ତୁତ କରିଛି ଭବିଷ୍ୟତ ରୂପରେଖ । ଭାରତର ପ୍ରଥମ ରାଜ୍ୟଭାବେ ଓଡ଼ିଶା, ପାରାଦ୍ୱୀପଠାରେ ମଧ୍ୟ ଏକ ପ୍ଲାଷ୍ଟିକ୍ ପାର୍କ ଆରମ୍ଭ କରିଛି । ମହିଳା ଓ ଶିଶୁ ବିକାଶ କ୍ଷେତ୍ରରେ ଆମ ରାଜ୍ୟ ଅନେକ ଉଲ୍ଲେଖନୀୟ ସଫଳତା ପାଇଛି । ୪୦ଲକ୍ଷ ହିତାଧିକାରୀଙ୍କ ପାଖରେ 'ମମତା' ଯୋଜନାର ସୁଫଳ ପହଞ୍ଚି ପାରିଛି । ମିଶନ୍ ଶକ୍ତି ଜରିଆରେ ସ୍ୱୟଂ ସହାୟିକା ଗୋଷ୍ଠୀଙ୍କୁ ୫ହଜାର କୋଟି ଟଙ୍କାର କାମ ଯୋଗାଇ ଦିଆଯାଇଛି । ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀଙ୍କୁ ଶୂନ ପ୍ରତିଶତ ସୁଧହାରରେ ଋଣ ବ୍ୟବସ୍ଥା କରାଯାଇଛି । ଖାଦ୍ୟ ନିରାପତ୍ତା, ଶିଶୁ ପୋଷଣ ଓ ଜନସ୍ୱାସ୍ଥ୍ୟରେ ଓଡ଼ିଶା ନେତୃତ୍ୱ ବହନକାରୀ ରାଜ୍ୟର ମାନ୍ୟତା ହାସଲ କରିଛି । ଏତଦ୍‌ବ୍ୟତୀତ, ଦକ୍ଷତା ବିକାଶରେ ୨୦୧୯ ମସିହା ଓଡ଼ିଶା ପାଇଁ ଏକ ଉତ୍କର୍ଷର ବର୍ଷ ଥିଲା । ୪୫ତମ ବିଶ୍ୱ ଦକ୍ଷତା ପ୍ରତିଯୋଗିତାରେ ଓଡ଼ିଶାରୁ ପ୍ରତିନିଧିତ୍ୱ କରୁଥିବା ଏସ୍. ଅଶ୍ୱଥ୍ ନାରାୟଣ ସ୍ୱର୍ଣ୍ଣପଦକ ଜିତି ରାଜ୍ୟକୁ ଗୌରବାନ୍ୱିତ କରିଥିଲେ । ଲଗାତାର ତୃତୀୟ ବର୍ଷ ପାଇଁ ଆମ ରାଜ୍ୟ ଡି.ଡି.ୟୁ.ଜି.କେ.ୱାଇ ଅଧୀନରେ ଶ୍ରେଷ୍ଠ ପ୍ରଦର୍ଶନକାରୀ ରାଜ୍ୟଭାବେ ବିବେଚିତ ହୋଇଛି । ଆଜି ବ୍ରାଣ୍ଡ୍ ଓଡ଼ିଶା ମଧ୍ୟ କ୍ରୀଡା, ଶିଳ୍ପ, ପର୍ଯ୍ୟଟନ, ସ୍ୱାସ୍ଥ୍ୟ ଏବଂ ଆହୁରି ଅନେକ କ୍ଷେତ୍ରରେ ଉନ୍ନତିମୂଳକ ପରିବର୍ତ୍ତନ ଦେଖୁଛି । '୫-ଟି' ଓ 'ମୋ ସରକାର' ଦ୍ୱାରା ବିଭିନ୍ନ ପ୍ରକଳ୍ପଗୁଡିକର ତ୍ୱରିତ କାର୍ଯ୍ୟକାରିତା ଯୋଗୁଁ ନିବେଶକମାନେ ଆମ ରାଜ୍ୟ ସରକାରଙ୍କୁ ସକ୍ରିୟ ଓ ସକ୍ଷମ ସରକାର ବୋଲି ବିବେଚନା କରୁଛନ୍ତି । କୃଷି କ୍ଷେତ୍ରରେ ନୂଆ ନୂଆ ବୈଷୟିକ କୌଶଳ ପ୍ରୟୋଗ ପୂର୍ବକ କୃଷି ଓ କୃଷକ ସଶକ୍ତିକରଣ ଦିଗରେ ସରକାରଙ୍କ ଆନ୍ତରିକ ପ୍ରଚେଷ୍ଟା, ଚାଷୀର ଶ୍ରମ ଓ ଅବଦାନକୁ ସ୍ୱୀକୃତି ଦେଇ, ସେମାନଙ୍କ ଆୟ ଦ୍ୱିଗୁଣିତ କରିବା ସହ ରାଜ୍ୟର ସମ୍ମାନ ବଢାଇଛି । ଅଧୁନା ସମଗ୍ର ଦେଶରେ ଓଡ଼ିଶା ଏକ ବ୍ରାଣ୍ଡ୍ ପାଲଟିଛି ।

ଦେଶର ନାଗରିକମାନଙ୍କ ପାଇଁ ଆଜିର ସାଧାରଣତନ୍ତ୍ର ଦିବସ ଏକ ସ୍ମରଣୀୟ ଦିବସ । ଦେଶ ଜାତିର ଉନ୍ନତି ଦିଗରେ ଆମେ କେତେଦୂର ଅଗ୍ରସର ହୋଇଛେ, ତାହା ସମୀକ୍ଷା କରିବାର ଏକ ଅବସର । ତତ୍‌ସହିତ ଯେଉଁ ମହାମନୀଷୀଙ୍କ ଅପୂର୍ବ ତ୍ୟାଗ ଓ ବଳିଦାନରେ ଆମେ ସ୍ୱାଧୀନତା ପ୍ରାପ୍ତି ସହ ଏକ ଅନନ୍ୟ ସମ୍ବିଧାନ ଲାଭ କରିପାରିଛେ, ସେମାନଙ୍କ ପ୍ରତି ଆଜିର ଦିବସରେ ଆମେ ଗଭୀର କୃତଜ୍ଞତା ପ୍ରକାଶ କରୁଛୁ । ଆସନ୍ତୁ, ଆଜିର ଏହି ପବିତ୍ର ଦିବସ ପାଳନ ଅବସରରେ ଦେଶ ଜାତି ପ୍ରତି ନିଷ୍ଠାବାନ୍ ରହିବା ଏବଂ ଆମ ଦେଶ ଓ ରାଜ୍ୟକୁ ନିରନ୍ତର ବିକାଶ ପଥରେ ଆଗେଇ ନେବାକୁ ଦୃଢ ସଂକଳ୍ପବଦ୍ଧ ହେବା ।

**ଜୟ ହିନ୍ଦ୍ ।**

ଲେଳିନ୍ ମହାନ୍ତି

**ସମ୍ପାଦକ**

# ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ଓ ପୂର୍ଣ୍ଣ ସ୍ୱରାଜ

**ପ୍ରହଲାଦ କୁମାର ସିଂହ**

ହଜାର ହଜାର ସଂଗ୍ରାମୀଙ୍କ ବଳିଦାନ, କାରାବରଣ ଓ ନିରନ୍ତର ସଂଘର୍ଷର ପୃଷ୍ଠଭୂମିରେ ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା । ବ୍ରିଟିଶର ୟୁନିଅନ ଜ୍ୟାକ ଅବନମିତ ହୋଇ ଜାତିର ପ୍ରତୀକ ଜାତୀୟ ପତାକା ତ୍ରିରଙ୍ଗା ସେଦିନ ଦିଲ୍ଲୀରୁ ପଲ୍ଲୀ ପର୍ଯ୍ୟନ୍ତ ଫରଫର ହୋଇ ଉଡ଼ିଲା । ସାରା ଦେଶ ଉତ୍ସବମୁଖର ହୋଇପଡ଼ିଥିବା ବେଳେ ସ୍ୱାଧୀନତା ସଂଗ୍ରାମର ସଫଳ ସେନାପତି ଜାତିର ଜନକ ମହାମାନବ ମହାତ୍ମା ଗାନ୍ଧୀ କିନ୍ତୁ ରକ୍ତସ୍ନାତ କଲିକତାର ଦଙ୍ଗା ବିଧ୍ୱସ୍ତ ବେଲିଆଘାଟ ଅଞ୍ଚଳରେ ଥିବା ପରିତ୍ୟକ୍ତ ହାଇଦରୀ ଭବନରେ ଗଭୀର ମନସ୍ତାପ ଭିତରେ ଉପବାସ ଓ ସୂତାକଟା ସହ ସେଦିନ ଅନ୍ଧାରୀ କୋଠରିରେ କାଟିଥିଲେ ବିନିଦ୍ର ରଜନୀ । ଏହା ପୂର୍ବରୁ ଗାନ୍ଧିଜୀ କହିଥିଲେ ଯେ ୧୫ ଅଗଷ୍ଟରେ ଯେଉଁ ସ୍ୱାଧୀନତା ଦେଶ ବିଭାଜନ କରି ଆସୁଛି ତାହା ତାଙ୍କର କିମ୍ବା ଭାରତବାସୀଙ୍କ ଇପ୍‌ସିତ ସ୍ୱାଧୀନତା ନୁହେଁ । ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ପୁଣି ଲମ୍ବା ଲଢ଼େଇର ଆବଶ୍ୟକତା ଅଛି ବୋଲି ଗାନ୍ଧିଜୀ ସ୍ୱାଧୀନତା ପୂର୍ବରୁ ଓ ପରେ ବାରମ୍ବାର ଚେତାଇ ଦେଇଛନ୍ତି । କ'ଣ ଥିଲା ଗାନ୍ଧିଜୀଙ୍କର ଇପ୍‌ସିତ ସ୍ୱାଧୀନତା ଓ କାହିଁକି ସେ ବ୍ରିଟିଶ ଯିବା ପରେ ବି ପୁଣି ସତ୍ୟାଗ୍ରହ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉଥିଲେ, ତାହା ଏବେ ବେଶ୍ ପ୍ରାସଙ୍ଗିକ ।

ଲୋକମାନ୍ୟ ବାଲ ଗଙ୍ଗାଧର ତିଲକ କହିଥିଲେ, 'ସ୍ୱରାଜ ମୋର ଜନ୍ମଗତ ଅଧିକାର ଏବଂ ତାହା ମୁଁ ନିଶ୍ଚୟ ହାସଲ କରିବି ।' ୧୯୨୦ ଅଗଷ୍ଟ ପହିଲାରେ ତିଲକଙ୍କ ଶବାଧାର ନିକଟରେ ଗାନ୍ଧିଜୀ କୋଟିଏ ଟଙ୍କାର ତିଲକ



ସ୍ୱରାଜ ପାର୍ଟି ଗଠନ ପାଇଁ ଘୋଷଣା କରିବା ସହ ସ୍ୱରାଜ୍ୟ ସଂଗ୍ରାମକୁ ଏକ ଭିନ୍ନ ମୋଡ଼ ଦେଲେ । ସେ କହିଥିଲେ ସ୍ୱରାଜ ଏକ ପବିତ୍ର ବୈଦିକ ଶବ୍ଦ । ଏହାର ଅର୍ଥ ନିଜ ଉପରେ ନିଜେ ରାଜୁତି କରିବା । ଏହା ସ୍ୱେଚ୍ଛାଚାରିତା ନୁହେଁ ବରଂ ଆତ୍ମସୁପରିଚାଳନାର ଏକ ସହଜ ଓ ସରଳ ମାର୍ଗ । ଶରୀର, ମନ, ବୁଦ୍ଧି, ବିଚାର ଓ ବିବେକ ଉପରେ ଅବିନାଶୀ ଆତ୍ମାର ନିୟନ୍ତ୍ରଣ ହେଉଛି ସ୍ୱରାଜର ଅନ୍ୟ ନାମ । କେବଳ ବାଧା ବନ୍ଧନ କିମ୍ବା ବିଦେଶୀ ଶାସନରୁ ମୁକ୍ତିକୁ ସ୍ୱରାଜ କୁହାଯିବା ସମୀଚୀନ ନୁହେଁ । ଅଳ୍ପ କେତେକ ଲୋକଙ୍କ କ୍ଷମତାପ୍ରାପ୍ତି ବି ସ୍ୱରାଜ ନୁହେଁ । ସ୍ୱରାଜରେ ସମସ୍ତେ କ୍ଷମତାପ୍ରାପ୍ତ ହେବା ଦରକାର, ଆଉ ସେ କ୍ଷମତା ଆତ୍ମବିକାଶ ସହିତ ସାମାଜିକ, ରାଷ୍ଟ୍ରୀୟ ଓ ସମଗ୍ର ମାନବ ସମାଜର ହିତ ପାଇଁ ଶୃଙ୍ଖଳିତ ଭାବେ ବିନିଯୋଗ କରାଯିବା ଆବଶ୍ୟକ । ସ୍ୱରାଜ ହେଉଛି ଏଭଳି ଏକ ପବିତ୍ର ମଞ୍ଚ ଯେଉଁଠି ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ଧନୀ, ଗରିବ ନିର୍ବିଶେଷରେ ସମସ୍ତେ ନିଜ ନିଜର ମାନସିକ ଓ ଶାରୀରିକ ଶ୍ରମ ସ୍ୱେଚ୍ଛାକୃତ ଭାବେ ସମର୍ପଣ କରିଥାନ୍ତି ।

ମହାତ୍ମାଙ୍କ ମତରେ ଲୌକିକ ସ୍ୱାଧୀନତାକୁ ସ୍ୱରାଜ କହିବା ସମୀଚୀନ ନୁହେଁ । ବିଦେଶୀ ଶାସନର ଅପସାରଣ ପାଇଁ ସ୍ୱାଧୀନତା ହିଁ ଦରକାର । କିନ୍ତୁ ଭାରତରୁ ଇଂରେଜମାନେ ଚାଲିଗଲେ ଯେ ଆମେ ସ୍ୱାଧୀନ ହୋଇଗଲୁ ତାହା ଭାବିବା ଭୁଲ୍ । ଭାରତର ଆତ୍ମା ଗାଁରେ ରହିଛି । ତେଣୁ ଯେତେବେଳେ ପ୍ରତ୍ୟେକ ସ୍ୱାବଲମ୍ବୀ ଗ୍ରାମବାସୀ ବୁଝିବେ ଯେ ସେମାନେ ହେଉଛନ୍ତି ନିଜ ଭାଗ୍ୟ ନିୟନ୍ତା ଓ ଠିକଣା ପ୍ରତିନିଧି ବାଛି ନିଜେ ନିଜକୁ ଶାସନ କରିବା କ୍ଷେତ୍ରରେ ଯୋଗ୍ୟ, ସେତେବେଳେ ସ୍ୱାଧୀନତା ଆସିବ । ଆଉ ଏଭଳି ସ୍ୱାଧୀନତାରେ ପ୍ରତ୍ୟେକ ଲୋକ ଅନୁଭବ କରିବେ, 'ଆମ ଗାଁରେ ଆମେ ସରକାର, ଦିଲ୍ଲୀରେ ଆମ ସରକାର' । ଏହି ସ୍ୱାଧୀନତାରେ ରାଷ୍ଟ୍ରମୁଖ୍ୟଙ୍କଠାରୁ ଆରମ୍ଭ କରି ପଞ୍ଚାୟତ ପ୍ରତିନିଧି, ସବୁ ପାହ୍ୟାର ବେତନଭୋଗୀ କର୍ମଚାରୀ ଓ ଲୋକସେବକମାନେ ରାଷ୍ଟ୍ର, ରାଜ୍ୟ ବା ସେମାନଙ୍କ ଇଲାକାର ମାଲିକ ନୁହଁନ୍ତି, ଜନସାଧାରଣଙ୍କ ସେବକ ବୋଲି ଅନୁଭବ କରିବେ । କାରଣ ସ୍ୱାଧୀନ ଭାରତର ସରକାର ହେବ ଜନସାଧାରଣଙ୍କ ମାଲିକାନାର ଏକ ଟ୍ରଷ୍ଟ ବୋର୍ଡ । ଆଉ ସରକାରର ବିଭିନ୍ନ ସ୍ଥାନରେ ନିୟୋଜିତ ଲୋକ ପ୍ରତିନିଧି ଓ କର୍ମଚାରୀମାନେ ମାଲିକ ନୁହେଁ, ଟ୍ରଷ୍ଟି ଭାବେ ସେମାନଙ୍କ କର୍ତ୍ତବ୍ୟ ସତ୍ୟ, ଅହିଂସା ଆଧାରରେ ସମାପନ କରିବେ । ସେମାନଙ୍କ ଆଚରଣ ଓ ଉଚ୍ଚାରଣରେ ଫରକ ନଥିବ । ସତ୍ ଚିନ୍ତା, ସତ୍ କର୍ମ ଓ ସତ୍ୟ ବଚନକୁ ଆଧାର କରି ହିଁ ଦେଶକୁ ସଫଳତାର ଶୀର୍ଷକୁ ନିଆଯାଇପାରିବ ।

ସ୍ୱାଧୀନତା ସଂଗ୍ରାମ ସମୟରେ ସ୍ୱରାଜ୍ୟର ସଂଜ୍ଞା ନିରୂପଣ କରାଯାଇ କୁହାଯାଇଥିଲା ଯେ ସ୍ୱରାଜ୍ୟରେ ସାଧାରଣ ଲୋକଙ୍କ ହାତରେ ଶାସନର ଡୋରି ରହିବ ଏବଂ ସାର୍ବଭୌମତ୍ୱ, ପ୍ରତିରକ୍ଷା, ଆଇନ, ଆର୍ଥିକ ବ୍ୟବସ୍ଥା, ଆମଦାନୀ ଓ ରପ୍ତାନି ଆଦି ଉପରେ ରାଷ୍ଟ୍ରର ସମ୍ପୂର୍ଣ୍ଣ ନିୟନ୍ତ୍ରଣ ରହିବ । ଖାଦ୍ୟ, ବସ୍ତ୍ର ଓ ବାସଗୃହର ସମସ୍ୟା ନଥିବ । ନିଜ ଇଚ୍ଛା ବିରୁଦ୍ଧରେ ଜଣେ ହେଲେ ବି କେହି ଫୁଙ୍ଗୁଳା କିମ୍ବା ଭୋକିଲା ରହିବେ ନାହିଁ । ସ୍ୱାଧୀନ ଭାରତର ଲୋକେ ଏଭଳି ସୁରୁଚି ସମ୍ପନ୍ନ ହେବେ ଏବଂ ଏଠାକାର ଆଇନ୍ ଶୃଙ୍ଖଳା ବ୍ୟବସ୍ଥା ଏତେ ଉନ୍ନତ ହେବ ଯେ ରାତି ଅଧରେ ବି ଜଣେ ଯୁବତୀ କୌଣସି ସ୍ଥାନକୁ ଯାଇ ନିରାପଦରେ ଫେରିଆସିପାରିବ । ସ୍ୱରାଜ ହେବ ସର୍ବଧର୍ମ ସମନ୍ୱୟର ମଞ୍ଚ, ଏଠାରେ ଅସ୍ପୃଶ୍ୟତା ବୋଲି କିଛି ରହିବ ନାହିଁ । ପ୍ରତ୍ୟେକ ଗାଁ ସବୁ କ୍ଷେତ୍ରରେ ସ୍ୱାବଲମ୍ବୀ ହେବ । ଧନୀ ଦରିଦ୍ରକୁ ଶୋଷଣ କରୁନଥିବ । ସ୍ୱାଧୀନ ଦେଶରେ ନିଶା ସମ୍ପୂର୍ଣ୍ଣ ଭାବେ ନିବାରିତ ହେବ । ନାରୀ ଓ ପୁରୁଷ ମଧ୍ୟରେ ସମାନ ଅଧିକାର ରହିବ । ପ୍ରତ୍ୟେକ ଲୋକଙ୍କ ପାଇଁ କାମ ଥିବ । ଦେଶର ସର୍ବୋଚ୍ଚ କର୍ତ୍ତା ଓ ସର୍ବନିମ୍ନ କର୍ମଚାରୀଙ୍କ ରୋଜଗାରରେ ଆକାଶ ପାତାଳ ଫରକ ରହିବ ନାହିଁ । ସବୁ ନାଗରିକ ଆଇନ୍ ମାନି ଚଳିବେ । ପୁଣି ଗାନ୍ଧିଜୀ କହିଲେ ଯେ ଦେଶର ୭ ଲକ୍ଷ ଗାଁ ହେବ ୭ ଲକ୍ଷ ରିପବ୍ଲିକ୍ । ଭାରତର ଆତ୍ମା ଗାଁରେ ରହିଛି, ସହରର ଚାକଚକ୍ୟରେ ନୁହେଁ । ସ୍ୱରାଜରେ ଗାଁଗୁଡ଼ିକ ଏଭଳି ସ୍ୱାବଲମ୍ବୀ ହେବେ ଯେ ସେମାନଙ୍କ ପାଇଁ ଆବଶ୍ୟକ ସାମଗ୍ରୀ ନିଜ ଗାଁରେ ନିଜେ ଉତ୍ପାଦନ କରିବା ସହ

ପଡ଼ୋଶୀ ଗାଁକୁ ଆବଶ୍ୟକ ସ୍ଥଳେ ସହାୟତା ଦେବେ । ମାଲି ମୋକଦ୍ଦମାରେ ନ ମାତି ମନୋମାଳିନ୍ୟ ଓ ବାଦବିବାଦ ଗାଁ ସ୍ତରରେ ହିଁ ତୁଟିବ । ଯଦି ସ୍ୱାଧୀନ ଭାରତରେ ଲୋକେ ଖାଇବାକୁ ନ ପାଇ ହା ଅନ୍ନ ଚିତ୍କାର କରିବେ, ଚିକିତ୍ସା ନ ପାଇ ମରିବେ, ପାଠ ପଢ଼ିବାର ସୁଯୋଗ ପାଇବେ ନାହିଁ, ପ୍ରତି ସବଳ ହାତକୁ କାମ ମିଳିବ ନାହିଁ, ଲୋକମାନଙ୍କ ଧନ ଜୀବନ ବିପନ୍ନ ହେବ, ମହିଳାମାନେ ସ୍ନେହ ସମ୍ମାନ ପାଇବା ପରିବର୍ତ୍ତେ ନିର୍ଯାତିତା ହେବେ, ତା'ହେଲେ ସାଧାରଣ ଲୋକଙ୍କ ପାଇଁ ସ୍ୱାଧୀନତାର ଅର୍ଥ ମୂଲ୍ୟହୀନ ହେବ ।

ଅଗଷ୍ଟ ୧୫ ତାରିଖକୁ ସ୍ୱାଧୀନତା ଦିବସ ଭାବେ ୧୯୪୭ ମସିହାରୁ ଆମେ ପାଳନ କରିଆସୁଛୁ । କିନ୍ତୁ ଏହାର ୧୭ ବର୍ଷ ପୂର୍ବରୁ ଜାନୁଆରୀ ୨୬କୁ ପୂର୍ଣ୍ଣ ସ୍ୱରାଜ ଦିବସ ଭାବେ ୧୯୩୦ ମସିହାରେ ପ୍ରାକ୍ ସ୍ୱାଧୀନତା କାଳରେ ପାଳନ କରାଯାଉଥିଲା । ଲାହୋର କଂଗ୍ରେସ ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ଲୋକେ ଦେଶର ବିଭିନ୍ନ ଅଞ୍ଚଳରେ ଜାନୁଆରୀ ୨୬ରେ ତ୍ରିରଙ୍ଗା ଝଣ୍ଡା ଉଡ଼ାଇ ପୂର୍ଣ୍ଣ ସ୍ୱରାଜର ଶପଥ ନେଉଥିଲେ । ଏଥିରେ ସେତେବେଳେ ଦେଶରେ ଚାଲୁଥିବା ସୈତାନୀ ଶାସନ ବ୍ୟବସ୍ଥାର ଅବସାନ ପାଇଁ ଶପଥ ନିଆଯାଉଥିଲା । ନିଜେ ଗାନ୍ଧିଜୀ ଦେଶବାସୀଙ୍କ ପାଇଁ ପୂର୍ଣ୍ଣ ସ୍ୱରାଜର ଶପଥପତ୍ର ତିଆରି କରିଥିଲେ । ଇତିହାସର ଏହି ଗୌରବାବହ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ସ୍ୱାଧୀନତା ପରେ ଆମ ଦେଶର ସମ୍ବିଧାନକୁ ୧୯୫୦ ମସିହାର ଜାନୁଆରୀ ୨୬ ତାରିଖରେ ଲାଗୁ କରାଗଲା । ତା'ପରଠାରୁ ଅଗଷ୍ଟ ୧୫ ଭଳି ଜାନୁଆରୀ ୨୬କୁ ଆମେ ଜାତୀୟ ଦିବସ ଭାବେ ପାଳନ କରିଆସୁଛୁ ।

କେତେକ ଆଶଙ୍କା ବ୍ୟକ୍ତ କରନ୍ତି ଯେ ଭାରତୀୟ ସ୍ୱରାଜ ମୁଖ୍ୟତଃ ହିନ୍ଦୁ ସମ୍ପ୍ରଦାୟ ଦ୍ୱାରା ଶାସିତ ହେବ । ଏହି ଉକ୍ତିଠାରୁ ଦୁନିଆରେ ଆଉ ବଡ଼ ଭୁଲ୍ କିଛି ନାହିଁ ବୋଲି ଉଲ୍ଲେଖ କରି ଗାନ୍ଧିଜୀ କହିଥିଲେ ଯେ ଯଦି ଏଭଳି ହୁଏ, ତା'ହେଲେ ଏହାକୁ ସେ ସ୍ୱରାଜ ଭାବେ ଗ୍ରହଣ କରିପାରିବେ ନାହିଁ । ବରଂ ତାଙ୍କର ସମସ୍ତ ଶକ୍ତି ଖଟାଇ ଏହାର ବିରୋଧ କରିବେ । କାରଣ ସ୍ୱରାଜ ପରିଚାଳନାରେ ସମସ୍ତଙ୍କର ସମାନ ଅଧିକାର ରହିବ । ସତ୍ୟ ଓ ନ୍ୟାୟର ରାଜତ୍ୱ ହିଁ ଏଠାରେ ସ୍ୱୀକାର୍ଯ୍ୟ । ତେଣୁ ସବୁ ସମ୍ପ୍ରଦାୟ, ଧର୍ମ, ଜାତି ଆଦି ପାଇଁ ସ୍ୱରାଜ ପରିଚାଳନା ଦ୍ୱାର ସଦାସର୍ବଦା ଖୋଲା । ସତ୍ୟ ଓ ଅହିଂସା ସ୍ୱରାଜର ଜାଗ୍ରତ ପ୍ରହରୀ । ଦରିଦ୍ରତମ ଲୋକମାନେ ପୂର୍ଣ୍ଣ ପ୍ରାଣରେ ସ୍ୱରାଜର ସୁବିଧା ସୁଯୋଗ ଅନୁଭବ କରି ଉପରକୁ ଉଠିବେ । ନହେଲେ ଏହାକୁ ପୂର୍ଣ୍ଣ ସ୍ୱରାଜ କୁହାଯାଇପାରିବ ନାହିଁ, ଅର୍ଥାତ୍ ଆମେ ଯେଉଁ ରାମ ରାଜ୍ୟର ସ୍ୱପ୍ନ ଦେଖୁଛେ, ତାହା ବିଫଳ ହୋଇଯିବ ।

ସ୍ୱରାଜକୁ ଯେଉଁମାନେ ପରିପୁଷ୍ଟ କରିବେ ସେମାନେ ଅନ୍ତତଃପକ୍ଷେ ୭ଟି ସାମାଜିକ ପାପଠାରୁ ଦୂରେଇ ରହିବେ ବୋଲି ଗାନ୍ଧିଜୀ ଚେତାଇ ଦେଇଥିଲେ । ଏହି ପାପଗୁଡ଼ିକ ହେଲା– 'ନୀତି ବିହୀନ ରାଜନୀତି, ନୈତିକତା ବିହୀନ ବାଣିଜ୍ୟ ବ୍ୟବସାୟ, ଚରିତ୍ର ବିହୀନ ଶିକ୍ଷା, ଶ୍ରମ ବିହୀନ ସମ୍ପଦ, ବିବେକ ବିହୀନ ବିଳାସ, ମାନବିକତା ବିହୀନ ବିଜ୍ଞାନ ଓ ତ୍ୟାଗ ବିହୀନ ଉପାସନା'। ସ୍ୱରାଜକୁ ବଳିଷ୍ଠ କରିବା ପାଇଁ ରଚନାତ୍ମକ କାର୍ଯ୍ୟକ୍ରମର ସାର୍ବଜନୀନ ପ୍ରୟୋଗର ଆବଶ୍ୟକତା ଉପରେ ସେ ବାରମ୍ବାର ଗୁରୁତ୍ୱାରୋପ କରୁଥିଲେ । ଏହି ରଚନାତ୍ମକ କାର୍ଯ୍ୟକ୍ରମଗୁଡ଼ିକ ଭିତରେ ନିଶା ନିବାରଣ, ଖଦି ଓ ଗ୍ରାମୋଦ୍ୟୋଗ, ସାମ୍ପ୍ରଦାୟିକ ସଦ୍‌ଭାବ, ଅସ୍ପୃଶ୍ୟତା ନିବାରଣ, ଗ୍ରାମ ସଫେଇ, ମୌଳିକ ଓ ପ୍ରୌଢ଼ ଶିକ୍ଷା ତଥା ନିରକ୍ଷରତା ଦୂରୀକରଣ, ଆଦିବାସୀ ଓ ହରିଜନଙ୍କ ସେବା, କୁଷ୍ଠ ରୋଗୀଙ୍କ ସେବା, ନାରୀ ଜାତିର ଉତ୍‌ଥାନ, କୃଷି ଓ କୃଷକର ବିକାଶ, ସ୍ୱଚ୍ଛତା, ସ୍ୱାସ୍ଥ୍ୟ ବିଜ୍ଞାନ, ଆର୍ଥିକ ସମତା, ସମସ୍ତ ଛାତ୍ରଙ୍କ କଲ୍ୟାଣ, ଶ୍ରମିକମାନଙ୍କର ଉନ୍ନତି ଏବଂ ପ୍ରାଦେଶିକ ଭାଷାର ସମୃଦ୍ଧି ସହିତ ରାଷ୍ଟ୍ର ଭାଷାର ପ୍ରଚାର ପ୍ରସାର ଅନ୍ୟତମ । ଆମ ସମସ୍ତଙ୍କ ପାଇଁ ଗାନ୍ଧିଜୀ ଏକାଦଶ ବ୍ରତ ଦେବା ସହିତ ତାହାର ଅନୁପାଳନ ଉପରେ ଗୁରୁତ୍ୱ ଦେଉଥିଲେ । ଏହି ଏକାଦଶ ବ୍ରତ ହେଲା–

'ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ୍ୟ ଶରୀର ଶ୍ରମ, ଅସ୍ୱାଦ, ସର୍ବତ୍ର ଭୟ ବର୍ଜନ୍ୟ ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ, ସ୍ପର୍ଶଭାବନ୍ୟ ବିନମ୍ର ବ୍ରତ ନିଷ୍ଠାସେ ଯେ ଏକାଦଶ ସେବ୍ୟ ହେଁ ।'

ସେ ଭାରତର ଏକଛତ୍ରବାଦୀ ଶାସକ ହୋଇଥିଲେ ଦେଶ ସୁଧାରିବା ପାଇଁ ପ୍ରଥମେ କେଉଁ କାମ ହାତକୁ ନିଅନ୍ତେ ବୋଲି ପ୍ରଶ୍ନ ହେବାରେ ଗାନ୍ଧିଜୀ କହିଥିଲେ ଯେ ଯଦି ଦିନକ ପାଇଁ ଏ ସୁଯୋଗ ତାଙ୍କ ହାତରେ ଥାଆନ୍ତା ତେବେ ବିନା ନୋଟିସ୍‌ରେ ସାରା ଦେଶର ସବୁ ମଦ ଦୋକାନକୁ ସେ ଆଗେ ବନ୍ଦ କରିଦିଅନ୍ତେ । କାରଣ ମଦ ହେଉଛି ସବୁ ଦୁଷ୍କୃତିର ଜନନୀ । ଚୋରି ଓ ବେଶ୍ୟାବୃତ୍ତିଠାରୁ ମଦ୍ୟପାନ ଅଧିକ ପାପ । ନିଶା ଔଷଧ ଓ ମଦ ହେଉଛନ୍ତି ସୈତାନର ଦୁଇଟି ହାତ । ଦାରିଦ୍ର୍ୟ, ଦୁର୍ଘଟଣା, ହିଂସା, ଅପରାଧ, ରୋଗ, ନିରକ୍ଷରତା, ଆଳସ୍ୟ, ନାରୀ ଓ ଶିଶୁ ନିର୍ଯାତନା, ପାରିବାରିକ ଗଣ୍ଡଗୋଳ, ସାମାଜିକ ଓ ଆର୍ଥିକ ଅସନ୍ତୁଳନ ଏବଂ ନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅଧପତନର ଅନ୍ୟତମ କାରଣ ହେଉଛି ନିଶା । ଯାହା ମଣିଷକୁ ଏତେ ତଳର ଅମଣିଷ ସ୍ତରକୁ ଖସାଇ ଦିଏ ଯେ ସେ ନିଜ ମା' ଭଉଣୀଙ୍କ ସହ ବି ଖରାପ ଆଚରଣ କରିବସେ । ଲୋକଙ୍କ ବିନାଶର ସାଧନ ସେମାନଙ୍କ ହାତ ପାଆନ୍ତାରେ ଜୁଟାଇବା କୌଣସି ଜନମଙ୍ଗଳକାରୀ ସରକାର କିମ୍ବା ସଭ୍ୟ ସମାଜର କାମ ନୁହେଁ । ତେଣୁ ସ୍ୱାଧୀନ ଭାରତରେ ନିଶା ନିବାରିତ ହେବା ସହ ସରକାର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ମଦ ସମେତ ଅନ୍ୟ ନିଶା ବେପାରକୁ ପ୍ରୋତ୍ସାହିତ କରିବେ ନାହିଁ । ଅବକାରୀ ରାଜସ୍ୱକୁ ତ ଆୟର ପନ୍ଥା ଭାବେ ଆଦୌ ଗ୍ରହଣ କରାଯିବ ନାହିଁ ବୋଲି ବାରମ୍ବାର ଗାନ୍ଧିଜୀ ରୋକଠୋକ ଭାବେ କହିଛନ୍ତି । ସ୍ୱାଧୀନତା ଆନ୍ଦୋଳନରେ ତେଣୁ ନିଶା ନିବାରଣ ଅଭିଯାନ ଥିଲା ଏକ ପ୍ରମୁଖ କାର୍ଯ୍ୟକ୍ରମ ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ବିଭାଜନ ସହିତ ଆମେ ଯେଉଁ ସ୍ୱାଧୀନତା ପାଇଛେ ତାହା ଆମ କଳ୍ପିତ ସ୍ୱରାଜର ଏକ ଛୋଟିଆ ଅଂଶ ମାତ୍ର ବୋଲି ଉଲ୍ଲେଖ କରି ଗାନ୍ଧିଜୀ ଜୋର ଦେଇ ବାରମ୍ବାର କହୁଥିଲେ ଯେ ଇଂରେଜଙ୍କ ବଦଳରେ ଭାରତୀୟଙ୍କ ହାତରେ ଶାସନର ଡୋରି ରହିଗଲେ ସାଧାରଣ ଲୋକଙ୍କର ବିଶେଷ ପରିବର୍ତ୍ତନ ହେବ । ଆର୍ଥିକ, ସାମାଜିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଓ ନୈତିକ ସ୍ୱାଧୀନତା ବିନା ଏହି ରାଜନୈତିକ ସ୍ୱାଧୀନତା ଅର୍ଥହୀନ ହୋଇପଡ଼ିବ । ତେଣୁ ରାଜନୈତିକ ସ୍ୱାଧୀନତା ପ୍ରାପ୍ତି ପରେ ପୁଣି ସଂକଳ୍ପବଦ୍ଧ ହୋଇ ପୂର୍ଣ୍ଣ ସ୍ୱରାଜ ହାସଲ ପାଇଁ ଲୋକେ ସେମାନଙ୍କ ସଂଗ୍ରାମ ଓ ସାଧନା ଜାରି ରଖନ୍ତୁ । ଗୋଟିଏ ରାଷ୍ଟ୍ରର ବିକାଶର ପ୍ରଥମ ପାହାଚ ହେଉଛି ବ୍ୟକ୍ତି । ବ୍ୟକ୍ତି ଜୀବନର ଆର୍ଥିକ, ସାମାଜିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଓ ନୈତିକ ବିକାଶର ସାମୂହିକ ପରିପ୍ରକାଶ ଘଟିଲେ ସମାଜରେ ଯେଉଁ ଉତ୍ତାଳ ତରଙ୍ଗ ସୃଷ୍ଟି ହେବ ସେଥିରେ ରାଷ୍ଟ୍ରର ସ୍ୱରୂପ ବଦଳିଯିବ ଏବଂ ସତ୍ୟାଗ୍ରହ ଆନ୍ଦୋଳନରେ ଅହିଂସା ଅସ୍ତ୍ରର ସଫଳ ପ୍ରୟୋଗ କରି ଦେଶବାସୀ ଯେଉଁ ସ୍ୱାଧୀନତା ହାସଲ କରିଛନ୍ତି ତାହା ବିଶ୍ୱରେ ଆଦର୍ଶ ସ୍ଥାନୀୟ ହୋଇପାରିବ । ସତ୍ୟାଗ୍ରହ ହେଉଛି ଏମିତି ଏକ ସକାରାତ୍ମକ ଅସ୍ତ୍ର ଯେଉଁଥିରେ ହିଂସା, ଦ୍ୱେଷ, ଘୃଣା, ଭୟ ଓ ପକ୍ଷପାତିତାର ସ୍ଥାନ ନଥାଏ । ସତ୍ୟାଗ୍ରହ ଯୁଦ୍ଧରେ କେହି ବିଜିତ କିମ୍ବା ପରାଜିତ ନଥାନ୍ତି । ଯିଏ ଏହି ଅସ୍ତ୍ର ପ୍ରୟୋଗ କରେ ଏବଂ ଯାହା ଉପରେ ଏହାର ପ୍ରୟୋଗ କରାଯାଏ ସେଥିରେ ଉଭୟଙ୍କର କଲ୍ୟାଣ ହିଁ କଲ୍ୟାଣ ହୁଏ । ସତ୍ୟାଗ୍ରହ ଅହିଂସା ଭୀରୁ ଓ କାପୁରୁଷଙ୍କ ଅସ୍ତ୍ର ନୁହେଁ । ସତ୍ୟର ଧାତୁ ଓ ଅହିଂସାର ଶାଣଦିଆ ଅସ୍ତ୍ର ହେଉଛି ସତ୍ୟାଗ୍ରହ । ସତ୍ୟ ଓ ଅହିଂସାର ବାଣୀ ତାଙ୍କର ସୃଷ୍ଟି ନୁହେଁ ଓ ଏହା ପର୍ବତ ଭଳି କେଉଁ ଅନାଦି ଅନନ୍ତ କାଳରୁ ଚଳି ଆସିଥିବା ଶୁଦ୍ଧ ବିଚାର ବୋଲି ସେ କହିଥିଲେ ।

ବ୍ୟବସ୍ଥା ସଭାରେ ଗୃହୀତ ସିଦ୍ଧାନ୍ତ ଆମକୁ ସାମ୍ବିଧାନିକ ସ୍ୱରାଜ ଦେଇପାରେ, କିନ୍ତୁ ଆମ ଦେଶ ଆଗରେ ଥିବା ଅଗଣିତ ସମସ୍ୟାର ଯଦି ଆମେ ସମାଧାନ କରିନପାରୁ ତା'ହେଲେ ସ୍ୱରାଜ କେବଳ ଏକ କଳ୍ପନାର ବିଷୟବସ୍ତୁ ହୋଇ ରହିଯିବ ବୋଲି ଗାନ୍ଧିଜୀ ଚେତାବନୀ

ଦେଇଥିଲେ । କିନ୍ତୁ କେତେକ ବ୍ୟକ୍ତି ନିଜର ଓ ସମାଜର ଗୁରୁତର କ୍ଷତି କରିଥାଏ । ପ୍ରକୃତ ଗଣତନ୍ତ୍ର କିମ୍ବା ସ୍ୱରାଜ ଅସତ୍ ଓ ହିଂସାତ୍ମକ ଉପାୟରେ ଆସେନାହିଁ । ପବିତ୍ର ଅହିଂସା ବଳରେ ପୂର୍ଣ୍ଣ ଓ ବ୍ୟକ୍ତିଗତ ସ୍ୱରାଜ ସମ୍ଭବପର । କର୍ତ୍ତବ୍ୟ ହିଁ ଅଧିକାରର ଜନକ । ତେଣୁ ସ୍ୱରାଜରେ ଲୋକେ ରାଷ୍ଟ୍ରଠାରୁ କେତେ ପାଇବେ ତାହାର ହିସାବ ନିକାଶ ନକରି ରାଷ୍ଟ୍ର ପାଇଁ କେତେ କାମ କରିଯିବେ ତାହା ଉପରେ ଅଧିକ ଧ୍ୟାନ ଦେବା ଆବଶ୍ୟକ । ଅହିଂସାକୁ ଅବଲମ୍ବନ କରି ଗଢ଼ା ଯାଉଥିବା ସ୍ୱରାଜରେ ଅଧିକାରଗତ ଜ୍ଞାନ ପରିବର୍ତ୍ତେ କର୍ତ୍ତବ୍ୟ ଜ୍ଞାନ ଜରୁରୀ । ଯେଉଁମାନେ ଦେଶ ମାତୃକାର ନିଷ୍କାମ ସେବା କରନ୍ତି, ସେମାନଙ୍କ ନିକଟରେ କର୍ତ୍ତବ୍ୟର ନ୍ୟାୟ ସଙ୍ଗତ ଅଧିକାର ସ୍ପଷ୍ଟ ହୋଇଉଠେ ଏବଂ ଏହି ଦେଶସେବୀମାନେ ନେବା ପରିବର୍ତ୍ତେ ସେବା ଓ ଭୋଗ ପରିବର୍ତ୍ତେ ତ୍ୟାଗ ଉପରେ ଅଧିକ ଧ୍ୟାନ ଦେଇଥାନ୍ତି । ସେମାନଙ୍କ ପାଇଁ ବାସ୍ତବରେ ସତ୍ୟ ହିଁ ଈଶ୍ୱର ଓ କର୍ମ ହିଁ ଉପାସନା । ବିନା ଶ୍ରମରେ ଖାଦ୍ୟ ଗ୍ରହଣ କରିବା ଓ ଆବଶ୍ୟକତାଠାରୁ ଅଧିକ ସମ୍ବଳ ଓ ସାମଗ୍ରୀ ରଖିବା ତ ଚୋରି ସହ ସମାନ । ମନେ ରଖିବାକୁ ହେବ ଯେ ଧରିତ୍ରୀ ମାତା ନିକଟରେ ଯେତେ ସମ୍ପଦ ରହିଛି ତାହା ସମସ୍ତଙ୍କ ଚାହିଦା ମେଣ୍ଟାଇବାକୁ ଯଥେଷ୍ଟ, କିନ୍ତୁ ଅଳ୍ପ କିଛି ଲୋକଙ୍କ ଲୋଭ ମେଣ୍ଟାଇବାକୁ ଏହା ପର୍ଯ୍ୟାପ୍ତ ନୁହେଁ । ଗାନ୍ଧିଜୀଙ୍କ ଏହି ଆପ୍ତବାଣୀ ଆଜି ବି ଅଧିକ ପ୍ରାସଙ୍ଗିକ ।

ଡାରଓ୍ୱିନଙ୍କ ମତ ଥିଲା, Survival of the fittest. ଅର୍ଥାତ ଜୋର ଯାର ମୁଲକ ତା'ର । ହକ୍ସଲେ କିନ୍ତୁ ଅନ୍ୟ ଏକ ମତ ଆଣିଲେ । ସେ କହିଲେ, Live and let live. ଅର୍ଥାତ ନିଜେ ବଞ୍ଚ ଓ ଅନ୍ୟକୁ ବଞ୍ଚାଅ ଗାନ୍ଧିଜୀ କିନ୍ତୁ ବିଶ୍ୱକୁ ଦେଲେ ସର୍ବୋଦୟ ମତ । ଏଥିରେ ସେ କହିଲେ 'Live in order to help others live.' ଅର୍ଥାତ ଅନ୍ୟକୁ ବଞ୍ଚିବା ପାଇଁ ସାହାଯ୍ୟ କରିବା ଲାଗି ନିଜେ ବଞ୍ଚ । ସାମଗ୍ରିକ ବିକାଶରେ ହିଁ ବ୍ୟକ୍ତିର ବିକାଶ ନିହିତ ବୋଲି ସେ ଜୋର ଦେଇ କହିଲେ । ଧର୍ମ, ଗୋଷ୍ଠୀ, ଶ୍ରେଣୀ, ଜାତି ଭିତରେ ବିଚାର ନ କରି ସମଗ୍ର ମାନବ ସମାଜର ସାମୂହିକ ବିକାଶ ସାଧନ ହେଉଛି ସର୍ବୋଦୟ ଏବଂ ଏହାର ମାଧ୍ୟମ ହେଉଛି ସତ୍ୟାଗ୍ରହ । ସତ୍ୟ ଅନୁସନ୍ଧାନର ଏହା ଏକ ଅବଦମିତ ପ୍ରଚେଷ୍ଟା । ସତ୍ୟକୁ ଖୋଜିବା ପାଇଁ ଯେଉଁ ସଂକଳ୍ପ ଆବଶ୍ୟକ ତାହା ହିଁ ସତ୍ୟାଗ୍ରହ । କେବଳ ସତ୍ୟ ଆଚରଣ ଫଳରେ ହିଁ ସତ୍ୟ ନିକଟରେ ପହଞ୍ଚିହେବ । ଶରୀର ଏବଂ ମନରେ ଏପରି କାର୍ଯ୍ୟ କରନାହିଁ ଯାହାଫଳରେ ଯାହା ଅସତ୍ୟ ଓ ହିଂସା ସୃଷ୍ଟି କରିବ । ସେ ପୁଣି କହିଲେ ସତ୍ୟ ହିଁ ଭଗବାନ ଓ ସତ୍ୟ ନିକଟରେ ପହଞ୍ଚିବାର ବାଟ ହେଉଛି ଅହିଂସା । ସତ୍ୟ ବଜ୍ରଠାରୁ କଠୋର ଓ ଲହୁଣୀଠାରୁ କୋମଳ ଏବଂ ଏହାର ଠିକଣା ପ୍ରୟୋଗ ହେଉଛି ସ୍ୱଦେଶୀ । ନିଜର ପରିବେଶ ଓ ପରିସ୍ଥିତିକୁ ବିଚାରକୁ ନେଇ ସ୍ୱଧର୍ମର ଖାଣ୍ଟି ପ୍ରୟୋଗ ହିଁ ସ୍ୱଦେଶୀ । ଏଥିପାଇଁ ଗାନ୍ଧିଜୀ ନିର୍ଭୀକତା ଉପରେ ଗୁରୁତ୍ୱ ଦେଉଥିଲେ । ତାଙ୍କ ମତରେ ନିର୍ଭୀକତା ଆଧ୍ୟାତ୍ମିକତାର ପ୍ରଥମ ଉପାଦାନ । ଭୀରୁମାନେ କେବେହେଲେ ନୀତିବାନ ହୋଇପାରିବେ ନାହିଁ । ଯେଉଁଠାରେ ଭୟ ଥାଏ ସେଠାରେ ଧର୍ମ ରହିପାରେ ନାହିଁ ବୋଲି ସେ କହିଆସିଛନ୍ତି । ନାଗରିକମାନଙ୍କ ନୈତିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ବିକାଶ ଉପରେ ଗାନ୍ଧିଜୀ ଗୁରୁତ୍ୱ ଦେଇ ମୌଳିକ ଶିକ୍ଷା ପ୍ରଚଳନ କରିଥିଲେ । ତାଙ୍କ ମତରେ ନାଗରିକମାନଙ୍କ ସମସ୍ତ ପ୍ରକାର ତ୍ୟାଗ ଭାବର ସମାହର ହେଉଛି ରାଷ୍ଟ୍ର । ଯେଉଁଠାରେ ତ୍ୟାଗର ଭାବ ନାହିଁ ସେଠାରେ ରାଷ୍ଟ୍ରର ସେବା ନିଶ୍ଚିତ ଭାବେ ବିପନ୍ନ ହେବ । ଏଥିପାଇଁ ଶାସନ କ୍ଷମତାର ଡୋରି ଧରୁଥିବା ବ୍ୟକ୍ତିମାନେ ନିଜକୁ ଶାସକ ନ ଭାବି ସେବକ ଭାବିବା ଆବଶ୍ୟକ । ଏହିଭଳି ଶାସକର ହିଁ କେବଳ ଲୋକଙ୍କୁ ଆଦେଶ ଦେବାର ଅଧିକାର ରହିଛି । ଗାଁର ବିକାଶରେ ଦେଶର ବିକାଶ କଥା ଗାନ୍ଧିଜୀ ବାରମ୍ବାର ଉଲ୍ଲେଖ କରୁଥିଲେ । ଯେତେବେଳେ ଗାଁଗୁଡ଼ିକରୁ ଦାରିଦ୍ର୍ୟ ଦୂର ହୋଇପାରିବ କେବଳ ସେତିକିବେଳେ ହିଁ ସ୍ୱରାଜ ପ୍ରତିଷ୍ଠିତ ହେବ । ଆମେ ନିଜକୁ ଠିକଣା ଭାବେ ଶାସନ କରି ଶିଖିଲେ ହିଁ ସ୍ୱରାଜ୍ୟ ସମୃଦ୍ଧ ହେବ । ଏହା ଆମ ହାତ ମୁଠାରେ ରହିଛି । ତେଣୁ ସ୍ୱରାଜକୁ ସ୍ୱପ୍ନ ଭଳି ନ ଭାବି ଗାନ୍ଧିଜୀ ଯେଉଁ ସ୍ୱରାଜର ଚିତ୍ର ଆଙ୍କିଥିଲେ ତାହାକୁ ଆମେ ଆମ ନିଜ ଜୀବନ ତଥା ରାଷ୍ଟ୍ର ଜୀବନରେ ପ୍ରତିଫଳିତ କରିବା ଆବଶ୍ୟକ ।

ଧନୀ ଦରିଦ୍ର ମଧ୍ୟରେ ତାରତମ୍ୟ ହ୍ରାସ ଉପରେ ବକ୍ତବ୍ୟ ରଖି ଗାନ୍ଧିଜୀ ଟ୍ରଷ୍ଟିସିପ ନାମରେ ଏକ ତତ୍ତ୍ୱ ଆମ ଆଗରେ ରଖିଛନ୍ତି । ଏଥିରେ ଧନ କୁବେରମାନେ ନିଜକୁ ଠୁଳ କରିଥିବା ଧନର ସର୍ବେସର୍ବା ନ ଭାବି ସମ୍ପତ୍ତିର ନ୍ୟାସି ବା ଟ୍ରଷ୍ଟି ବୋଲି ଭାବିବା ଆବଶ୍ୟକ । ଏହି ନ୍ୟାସ ଦରିଦ୍ରମାନଙ୍କ କାମରେ ଲାଗିବା ଉଚିତ । ଧନୀମାନେ ସ୍ୱତଃପ୍ରବୃତ୍ତ ଭାବେ ଏହି ବିଚାର ନିଜ ଉପରେ ପ୍ରୟୋଗ କରିବା ଆବଶ୍ୟକ । ଯେଉଁମାନେ ଯେଭଳି ଅର୍ଥ ଓ କ୍ଷମତା ଅପହରଣ କରି ଚାଲୁଛନ୍ତି ତାହା ଜନସାଧାରଣଙ୍କ ଉନ୍ନତି କଳ୍ପେ ସ୍ୱେଚ୍ଛାକୃତ ଭାବେ ତ୍ୟାଗ ନ କଲେ ଯେକୌଣସି ଦିନ ଏକ ରକ୍ତାକ୍ତ ଓ ହିଂସାତ୍ମକ ବିପ୍ଳବ ହୋଇପାରେ । ଏହି ସମ୍ଭାବନା ଆଖି ଆଗରେ ରଖି ଟ୍ରଷ୍ଟିସିପ ତତ୍ତ୍ୱକୁ ସେମାନେ ଗ୍ରହଣ କରିବା ପାଇଁ ଗାନ୍ଧିଜୀ ବାରମ୍ବାର ନିବେଦନ କରିଛନ୍ତି । ଆମ ସ୍ୱରାଜରେ ଯେଉଁ ଗଣତନ୍ତ୍ର ପ୍ରତିଷ୍ଠିତ ହେଉଛି ସେଥିରେ କେବଳ ସଂଖ୍ୟାଗରିଷ୍ଠ ମତକୁ ଅନ୍ୟମାନଙ୍କ ଉପରେ ତାହା ଭୟଙ୍କର ସମସ୍ୟା ସୃଷ୍ଟି କରିବ ନାହିଁ । ତେଣୁ ପ୍ରକୃତ ସ୍ୱରାଜରେ ସ୍ୱଳ୍ପ ସଂଖ୍ୟକ ଲୋକଙ୍କ ମତକୁ ମଧ୍ୟ ଶାସନ ଡୋରି ଧରିଥିବା ନେତା ଓ ଅଧିକାରୀମାନେ ସମ୍ମାନ ଦେବା ଆବଶ୍ୟକ । ବାସ୍ତବରେ ସହନଶୀଳତା ଓ ବିରୋଧୀ ପକ୍ଷର ମତକୁ ସମ୍ମାନ ଦେବା ହେଉଛି ଗଣତନ୍ତ୍ରର ଭୂଷଣ । ଏହା ବିଦ୍ୱେଷ ପରିବର୍ତ୍ତେ ପ୍ରେମର ଧର୍ମ ଶିଖାଇଥାଏ । ହିଂସା ପରିବର୍ତ୍ତେ ଆତ୍ମ ବଳିଦାନର କଥା କୁହେ ଓ ପଶୁବଳର ସମ୍ମୁଖୀନ ହେବା ପାଇଁ ଆତ୍ମବଳକୁ ସୁଦୃଢ଼ କରେ ।

ସ୍ୱରାଜରେ ସଂସ୍କାରିତ ଶିକ୍ଷା ବ୍ୟବସ୍ଥା ଓ ସାର୍ବଜନୀନ ସ୍ୱାସ୍ଥ୍ୟସେବା ଉପଲବ୍ଧ ହେବ । ପ୍ରତ୍ୟେକ ଶିଶୁକୁ ରାଷ୍ଟ୍ର ସମ୍ପଦ ଭାବେ ଗ୍ରହଣ କରିବ । ମହିଳାମାନଙ୍କ ନିରାପତ୍ତା ସମ୍ପୂର୍ଣ୍ଣ ସୁରକ୍ଷିତ ରଖିବା ସହିତ ରାଷ୍ଟ୍ର ମହିଳାଙ୍କୁ ମଧ୍ୟ ପୁରୁଷଙ୍କ ସମକକ୍ଷ କରିବ । ଅସ୍ପୃଶ୍ୟତା ସମ୍ପୂର୍ଣ୍ଣ ଭାବେ ନିବାରିତ ହେବ ଏବଂ ସାମ୍ପ୍ରଦାୟିକ ସଦ୍‌ଭାବ ଗଣତନ୍ତ୍ରକୁ ସୁଦୃଢ଼ କରିବ । ପ୍ରତି ସମର୍ଥ ହାତକୁ କାମ ମିଳିବ । ପରିବେଶ ସୁରକ୍ଷିତ ରହିବ । ଆର୍ଥିକ ଶୋଷଣ ସମ୍ପୂର୍ଣ୍ଣ ଭାବେ ଦୂର ହେବ । ମାତୃଭାଷା ଓ ରାଷ୍ଟ୍ରଭାଷାକୁ ଲୋକେ ପରିପୁଷ୍ଟ କରିବେ । ସ୍ୱରାଜର ସରକାର ଏଥିପାଇଁ ସୁଯୋଗ ସୃଷ୍ଟି କରିବ । ଫଳରେ ବୌଦ୍ଧିକତା ଓ ନୈତିକତାର ବିକାଶ ଘଟି ନାଗରିକମାନଙ୍କ ଆଧ୍ୟାତ୍ମିକ ମୂଳଦୁଆକୁ ସୁଦୃଢ଼ କରିବ ବୋଲି ଗାନ୍ଧିଜୀଙ୍କର ସ୍ପଷ୍ଟ ମତ ଥିଲା ।

ଭାରତବାସୀ ଯେଉଁ ସ୍ୱରାଜ ପାଇଁ ଲଢ଼ିଛନ୍ତି ସେଥିରେ ସେମାନଙ୍କ ସ୍ୱାଭିମାନ ଓ ସ୍ୱାବଲମ୍ବନ ଜଡ଼ିତ । ତେଣୁ ରାଷ୍ଟ୍ରକୁ ସମୃଦ୍ଧ କରିବା ପାଇଁ ସ୍ୱରାଜର ସ୍ୱତନ୍ତ୍ର ସ୍ୱଦେଶୀ ବାଣିଜ୍ୟ ନୀତି ରହିବ ଯେଉଁଠି କଞ୍ଚାମାଲ ପରିବର୍ତ୍ତେ ଆମ ଦେଶରେ ତିଆରି ସାମଗ୍ରୀ ଅଧିକ ପରିମାଣରେ ବିଦେଶକୁ ରପ୍ତାନି ହେବ ଏବଂ ନିହାତି ଆବଶ୍ୟକ ଥିବା ଜରୁରୀ ସାମଗ୍ରୀ କେବଳ କମ୍ ପରିମାଣରରେ ବିଦେଶରୁ ଆମଦାନୀ କରାଯିବ । ରପ୍ତାନି ଅପେକ୍ଷା ଆମଦାନୀ ଅଧିକ ହେଲେ ଦେଶରେ ଶ୍ରମ ସଂକଟ ସୃଷ୍ଟି ହେବା ସହିତ ଆର୍ଥିକ ଓ ଅନ୍ୟାନ୍ୟ ବିଶୃଙ୍ଖଳା ବଢ଼ିବ ଏବଂ ଦେଶ ଋଣଗ୍ରସ୍ତ ହୋଇ ପୁଣି ବିଦେଶୀ ଯନ୍ତାରେ ପଡ଼ିବ । ପାଶ୍ଚାତ୍ୟ ପଦ୍ଧତିର କୌଣସି ବିକଶିତ ପ୍ରାମାଣିକ ଜ୍ଞାନକୁ ଧାର ସୂତ୍ରରେ ଆଣିବା ଲାଗି ତାଙ୍କର ସାମାନ୍ୟ ଲଜ୍ଜା ନାହିଁ, କିନ୍ତୁ ଏହାକୁ ପ୍ରାପ୍ୟ କଳନ୍ତର ଦେଇ ଆମକୁ ପରିଶୋଧ କରିବାକୁ ପଡ଼ିବ ବୋଲି ଗାନ୍ଧିଜୀ ବାରମ୍ବାର ଚେତାଇ ଆସିଛନ୍ତି । ସେହିଭଳି ନିର୍ବାଚିତ ପ୍ରତିନିଧିଙ୍କଠାରୁ ଆରମ୍ଭ କରି ସରକାରୀ କର୍ମଚାରୀ ଓ ରଚନାତ୍ମକ କର୍ମୀଙ୍କ ପର୍ଯ୍ୟନ୍ତ ସମସ୍ତେ ସେବା ମନ୍ତ୍ରରେ ଅଭିମନ୍ତ୍ରିତ ହେବା ସହିତ ରାଜକୋଷର ସୁରକ୍ଷା ଓ ରାଷ୍ଟ୍ରର ମଙ୍ଗଳ ପାଇଁ ସେମାନଙ୍କ ସବୁ ଶକ୍ତି ଖଟାଇବା ଆବଶ୍ୟକ । ସଂଶୟ ଦୂର ପାଇଁ ଏ ପରିପ୍ରେକ୍ଷୀରେ ଗାନ୍ଧିଜୀ ଆମକୁ ଦେଇଯାଇଛନ୍ତି ଏକ ତାରକ ମନ୍ତ୍ର । ଏଥିରେ ସେ ଉଲ୍ଲେଖ କରିଛନ୍ତି, 'ଆପଣ ଯେତେବେଳେ ସନ୍ଦେହରେ ପଡ଼ିଛନ୍ତି ବା ନିଜ କଥା ଆପଣଙ୍କୁ ବେଶୀ ଘାରୁଛି ସେତେବେଳେ ନିମ୍ନ କଥାଟିକୁ ପ୍ରୟୋଗ କରନ୍ତୁ । ଆପଣ ଯେଉଁ ଦରିଦ୍ରତମ ଓ ଦୁର୍ବଳତମ ଲୋକକୁ କେବେ ଦେଖିଥିବେ, ତାହାରି ଚେହେରାକୁ ମନେ ପକାଇ ନିଜକୁ ପଚାରନ୍ତୁ ଯେ ଆପଣ ଯାହା କରିବାକୁ

ଯାଉଛନ୍ତି ତାହା ସେହି ଲୋକଟିର କିଛି ଉପକାର କରିବ କି ? ଆପଣଙ୍କ କାର୍ଯ୍ୟ ଦ୍ୱାରା ତାହାର କିଛି ଲାଭ ହେବ କି ? ତା'ର ଜୀବନ ଓ ଭାଗ୍ୟକୁ ନିୟନ୍ତ୍ରଣ କରିବା ପାଇଁ ଆପଣଙ୍କ କାମ ତାକୁ କିଛି ବଳ ଦେଇପାରିବ କି ? ଅର୍ଥାତ୍ ଆପଣଙ୍କ କାମ ଦେଶର ଅଗଣିତ ଭୋକିଲା ଓ ଆଧ୍ୟାତ୍ମିକତା ଦୃଷ୍ଟିରୁ ଅଧଃପତିତ ଲୋକଙ୍କ ପାଇଁ ସ୍ୱରାଜ୍ୟ ପ୍ରତିଷ୍ଠା ଦିଗରେ ସାହାଯ୍ୟ କରିବ କି ? ସେତେବଳେ ଆପଣ ଦେଖିବେ ଯେ ଆପଣଙ୍କର ସନ୍ଦେହ ଓ ସ୍ୱାର୍ଥ ଭାବନା କୁଆଡ଼େ ଉଭେଇ ଗଲାଣି ।' ସେମାନେ ସବୁବେଳେ ମନେ ରଖିବା ଆବଶ୍ୟକ ଯେ ଏହି ଦରିଦ୍ରତମ ଲୋକର ସେବକ ଭାବେ ସେମାନଙ୍କୁ ପାରିଶ୍ରମିକ ଓ ଭତ୍ତା ମିଳୁଛି । ତେଣୁ ଯେଉଁ ରାଜକୋଷରେ ଏହି ଦରିଦ୍ରତମ ଲୋକର ଯୋଗଦାନ ରହିଛି ତାହାର ନିଷ୍କାପର ପରିଚାଳନା, ସୁରକ୍ଷା ଓ ସମୃଦ୍ଧି କରିବା ସେମାନଙ୍କର ପରମ କର୍ତ୍ତବ୍ୟ ।

'ମୁଁ ସେହି ଭାରତ ପାଇଁ କାମ କରୁଛି ଯେଉଁଠି ସର୍ବହରା ଲୋକଙ୍କର ଆତ୍ମବିଶ୍ୱାସ ରହିବ ଯେ ଏହା ହେଉଛି ସେମାନଙ୍କ ଦେଶ, ଯାହାର ଗଠନ ପାଇଁ ସେମାନଙ୍କର ଯଥେଷ୍ଟ ଦାୟିତ୍ୱ ରହିଛି । ମୋ ସ୍ୱପ୍ନର ସ୍ୱରାଜରେ ଉଚ୍ଚନୀଚ ଭେଦଭାବ ରହିବ ନାହିଁ– ଅର୍ଥାତ୍ ଏଠି ସମସ୍ତଙ୍କର ଜୀବିକା ନିର୍ବାହର ବୈଷମ୍ୟ ଦୂରେଇ ଯିବ, ସାମ୍ପ୍ରଦାୟିକତା ଓ ଅସ୍ପୃଶ୍ୟତା ବୋଲି କିଛି ନଥିବ, ନିଶା ସମ୍ପୂର୍ଣ୍ଣ ନିବାରିତ ହେବ, ମହିଳାମାନେ ପୂର୍ଣ୍ଣ ସ୍ୱାଧୀନତା ପାଇବେ, ଦୁନିଆ ଲୋକଙ୍କ ସହିତ ଆମେ ଶାନ୍ତିରେ ରହିବୁ, ପୀଡ଼କ–ପୀଡ଼ିତ ନଥିବେ, ବିଦେଶୀ ଓ ସ୍ୱଦେଶୀ ମଧ୍ୟରେ ଭିନ୍ନତା ରହିବ ନାହିଁ, ସତ୍‌କାର୍ଯ୍ୟ କରିବାକୁ ଉତ୍ସାହ ମିଳିବ, ଗୋଷ୍ଠୀଗତ ବୈଷମ୍ୟ ଅପସରି ଯିବ । ଏହା ହିଁ ହେବ ମୋ ସ୍ୱପ୍ନର ଭାରତ'– ମହାତ୍ମା ଗାନ୍ଧୀଙ୍କ ଏହି ଦିବ୍ୟ ତଥା ଦୂରଦର୍ଶୀ ବାଣୀ ସ୍ୱାଧୀନ ଭାରତରେ କେତେଦୂର ରୂପାୟିତ ହୋଇଛି ତାହା ଦିଲ୍ଲୀରୁ ପଲ୍ଲୀ ପର୍ଯ୍ୟନ୍ତ ପ୍ରତ୍ୟେକ ଭାରତୀୟ ସମୀକ୍ଷା କରିବା ଆବଶ୍ୟକ । ଯେଉଁ କ୍ଷେତ୍ରରେ ଆମର ତ୍ରୁଟିବିଚ୍ୟୁତି ରହିଯାଇଛି ତାହାକୁ ସୁଧାରି ନେବା ହେଉଛି ଆମର ପରମ କର୍ତ୍ତବ୍ୟ । ସ୍ୱାଧୀନତା ପ୍ରାପ୍ତିର ୬ ମାସ ପୂରିବା ପୂର୍ବରୁ ଏକ ବିକୃତ ବିଚାରର କୁତ୍ସିତ ଷଡ଼ଯନ୍ତ୍ରରେ ୧୯୪୮ ଜାନୁଆରୀ ୩୦ ତାରିଖରେ ମହାତ୍ମା ଗାନ୍ଧୀଙ୍କୁ ହତ୍ୟା କରାଗଲା । ଗାନ୍ଧୀ ହତ୍ୟାକାରୀ ତିନୋଟି ଗୁଳି ମାରିଥିଲା । ଏ ପରିପ୍ରେକ୍ଷୀରେ ଆମ ରାଜ୍ୟ, ଦେଶ ତଥା ବିଶ୍ୱ ଗାନ୍ଧୀଜୀଙ୍କ ୧୫୦ତମ ଜନ୍ମବାର୍ଷିକୀ ପାଳନ କରୁଥିବା ଅବସରରେ ଅମର ଗାନ୍ଧୀ ଦର୍ଶନର ପ୍ରଚାର, ପ୍ରସାର ଓ ପ୍ରୟୋଗ ପାଇଁ ଏକ ବଡ଼ ସୁଯୋଗ ଆସିଛି । ଏଥିପାଇଁ କିଛି ସମର୍ପିତ ଓ ସଙ୍କଳ୍ପବଦ୍ଧ ସତ୍ୟାଗ୍ରହୀ ଲୋଡ଼ା । ଗାନ୍ଧିଜୀଙ୍କ ଭାଷାରେ, 'ମୁଷ୍ଟିମେୟ କେତେଜଣ ସଙ୍କଳ୍ପବଦ୍ଧ ସାଧକ ଯଦି ସେମାନଙ୍କର ଆଦର୍ଶରେ ଅବିଚଳିତ ବିଶ୍ୱାସ ରଖନ୍ତି, ତା'ହେଲେ ସେମାନେ ଇତିହାସର ମୋଡ଼ ବଦଳାଇ ଦେଇପାରିବେ ।'

ପ୍ଲଟ୍ ନଂ – ଜି.ଏ.୨୨୯
ନୀଳାଦ୍ରି ବିହାର, ବୁଦ୍ଧପାର୍କ ପାଖ
ଭୁବନେଶ୍ୱର–୭୫୧୦୨୧



# ଆମ୍ବେଦକର ଓ ଭାରତୀୟ ସମ୍ବିଧାନ

**ବିଜୟ କୁମାର ନନ୍ଦ**

ଡକ୍ଟର ଭୀମ୍‌ରାଓ ରାମ୍‌ଜୀ ଆମ୍ବେଦକର ଥିଲେ ଜଣେ ସୁପ୍ରସିଦ୍ଧ ସମାଜ ସଂସ୍କାରକ, ରାଜନୀତିଜ୍ଞ ଓ ଆଇନ୍ ବିଶାରଦ । ସେ ଥିଲେ ଏକାଧାରରେ ଜଣେ ଦେଶପ୍ରେମୀ,



ଆଇନଜ୍ଞ, ଦଳିତ ରାଜନୈତିକ ନେତା ଓ କର୍ମୀ, ଦାର୍ଶନିକ, ଚିନ୍ତକ, ନୃତତ୍ତ୍ୱବିତ୍, ଐତିହାସିକ, ବାଗ୍ମୀ, ବହୁପ୍ରସୂ ଲେଖକ, ଅର୍ଥନୀତି ବିଶାରଦ, ଅଧ୍ୟୟନାନୁରାଗୀ ବ୍ୟକ୍ତି, ସମ୍ପାଦକ, ବିପ୍ଳବୀ, ଅର୍ଥତତ୍ତ୍ୱବିତ୍, ଭାରତରେ ବୌଦ୍ଧଧର୍ମର ପୁନର୍ଜାଗରଣ ପ୍ରବର୍ତ୍ତକ ଏବଂ ଭାରତୀୟ ସମ୍ବିଧାନର ମୁଖ୍ୟ ବିନ୍ଧାଣି । ସେ ଭାରତର ଦଳିତ ଓ ବୌଦ୍ଧ ଆନ୍ଦୋଳନକୁ ଅନୁପ୍ରେରିତ କରିଥିଲେ । ଆମ୍ବେଦକର ଥିଲେ ସ୍ୱାଧୀନ ଭାରତର ପ୍ରଥମ ଆଇନ୍ ଓ ନ୍ୟାୟ ମନ୍ତ୍ରୀ । ଭାରତୀୟ ସମ୍ବିଧାନର ମୁଖ୍ୟ ବିନ୍ଧାଣି ହୋଇଥିବାରୁ ତାଙ୍କୁ ଭାରତୀୟ ରିପବ୍ଲିକ୍ ବା ସାଧାରଣତନ୍ତ୍ରର ପ୍ରତିଷ୍ଠାତା ବୋଲି କୁହାଯାଏ । ତାଙ୍କର ଉଲ୍ଲେଖନୀୟ କାର୍ଯ୍ୟକଳାପ ଓ ଅବଦାନ ଯୋଗୁଁ ତାଙ୍କୁ ଲୋକମାନେ ପ୍ରିୟ ବାବା ସାହେବ ଅର୍ଥାତ୍ ସମ୍ମାନନୀୟ ପିତା ବୋଲି କହୁଥିଲେ ।

ଆମ୍ବେଦକର ଜଣେ ପ୍ରତିଭାଶାଳୀ ଛାତ୍ର ଥିଲେ । ସେ ଅର୍ଥନୀତିରେ ଉଭୟ 'କଲମ୍ବିଆ ବିଶ୍ୱବିଦ୍ୟାଳୟ' ଏବଂ 'ଲଣ୍ଡନ୍ ସ୍କୁଲ୍ ଅଫ୍ ଇକୋନୋମିକ୍ସ୍'ରୁ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ । ପ୍ରଥମେ ସେ ଥିଲେ ଜଣେ ଅର୍ଥନୀତିଜ୍ଞ, ପ୍ରଫେସର ଏବଂ ଆଇନ୍‌ଜୀବୀ, କିନ୍ତୁ ପରବର୍ତ୍ତୀ ଜୀବନରେ ରାଜନୀତିରେ ସମ୍ପୃକ୍ତ ହେଲାପରେ ସେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ, ବିଭିନ୍ନ ପତ୍ରିକା ପ୍ରକାଶନର ଦାୟିତ୍ୱ ନେଲେ ଏବଂ ଦଳିତମାନଙ୍କର ରାଜନୈତିକ ଅଧିକାର ଏବଂ ସାମାଜିକ ସ୍ୱାଧୀନତା ପାଇଁ ଓକିଲାତି କଲେ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲାପରେ ନୂଆକରି ଗଢା ହୋଇଥିବା କଂଗ୍ରେସ ସରକାର ତାଙ୍କୁ ଆମନ୍ତ୍ରଣ କଲେ ପ୍ରଥମ ଆଇନ୍ ଓ ନ୍ୟାୟ ମନ୍ତ୍ରୀ ହେବା ପାଇଁ ଏବଂ ଆମ୍ବେଦକର ସେହି ଆମନ୍ତ୍ରଣକୁ ଗ୍ରହଣ କଲେ । ସେହିବର୍ଷ ଅଗଷ୍ଟ ୨୯ ତାରିଖରେ ସେ

ନିଯୁକ୍ତି ପାଇଲେ ସମ୍ବିଧାନ ପ୍ରଣୟନ କମିଟିର ସଭାପତି ଭାବରେ ଭାରତର ନୂତନ ସମ୍ବିଧାନ ପ୍ରଣୟନ କରିବା ପାଇଁ । ସମ୍ବିଧାନ ପ୍ରଣୟନ ସଭା ତାଙ୍କୁ ଏହି ନିଯୁକ୍ତି ଦେଇଥିଲା । ସମ୍ବିଧାନ ପ୍ରଣୟନ କମିଟିରେ ସଭାପତି ବା ଚେୟାର୍‌ମ୍ୟାନ୍ ଆମ୍ବେଦକରଙ୍କୁ ମିଶାଇ ସାତଜଣ ସଦସ୍ୟ ରହିଥିଲେ । ଅନ୍ୟ ଛଅଜଣ ସଦସ୍ୟ ହେଉଛନ୍ତି:

୧) ଆଲ୍ଲାଡି କୃଷ୍ଣସ୍ୱାମୀ ଆୟାର୍

୨) ଏନ୍ ଗୋପାଳସ୍ୱାମୀ ଆୟେଙ୍ଗାର୍

୩) କେ.ଏମ୍. ମୁନ୍‌ସି

୪) ମହମ୍ମଦ ମୋଲା ସାଦୁଲ୍ଲା

୫) ବି.ଏଲ୍.ମିତ୍ତର୍

୬) ଡି.ପି. ଖଇତାନ୍

ଯେତେବେଳେ ସମ୍ବିଧାନ ପ୍ରଣୟନ କଥା ଉଠିଲା, ପଣ୍ଡିତ ଜବାହରଲାଲ ନେହେରୁ ଏବଂ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସେସମୟରେ ଆନ୍ତର୍ଜାତିକ ସ୍ତରରେ ଖ୍ୟାତିଲାଭ କରିଥିବା ଜଣେ ସମ୍ବିଧାନ ବିଶେଷଜ୍ଞ ସାର୍ ଉଇଲିୟମ୍ ଆଇଭର୍ ଜେନିଂସ୍‌ଙ୍କୁ ନିମନ୍ତ୍ରଣ କରି ତାଙ୍କ ସହିତ ପରାମର୍ଶ କରିବା ପାଇଁ ଚିନ୍ତାକଲେ । ଏ ସଂକ୍ରାନ୍ତରେ ଶେଷ ନିଷ୍ପତ୍ତି ନେବା ପୂର୍ବରୁ ସେମାନେ ଗାନ୍ଧିଜୀଙ୍କ ନିକଟକୁ ଗଲେ ଏବଂ ନିଜର ଚିନ୍ତାକୁ ବ୍ୟକ୍ତକଲେ । ଗାନ୍ଧିଜୀ ସେମାନଙ୍କୁ କହିଲେ ସେମାନେ କାହିଁକି ଜଣେ ବିଦେଶୀ ସମ୍ବିଧାନ ବିଶେଷଜ୍ଞଙ୍କ ସହାୟତା ଚାହିଁଛନ୍ତି ଯେତେବେଳେ ସେ କାର୍ଯ୍ୟ କରିବା ପାଇଁ ଭାରତରେ ଉପଯୁକ୍ତ ବ୍ୟକ୍ତି ଅଛନ୍ତି । ସେ ହେଉଛନ୍ତି ବିଶିଷ୍ଟ ଆଇନଜ୍ଞ ଓ ସମ୍ବିଧାନ ବିଶେଷଜ୍ଞ ଡକ୍ଟର ଆମ୍ବେଦକର । ପରାମର୍ଶ ଦେବା ପାଇଁ ସେ ହିଁ ଉପଯୁକ୍ତ ବ୍ୟକ୍ତି । ତା'ପରେ ଆଇନ୍ ମନ୍ତ୍ରୀ ଡଃ ଆମ୍ବେଦକରଙ୍କୁ ସମ୍ବିଧାନ ପ୍ରଣୟନ କମିଟିର ଚେୟାରମ୍ୟାନ୍ ରୂପେ ନିଯୁକ୍ତି ଦିଆଯାଇଥିଲା । ବାସ୍ତବିକ ଆମ୍ବେଦକର ଥିଲେ ଜଣେ ସୁପ୍ରସିଦ୍ଧ ସମ୍ବିଧାନ ବିଶେଷଜ୍ଞ । ସେ ପ୍ରାୟ ୬୦ଟି ଦେଶର ସମ୍ବିଧାନକୁ ଅଧ୍ୟୟନ ଓ ଅନୁଶୀଳନ କରିଥିଲେ ।

ଆମ୍ବେଦକରଙ୍କ ଦ୍ୱାରା ପ୍ରସ୍ତୁତ ସମ୍ବିଧାନର ମୂଳପାଠ ନାଗରିକମାନଙ୍କୁ ବହୁ ପରିମାଣର ବ୍ୟକ୍ତି ସ୍ୱାଧୀନତା ଓ ଧାର୍ମିକ ସ୍ୱାଧୀନତା ପାଇଁ ଗ୍ୟାରେଣ୍ଟି ବା ନିଶ୍ଚିତତା ଏବଂ ସୁରକ୍ଷା ଯୋଗାଇ ଦେଲା ଏବଂ ସମାଜରେ ପରିଦୃଷ୍ଟ, ଅସ୍ପୃଶ୍ୟତା ଓ ସବୁପ୍ରକାର ପାତରଅନ୍ତର ନୀତିକୁ ବେଆଇନ୍ ବା ବିଧି ବହିର୍ଭୂତ କଲା । ନାରୀମାନଙ୍କର ବିସ୍ତୃତ ଅର୍ଥନୈତିକ ଓ ସାମାଜିକ ଅଧିକାର ପାଇଁ ସମ୍ବିଧାନରେ ସେ ବ୍ୟବସ୍ଥାମାନ ରଖିଲେ ଏବଂ ସମ୍ବିଧାନରେ ବେସରକାରୀ ଚାକିରି, ସ୍କୁଲ ଏବଂ କଲେଜମାନଙ୍କରେ ଅନୁସୂଚିତ ଜାତି, ଜନଜାତି ଓ ଅନ୍ୟ ଅନୁନ୍ନତ ଶ୍ରେଣୀଗୁଡିକ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ରହିଲା । ଏହା କରିବା ପାଇଁ ସେ ସମ୍ବିଧାନ ପ୍ରଣୟନ ସଭାର ସମର୍ଥନ ଲାଭ କରିଥିଲେ । ଏହା ଥିଲା ଦୃଢତାସୂଚକ କାର୍ଯ୍ୟର ଏକ ବ୍ୟବସ୍ଥା । ଭାରତର ଦଳିତମାନଙ୍କର ସାମାଜିକ-ଅର୍ଥନୈତିକ ବୈଷମ୍ୟ ଓ ସୁବିଧାସୁଯୋଗର ଅଭାବକୁ ଦୂର କରିବା ପାଇଁ ଏହା ଥିଲା ଏକ ସାଧନ । ଆମ୍ବେଦକରଙ୍କ ଦ୍ୱାରା ଏବଂ ତାଙ୍କ ନେତୃତ୍ୱରେ ରଚିତ ସମ୍ବିଧାନ ଗୃହୀତ ହେଲା ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ, ସମ୍ବିଧାନ ପ୍ରଣୟନ ସଭା ଏହାକୁ ଗ୍ରହଣ କଲା ।

ଆମ୍ବେଦକର ଦେଶସାରା ସମାନ ଦେୱାନୀ ଆଇନ୍‌କୁ ସମର୍ଥନ କରିଥିଲେ । ସମ୍ବିଧାନ ପ୍ରଣୟନ ସଭାରେ ସମାନ ଦେବାନୀ ଆଇନ୍‌କୁ ଗ୍ରହଣ କରି ଭାରତୀୟ ସମାଜରେ ସଂସ୍କାର ଆଣିବା ପାଇଁ ସେ ନିଜର ଇଚ୍ଛା ପ୍ରକାଶ କରିଥିଲେ । ଆମ୍ବେଦକର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ ଯେତେବେଳେ ପାର୍ଲିଆମେଣ୍ଟ ତାଙ୍କର ହିନ୍ଦୁ କୋଡ୍ ବିଲ୍ ଚିଠାକୁ ଅଟକାଇ ଦେଇଥିଲା । ସେ ସେହି ବିଲ୍‌ଚିଠାରେ ଚାହୁଁଥିଲେ ଉତ୍ତରାଧିକାର ଏବଂ ବିବାହ ସମ୍ପର୍କିତ ଆଇନ୍‌ରେ ଲିଙ୍ଗଗତ ସାମ୍ୟ ଆଣିବା ପାଇଁ ।

ଆମ୍ବେଦକର ଏହିଭଳି ଏକ ସମାଜ ସପକ୍ଷରେ ଓକିଲାତି କରିଥିଲେ, ଯାହା ତିନିଗୋଟି ମୌଳିକ ନୀତି ଯଥା ସ୍ୱାଧୀନତା, ସାମ୍ୟ ଓ ଭ୍ରାତୃତ୍ୱ ଉପରେ ପର୍ଯ୍ୟବସିତ ହେବ । ସେ ଥିଲେ ଜଣେ ଉଦାରବାଦୀ, ଦୁଃସାହସୀ ଏବଂ ବିପ୍ଳବୀ । ଦଳିତ ଆନ୍ଦୋଳନର ଫମ୍ପା ଆଦର୍ଶକୁ ଠିକ୍‌ଭାବେ

ଉପଲବ୍ଧ କରି ଆବଶ୍ୟକୀୟ ଆଦର୍ଶ ବିଚାରଧାରା ଯୋଗାଇ ଦେଇଥିଲେ ଆମ୍ବେଦକର ଦଳିତ ଶ୍ରେଣୀଗୁଡ଼ିକ ଭିତରେ ଏକ ସୁନ୍ଦର ଜୀବନଯାପନ ପାଇଁ ସେ ଏକ ସଚେତନତା ଜାଗ୍ରତ କରିଥିଲେ । ତାଙ୍କ ଆନ୍ଦୋଳନର ଉଦ୍ଦେଶ୍ୟ ଥିଲା ଦଳିତ ଓ ଗୌଣ ବିବେଚିତ କ୍ଷମତାବିହୀନ ଶ୍ରେଣୀଗୁଡ଼ିକର ଅଧିକାରଗୁଡ଼ିକୁ ପ୍ରତିଷ୍ଠିତ କରିବା ।

ଆମ୍ବେଦକର ଯେଉଁ ଚିଠା ସମ୍ବିଧାନ ପ୍ରସ୍ତୁତ କରିଥିଲେ ସେଥିରେ ଥିଲା ଭାରତର ଜନସାଧାରଣଙ୍କୁ ସ୍ୱାଧୀନତା ଯୋଗାଇଦେବା, ଅସ୍ପୃଶ୍ୟତା ନିରାକରଣ, ସମସ୍ତ ପ୍ରକାର ବାଛବିଚାରର ବିଲୋପ, ନାରୀମାନଙ୍କ ପାଇଁ ବିସ୍ତୃତ ଅର୍ଥନୈତିକ ଓ ସାମାଜିକ ଅଧିକାର, ଅନୁସୂଚିତ ଜାତି, ଜନଜାତି ଓ ଅନ୍ୟାନ୍ୟ ଅନୁନ୍ନତ ଶ୍ରେଣୀ ପାଇଁ ବେସାମରିକ ଚାକିରି, ସ୍କୁଲ ଏବଂ କଲେଜରେ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା, ଧାର୍ମିକ, ଲିଙ୍ଗଗତ ଏବଂ ଜାତିଗତ ସାମ୍ୟ ପାଇଁ ବ୍ୟବସ୍ଥା, ପୁଣି ସେ ପରାମର୍ଶ ଦେଇଥିଲେ ସମାନ ଦେୱାନୀ ଆଇନ୍‌କୁ ଗ୍ରହଣ କରିବା ପାଇଁ । ଏହା ପଛରେ ତାଙ୍କର ଉଦ୍ଦେଶ୍ୟ ଥିଲା ଭାରତୀୟ ସମାଜରେ ସଂସ୍କାର ଆଣିବା ।

ଡକ୍ଟର ଆମ୍ବେଦକର ସମ୍ବିଧାନ ପ୍ରଣୟନରେ ମୁଖ୍ୟ ଭୂମିକା ଗ୍ରହଣ କରି ଭାରତୀୟ ସାଧାରଣତନ୍ତ୍ର ବା ଗଣରାଜ୍ୟକୁ ପ୍ରତିଷ୍ଠା କରିଥିଲେ, ସାରାଜୀବନକୁ ସେ ନିୟୋଜିତ କରିଥିଲେ ଭାରତୀୟ ସମାଜରୁ ଜାତିପ୍ରଥା ବିଲୋପ ଓ ସମସ୍ତ ପ୍ରକାର ସାମାଜିକ ବାଛବିଚାରକୁ ଦୂର କରିବା ପାଇଁ । ସେ କହୁଥିଲେ ଆମେ କେବଳ ରାଜନୈତିକ ଗଣତନ୍ତ୍ରକୁ ନେଇ ସନ୍ତୁଷ୍ଟ ରହିବା ଅନୁଚିତ । ସାମାଜିକ ଗଣତନ୍ତ୍ର ନଥିଲେ ରାଜନୈତିକ ଗଣତନ୍ତ୍ର ବହୁକାଳ ତିଷ୍ଠି ରହିବା ଅସମ୍ଭବ । ତେବେ ଏହି ସାମାଜିକ ଗଣତନ୍ତ୍ର କଅଣ ? ଏହାର ଅର୍ଥ ହେଉଛି ଏକପ୍ରକାର ଜୀବନଧାରଣ ରୀତି, ଯାହା ସ୍ୱାଧୀନତା, ସାମ୍ୟ ଏବଂ ଭ୍ରାତୃତ୍ୱ ଜୀବନର ମୂଳନୀତି ବା ମୌଳିକ ଉପାଦାନ ବୋଲି ସ୍ୱୀକାର କରେ ।

ଡକ୍ଟର ଆମ୍ବେଦକର ସମ୍ବିଧାନ ପ୍ରଣୟନ ଭଳି ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଯେଉଁ ଚିଠା ସମ୍ବିଧାନକୁ ଗ୍ରହଣ କରିବା ପାଇଁ ସୁପାରିସ୍ କରିଥିଲେ, ତାହା ଥିଲା ଏକ ସଂସଦୀୟ ଗଣତନ୍ତ୍ର ଯେଉଁଥିରେ କାର୍ଯ୍ୟପାଳିକା ବା ଶାସନ ବିଭାଗର ଅଧିକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ରହିଲା । ଏହି ସଂସଦୀୟ ଗଣତନ୍ତ୍ର ବା ସାଧାରଣତନ୍ତ୍ରର ବିଶେଷ ଲକ୍ଷଣ ହେଉଛି ଏହା ଭାରତୀୟ ସମ୍ବିଧାନରେ ଏକ ଦ୍ୱୈତ ଶାସନବିଧି ରହିଛି, ଯାହାଦ୍ୱାରା କେନ୍ଦ୍ରରେ ଥିବା ସଂଘ ଓ ପରିଧିରେ ଥିବା ରାଜ୍ୟମାନଙ୍କୁ ଦିଆଯାଇଥିବା ନିଜ ନିଜ କ୍ଷେତ୍ରରେ ସେମାନେ ସାର୍ବଭୌମ କ୍ଷମତା ପ୍ରୟୋଗ କରିବେ ।

ଆମ୍ବେଦକର ସମ୍ବିଧାନରେ ଏକ ସଂଘୀୟ ବ୍ୟବସ୍ଥାର ସୁପାରିସ୍ କରିଥିଲେ । ଭାରତୀୟ ସଂଘୀୟ ବ୍ୟବସ୍ଥା ଅନୁଯାୟୀ ଭାରତ ସାଧାରଣ ସମୟରେ ଏକ ସଂଘ କିନ୍ତୁ ଜରୁରୀ ପରିସ୍ଥିତିରେ ଏହା ହେଉଛି ଏକକୀୟ ବା ଅଖଣ୍ଡ ବା ଅବିଭକ୍ତ । ଏହିଭଳି ଭାବରେ ସେ କେନ୍ଦ୍ରକୁ ଶକ୍ତିଶାଳୀ କରିଛନ୍ତି । ଏକ ଶକ୍ତିଶାଳୀ କେନ୍ଦ୍ର ତରଫରୁ ରହିଥିବା ବ୍ୟବସ୍ଥା ଠିକ୍ ବୋଲି ଦର୍ଶାଇବାକୁ ଯାଇ ଆମ୍ବେଦକର କହିଥିଲେ ସେ କେନ୍ଦ୍ରକୁ ଅଧିକ ଶକ୍ତିଶାଳୀ କରିବାକୁ ଚାହିଁଛନ୍ତି କେବଳ ସଂଖ୍ୟାଲଘୁମାନଙ୍କୁ ସଂଖ୍ୟାଗୁରୁ (ବହୁମତ)ର କୁଶାସନରୁ ରକ୍ଷା କରିବା ପାଇଁ । ପୁଣି କେନ୍ଦ୍ର ହିଁ କେବଳ ଏକ ସାଧାରଣ ଲକ୍ଷ୍ୟ ହାସଲ ପାଇଁ ଏବଂ ଦେଶର ଜନସାଧାରଣଙ୍କର ହିତ ବା ସ୍ୱାର୍ଥ ପାଇଁ କାମ କରିପାରିବ ।

ଚିଠା ସମ୍ବିଧାନରେ ଅନ୍ତର୍ଭୁକ୍ତ ହୋଇଥିଲା ମୌଳିକ ଅଧିକାର । ଏହି ମୌଳିକ ଅଧିକାର ନ୍ୟାୟାଳୟ ଦ୍ୱାରା ସମର୍ଥନୀୟ । ଆମ୍ବେଦକରଙ୍କ ମତରେ ସମସ୍ତ ମୌଳିକ ଅଧିକାର ମଧ୍ୟରେ ସମାନ ସୁବିଧା ସୁଯୋଗ ହେଉଛି ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ସାମ୍ବିଧାନିକ ପ୍ରତିକାର ସମ୍ପର୍କିତ ଆର୍ଟିକିଲ୍‌କୁ ସେ ସମ୍ବିଧାନର ଆତ୍ମା ଓ ହୃଦୟ ବୋଲି କହିଛନ୍ତି । ସମାଜରେ ସାମ୍ୟ ଓ ସ୍ୱାଧୀନତା ପ୍ରତିଷ୍ଠା ପାଇଁ, ସାମାଜିକ ବ୍ୟବସ୍ଥାର ସଂସ୍କାର ପାଇଁ ସମ୍ବିଧାନରେ ଏହି ମୌଳିକ ଅଧିକାର ଅନ୍ତର୍ଭୁକ୍ତ କରାଯାଇଛି ବୋଲି ସେ କହିଥିଲେ । ଭାରତୀୟ ସମାଜରେ ଏତେ ପରିମାଣରେ ଅସମତା, ପାତରଅନ୍ତର ରହିଥିଲା ଯେ ଏଗୁଡ଼ିକର ମୌଳିକ ଅଧିକାର ସହିତ ଦ୍ୱନ୍ଦ୍ୱ ହୋଇଥିଲା ।

ଦେଶର ଶାସନନୀତି ପାଇଁ ରହିଥିବା ନିର୍ଦ୍ଦେଶପତ୍ର ବା ନିୟାମକ ନୀତିରେ ଉଲ୍ଲେଖ ରହିଛି ରାଷ୍ଟ୍ରର ସ୍ୱଷ୍ଟ, ପ୍ରକୃତ ଦାୟିତ୍ୱ ଏହାର ନାଗରିକମାନଙ୍କ ପାଇଁ । ଏହି ନିର୍ଦ୍ଦେଶପତ୍ରର ଉଦ୍ଦେଶ୍ୟ ହେଉଛି ଦେଶର ସାମାଜିକ ଓ ଅର୍ଥନୈତିକ ଗଣତନ୍ତ୍ରକୁ ନିଶ୍ଚିତ କରିବା । ଏହା ସମ୍ବନ୍ଧରେ ଆମ୍ବେଦକର କହିଥିଲେ – " What are called Directive principles is simply another name for instruments of instructions to the legislature and the executive..as to how they should exercise their power. "

ଆମ୍ବେଦକର କହିଥିଲେ ଭାରତୀୟ ସମ୍ବିଧାନ ହେଉଛି ଏକ ଗତିଶୀଳ ଦଲିଲ । ଏହା ଜାତିର ପ୍ରଗତି ସହିତ ତାଳଦେଇ ବିକଶିତ ହେବ ଏବଂ ପରିବର୍ତ୍ତିତ ପରିସ୍ଥିତିର ଆବଶ୍ୟକତାଗୁଡ଼ିକ ସହିତ ଏବଂ ପରିସ୍ଥିତି ସହିତ ଖାପ ଖାଇବ । ତେଣୁ ସମ୍ବିଧାନ ସଂଶୋଧନର ଆବଶ୍ୟକତା ରହିଛି ବୋଲି ସେ ଅନ୍ୟମାନଙ୍କୁ ପ୍ରବର୍ତ୍ତାଇ ଥିଲେ ।

ତାଙ୍କ ଦ୍ୱାରା ପ୍ରସ୍ତୁତ ଚିଠା ସମ୍ବିଧାନ, ସମ୍ବିଧାନ ସଂଶୋଧନର ଅତି ବିସ୍ତୃତ ଓ କଠିନ ପଦ୍ଧତିଗୁଡ଼ିକୁ ଯଥା ଏକ ସଭା ବା ଜନମତ ଦ୍ୱାରା (ଗଣମତ ବା referendum) ଦ୍ୱାରା ଏକ ନିଷ୍ପତ୍ତି ନେବାକୁ ବାଦ୍ ଦେଇଥିଲା । ଏହା ସମ୍ବିଧାନ ସଂଶୋଧନର କ୍ଷମତାକୁ ନ୍ୟସ୍ତ କରିଥିଲା ଉଭୟ କେନ୍ଦ୍ରୀୟ ଓ ପ୍ରାଦେଶିକ ବ୍ୟବସ୍ଥାପକ ସଭାଗୁଡ଼ିକ ଉପରେ । ଡକ୍ଟର ଆମ୍ବେଦକରଙ୍କର ବ୍ୟବସ୍ଥାପକ ସଭାଗୁଡ଼ିକର ସାମ୍ବିଧାନିକ ନୈତିକତା ଉପରେ ସନ୍ଦେହ ରହିଥିଲା । ତେଣୁ ସମ୍ବିଧାନରେ ଶାସନର ନିର୍ଦ୍ଦିଷ୍ଟ ଆଦର୍ଶ ଓ ପ୍ରଣାଳୀକୁ ସେ ଅନ୍ତର୍ଭୁକ୍ତ କରିଥିଲେ ।

ଭାରତର ଗଡ଼ଜାତ ରାଜ୍ୟଗୁଡ଼ିକର ସାର୍ବଭୌମ ରାଷ୍ଟ୍ର ଭାରତ ସହିତ ମିଶ୍ରଣ ଆମ୍ବେଦକର ଚାହିଁଥିଲେ । ତାଙ୍କର ଏଭଳି ଧାରଣା ପଛରେ ଥିଲା ତାଙ୍କର ଗଭୀର ଆଗ୍ରହ ଏବଂ ତାଙ୍କର ସ୍ୱଦେଶବାସୀ ବିଶେଷତଃ ଅନୁସୂଚିତ ଜାତିର ଲୋକମାନଙ୍କ ପାଇଁ ଥିବା ସମବେଦନାରୁ ।

ଚିଠା ସମ୍ବିଧାନରେ ଆମ୍ବେଦକର ଏକକ (single) ନାଗରିକତାର ବିଧାନ କରିଥିଲେ । ସେ ବ୍ୟବସ୍ଥା କରିଥିଲେ ଯେ ଦେଶରେ ଗୋଟିଏ ନ୍ୟାୟପାଳିକା ରହିବ ଏବଂ ମୌଳିକ ଆଇନ୍‌ରେ ମଧ୍ୟ ସମାନତା ରହିବ । ଏ ସବୁର ବ୍ୟବସ୍ଥା ସେ ସମ୍ବିଧାନରେ ରଖିଥିଲେ ଭାରତୀୟ ସମାଜକୁ ଅଖଣ୍ଡ ବା ଏକୀଭୂତ କରିବା ପାଇଁ, ଯାହା ପୂର୍ବରୁ ଜାତି ଓ ଶ୍ରେଣୀ ଆଧାରରେ ବିଭାଜିତ ହୋଇ ରହିଥିଲା, ପୁଣି ମଧ୍ୟ ବିଭାଜିତ ହୋଇଥିଲା ଅଞ୍ଚଳ, ଧର୍ମ, ଭାଷା, ପରମ୍ପରା ଏବଂ ସଂସ୍କୃତି ଦୃଷ୍ଟିରୁ, ତେଣୁ ସେ ଏକ ଶକ୍ତିଶାଳୀ କେନ୍ଦ୍ରର ଅପରିହାର୍ଯ୍ୟତା ବିଷୟରେ ନିଶ୍ଚିତ ହୋଇଥିଲେ । ଭୌଗଳିକ ଅଖଣ୍ଡତା ଏବଂ ପ୍ରଶାସନିକ ଶୃଙ୍ଖଳା ପାଇଁ ଏକ ଶକ୍ତିଶାଳୀ କେନ୍ଦ୍ରର ଆବଶ୍ୟକତା ରହିଛି ବୋଲି ସେ ଅନୁଭବ କରିଥିଲେ ।

ଆମ୍ବେଦକର ସମ୍ପୂର୍ଣ୍ଣଭାବେ ଥିଲେ ଜଣେ ବାସ୍ତବବାଦୀ (Pragmasist) । ସେଥିପାଇଁ ସେ ବିଶ୍ୱାସ କରୁଥିଲେ ଯେ ସମାଜରେ ଅର୍ଥନୈତିକ ଓ ସାମାଜିକ ନ୍ୟାୟ ନଥିଲେ ରାଜନୈତିକ ସ୍ୱାଧୀନତା ତିଷ୍ଠି ରହିବ ନାହିଁ ଏବଂ ସାମାଜିକ ଏକତା ଓ ଜାତୀୟ ଅଖଣ୍ଡତା ଆସିପାରିବ ନାହିଁ । ତେଣୁ ସେ ସମ୍ବିଧାନରେ ଅର୍ଥନୈତିକ ଓ ସାମାଜିକ ନ୍ୟାୟ କଥା ଉଲ୍ଲେଖ କରିଥିଲେ ।

ତାଙ୍କ ଦ୍ୱାରା ପ୍ରଣୀତ ସମ୍ବିଧାନର ମୂଳନୀତିଗୁଡ଼ିକ ହେଲା – ଭାରତୀୟ ସମ୍ବିଧାନକୁ ଯଥେଷ୍ଟ ପରିମାଣରେ ସ୍ଥିତିସ୍ଥାପକ କରି, କାର୍ଯ୍ୟକ୍ଷମ ଓ ଶକ୍ତିଶାଳୀ କରି ଉଭୟ ଶାନ୍ତି ଓ ଯୁଦ୍ଧ ସମୟରେ ଦେଶକୁ ଏକାଠି କରି ରଖିବା, ସଂଖ୍ୟାଲଘୁ ଓ କେତେକ ନିର୍ଦ୍ଦିଷ୍ଟ ବର୍ଗକୁ (ଯେଉଁମାନେ ସମାଜ ଦୃଷ୍ଟିରୁ ଓ ଶିକ୍ଷା ଦୃଷ୍ଟିରୁ ପଛୁଆ) ସ୍ୱତନ୍ତ୍ର ସୁରକ୍ଷା ଯୋଗାଇ ଦେବା, ଜଣେ ବ୍ୟକ୍ତି, ଏକ ଭୋଟ ମୂଳନୀତିକୁ ସମ୍ବିଧାନର ଅନ୍ତର୍ଭୁକ୍ତ କରି ଏକ ଗ୍ରାମକୁ ଏକ ଏକକ ଭାବରେ ନନେଇ ଜଣେ ବ୍ୟକ୍ତିକୁ ଏକ ଏକକ ଭାବରେ ଗ୍ରହଣ କରିବା, 'ଏକ ବ୍ୟକ୍ତି, ଏକ ଭୋଟ' ଆଦର୍ଶକୁ ପ୍ରାପ୍ତ ହେବା ପାଇଁ ଅସ୍ପୃଶ୍ୟତା ଓ ବେଠି ବେଗାରିକୁ ଲୋପ କରିବା, ସମସ୍ତ ମଣିଷମାନଙ୍କୁ ଆଇନ୍ ସାମନାରେ ସମାନ ବିବେଚନା କରିବା, ପ୍ରତ୍ୟେକ ନାଗରିକ ପାଇଁ ସମାନ ସୁରକ୍ଷା ନିଶ୍ଚିତ କରିବା ଏବଂ ବୃତ୍ତିଗତ ସ୍ୱାଧୀନତା ଓ ସମାନ ସୁବିଧା ସୁଯୋଗ ପ୍ରଦାନ କରିବା, ଯାହା ଠିକ୍ ତାକୁ ବାସ୍ତବତାରେ ପରିଣତ କରିବା ପାଇଁ ସାମ୍ବିଧାନିକ ପ୍ରତିକାରର ବ୍ୟବସ୍ଥା କରିବା ।

ଭାରତୀୟ ଗଣତନ୍ତ୍ରକୁ ଡକ୍ଟର ଆମ୍ବେଦକରଙ୍କ ଅବଦାନ ଅବିସ୍ମରଣୀୟ । ସମ୍ବିଧାନ ପ୍ରଣୟନ କମିଟିର ଚେୟାରମ୍ୟାନ୍ ଭାବରେ ସେ ଆମ ଦେଶର ସମ୍ବିଧାନକୁ ଏକ ଆଦର୍ଶ ରୂପ ଦେଇଥିଲେ । ସମ୍ବିଧାନ ପ୍ରଣୟନ ସଭା (Constituent Assembly)ର ଜଣେ ସଭ୍ୟ ଟି.ଟି. କ୍ରିଷ୍ଣମାଚାରୀଙ୍କ ମତରେ– ("...It happened ultimately that the burden of drafting this constitution fell on Dr. Ambedkar and I have no doubt that we are grateful to him for having achieved this task in a manner which is undoubtedly commendable".)ଗ୍ରାନ୍‌ଭିଲ୍ ଅଷ୍ଟିନ୍ ଆମ୍ବେଦକରଙ୍କ ଦ୍ୱାରା ରଚିତ ଭାରତୀୟ ସମ୍ବିଧାନକୁ ବର୍ଣ୍ଣନା କରିଛନ୍ତି ଏହିଭଳି ଭାବରେ । ତାଙ୍କ ମତରେ ଏହା ହେଉଛି ("...First and foremost a social document. The majority of Indians constitutional provisions are either directly arrived at furthering the aim of social revolution or attempt to foster this revolution by establishing conditions necessary for its achievement".)

ଆମ୍ବେଦକରଙ୍କ ଦ୍ୱାରା ପ୍ରଣୀତ ସମ୍ବିଧାନ ଭାରତକୁ ଏକ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିଛି । ଏହା ସାବାଳକ ମତାଧିକାରକୁ ସ୍ୱୀକୃତି ଦେଇଛି । ଆମ୍ବେଦକର କେବଳ ଜଣେ ଯୁଗପୁରୁଷ ଓ ସମ୍ବିଧାନ ପ୍ରଣେତା ନଥିଲେ, ସେ ମଧ୍ୟ ଥିଲେ ଭାରତୀୟ ସମାଜରେ ସାମାଜିକ ନ୍ୟାୟର ସ୍ରଷ୍ଟା ଓ ପତିତମାନଙ୍କର ଉନ୍ନତିର ରେଣୁ । ଏଥିପାଇଁ ତାଙ୍କ ନାମ ଭାରତ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ମହାତ୍ମା ଗାନ୍ଧୀ ଭାରତୀୟ ଜନତାକୁ ଦେଇଥିଲେ ସଦାଚାର ଓ ନୈତିକତା ଶିକ୍ଷା । ବାବାସାହେବ ଏକ ଶୋଷଣ ବିହୀନ, ପ୍ରକୃତ ଗଣତାନ୍ତ୍ରିକ ଓ ଜାତିବିହୀନ ସମାଜ କଥା କହିଲେ । ଦରିଦ୍ର, ଶୋଷିତ, ଅସ୍ପୃଶ୍ୟ ଜାତି ଓ ଅତ୍ୟାଚାରିତ ଶ୍ରେଣୀଗୁଡ଼ିକର ଉନ୍ନତି ପାଇଁ ତାଙ୍କର ସମଗ୍ର ଜୀବନ ଅତିବାହିତ କଲେ । ସମାଜରୁ କୁସଂସ୍କାର ଦୂର କରିବା ପାଇଁ ତାଙ୍କ ପ୍ରଚେଷ୍ଟା ଥିଲା ଉଲ୍ଲେଖନୀୟ । ସେ ଥିଲେ ଭାରତୀୟ ଦଳିତମାନଙ୍କର ତ୍ରାଣକର୍ତ୍ତା । ଏହି ବିପ୍ଳବୀ, ସାମାଜିକ ଅନ୍ୟାୟ, ଅସ୍ପୃଶ୍ୟତା ଓ ଜାତିପ୍ରଥା ବିରୋଧରେ ଲଢ଼ିଥିଲେ । ତାଙ୍କ ଯୋଗୁଁ ଦଳିତ ଓ ଅନ୍ୟ ସାମାଜିକ ଦୃଷ୍ଟିକୋଣରୁ ଅନଗ୍ରସର ଶ୍ରେଣୀଗୁଡ଼ିକର ଅଧିକାର ସଂରକ୍ଷିତ ହୋଇ ରହିଛି ।

ସମ୍ବିଧାନ ରଚନାରେ ତାଙ୍କର ସେବା ପାଇଁ ଭାରତର ପ୍ରଥମ ରାଷ୍ଟ୍ରପତି ଡଃ.ରାଜେନ୍ଦ୍ର ପ୍ରସାଦ ଆମ୍ବେଦକରଙ୍କୁ ପ୍ରଶଂସା କରି କହିଥିଲେ : ("We never did a better thing than having Dr. Ambedkar on the Drafting Committee and selecting him as its Chairman".) ୧୯୫୨ ମସିହା ଜୁନ୍ ୫ ତାରିଖରେ ଏକ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବରେ ଆମ୍ବେଦକରଙ୍କୁ LL.D ଡିଗ୍ରୀ (Honoris Causa) ପ୍ରଦାନ କରିଥିଲେ । କଲମ୍ବିଆ ବିଶ୍ୱବିଦ୍ୟାଳୟ ସମ୍ବିଧାନ ପ୍ରଣୟନରେ ତାଙ୍କ କାର୍ଯ୍ୟକୁ ସ୍ୱୀକୃତି ଦେଇ ବିଶ୍ୱବିଦ୍ୟାଳୟର ସାଇଟେସନ୍ (Citation)ରେ କୁହାଯାଇଥିଲା ଯେ ସେ ହେଉଛନ୍ତି, "One of India's leading citizens, a great social reformer" ଏବଂ "Valiant upholder of human rights".

ଆମ୍ବେଦକର ଅସ୍ପୃଶ୍ୟତା ବିରୁଦ୍ଧରେ ଲଢ଼ିଥିଲେ, ଦଳିତମାନଙ୍କ ଉନ୍ନତି ପାଇଁ କାର୍ଯ୍ୟ କରିଥିଲେ ଏବଂ ଦେଶର ସମ୍ବିଧାନ ରଚନାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅବଶ୍ୟ ଏକା ଏକା ସେ ସମ୍ବିଧାନକୁ ଲେଖିନଥିଲେ । ଅନ୍ୟମାନଙ୍କର ଭୂମିକାକୁ ଆମେ ଉପେକ୍ଷା କରି ପାରିବା ନାହିଁ, ବିଶେଷତଃ ଡଃ.ରାଜେନ୍ଦ୍ର ପ୍ରସାଦଙ୍କ ଭୂମିକାକୁ । ଡଃ.ରାଜେନ୍ଦ୍ର ପ୍ରସାଦ ଥିଲେ ସମ୍ବିଧାନ ପ୍ରଣୟନ ସଭାର ସଭାପତି ଓ ପ୍ରାଣ–ପ୍ରତିଷ୍ଠାତା ଏବଂ ଦଳର କ୍ୟାପ୍‌ଟେନ୍ । ସମ୍ବିଧାନ ପ୍ରଣୟନ ବେଳେ ଯାହାସବୁ ଆପତ୍ତି ଉଠିଥିଲା ବା ପ୍ରତିକୂଳଯୁକ୍ତି କରାଯାଇଥିଲା, ଆମ୍ବେଦକର ଏକାକୀ ସମ୍ବିଧାନ ପ୍ରଣୟନ ସଭାରେ ଏବଂ ପାର୍ଲିଆମେଣ୍ଟରେ ସେ ସବୁର ଉତ୍ତର ଦେଇଥିଲେ । ସେଥିପାଇଁ କେତେକ ରାଜନୈତିକ ସମୀକ୍ଷକ ତାଙ୍କୁ ଭାରତୀୟ ସମ୍ବିଧାନର ଜନକ ବୋଲି କହିଥାଆନ୍ତି ।

୧୦୨, ମେଟ୍ରୋ ଆଶ୍ରୟ, ବ୍ଲକ୍–ଏ
ସେଲ୍‌ଟର୍ ଛକ, କଟକ–୭୫୩୦୦୮

# ପାଶ୍ଚାତ୍ୟ ଜଗତରେ ସ୍ୱାମୀ ବିବେକାନନ୍ଦ

ସୌରୀବଂଧୁ କର

ସ୍ୱାମୀ ବିବେକାନନ୍ଦ ଧର୍ମ ମହାସଭାରେ ଯୋଗଦେବା ଉଦ୍ଦେଶ୍ୟରେ ଆମେରିକାର ଚିକାଗୋ ମହାନଗରୀଠାରେ ଉପସ୍ଥିତ ହେଲେ । ସମୁଦ୍ରତୁଲ୍ୟ ମିଚିଗନ୍ ହ୍ରଦ କୂଳରେ ଚିକାଗୋ ସହରରେ ବିଶ୍ୱମେଳା ପାଇଁ ସମାଗମ ଥିଲା ବ୍ୟାପକ । କିନ୍ତୁ ସମସ୍ତେ ଥିଲେ ତାଙ୍କ ପାଇଁ ଅପରିଚିତ । ଅଜଣା ସହରରେ ଅପରିଚିତ ଲୋକର ଅବସ୍ଥା ଯାହା ହୁଏ, ତାହା ହିଁ ଘଟିଲା ସ୍ୱାମୀଜୀଙ୍କ କ୍ଷେତ୍ରରେ । ସେ ଅଗତ୍ୟା ଏକ ହୋଟେଲରେ ଆଶ୍ରୟ ଗ୍ରହଣ କଲେ । ପ୍ରଥମେ ସେ ଚିକାଗୋରେ ବାରଦିନ ଅବସ୍ଥାନ କରିଥିଲେ । ସେ ମେଳା ବୁଲି ଦେଖିବା ବେଳେ ଅତ୍ୟନ୍ତ ଚମତ୍କୃତ ହେଲେ ଯେ, ମନୁଷ୍ୟର ପ୍ରଗାଢ଼ ଉଦ୍ୟମ ଏବଂ କଳ୍ପନା ଶକ୍ତିର ପରିପ୍ରକାଶ ଥିଲା ଏହି ମେଳା । ଏହା ଦେଖାଯାଇଛି ଯେ ଯେଉଁମାନେ ସଫଳତାର ଶୀର୍ଷରେ ପହଞ୍ଚିଛନ୍ତି, ସେମାନଙ୍କୁ ସଂକଟ ମଧ୍ୟଦେଇ ଯିବାକୁ ହୋଇଥାଏ । ସେ ଧର୍ମସଭା ସମ୍ପର୍କରେ ଜାଣିବା ପାଇଁ ମେଳା ସ୍ଥାନକୁ ଗଲେ । ସେଠାରେ ସୂଚନା କେନ୍ଦ୍ରରେ ପଚାରିବା ପରେ ଜଣାପଡ଼ିଲା ଯେ ଧର୍ମ ମହାସଭାର ଅଧିବେଶନ ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହ ପୂର୍ବରୁ ହେଉନାହିଁ । ପୁନଶ୍ଚ ସେ ଜାଣିବାକୁ ପାଇଲେ ଯେ ଉପଯୁକ୍ତ ପ୍ରମାଣପତ୍ର ନଥିଲେ କାହାରିକୁ ଧର୍ମ ମହାସଭାରେ ପ୍ରତିନିଧି ଭାବରେ ଗ୍ରହଣ କରାଯିବ ନାହିଁ । ସ୍ୱାମୀଜୀ ତାଙ୍କୁ ପଠାଇଥିବା ତାଙ୍କର ଭକ୍ତମାନଙ୍କର ଏହା ଥିଲା ଧାରଣାର ବାହାରେ । ଏ ସମ୍ପର୍କରେ ଭଗିନୀ ନିବେଦିତା ଲେଖିଛନ୍ତି, ''ସେହି ଲୋକମାନ (ଭକ୍ତମାନେ)ଙ୍କର ଅସୀମ ଶ୍ରଦ୍ଧା ହେତୁ ସେମାନଙ୍କ ମନରେ କେବେହେଲେ ଏ ଚିନ୍ତା ପ୍ରବେଶ କରି ନଥିଲା ଯେ ମନୁଷ୍ୟ ଜାତି ପାଇଁ ଯାହା ଅସମ୍ଭବ, ତାହା ସମ୍ଭବ ହୋଇପାରିବ । ସେମାନେ ଭାବିଥିଲେ ବିବେକାନନ୍ଦ କେବଳ ସେଠାରେ ପହଞ୍ଚିଗଲେ ତାଙ୍କୁ ସମସ୍ତ ସୁଯୋଗ ମିଳିଯିବ । ତାଙ୍କର ଶିଷ୍ୟମାନଙ୍କ ପରି ସ୍ୱାମୀଜୀ ମଧ୍ୟ ସଂସାରର ଯାବତୀୟ ନୀତି ନିୟମ ସମ୍ପର୍କରେ ଥିଲେ ଅଜ୍ଞ । ସେ ଯେତେବେଳେ ଭାବିନେଲେ ଯେ ଏହି କାର୍ଯ୍ୟ ପାଇଁ ଈଶ୍ୱରଙ୍କ ଦ୍ୱାରା ସେ ଅଭିପ୍ରେରିତ, ସେତେବେଳେ ତାଙ୍କ ମାର୍ଗରେ କୌଣସି ବାଧା ବା ପ୍ରତିବନ୍ଧକ ନାହିଁ । ହିନ୍ଦୁ ଧର୍ମର ପ୍ରତିନିଧି ଭାବରେ ଆସି ଯେତେବେଳେ ସେ ବିଶ୍ୱର ଶକ୍ତି ଓ ଐଶ୍ୱର୍ଯ୍ୟର ଗନ୍ତାଘରର ଦ୍ୱାର ନିକଟରେ ଉପସ୍ଥିତ ହେଲେ, ସେତେବେଳେ ତାଙ୍କ ନିକଟରେ କୌଣସି ପରିଚୟ ପତ୍ର ନ ଥିଲା କିମ୍ବା କେହି ସେସମ୍ପର୍କରେ ତାଙ୍କୁ କହିଥିଲା । ସେ ସମୟର ହିନ୍ଦୁ ସମାଜର ସଂଗଠନହୀନତାର ଏହା ଥିଲା ପ୍ରକୃଷ୍ଟ ପ୍ରମାଣ ।''

ସେତେବେଳକୁ ତାଙ୍କ ନିକଟରେ ଥିବା ଅର୍ଥ ଖର୍ଚ୍ଚ ହେବାକୁ ଲାଗିଥାଏ । ଆର୍ଥିକ ସଂକଟ ଏବଂ ଧର୍ମ ମହାସଭାରେ ପ୍ରତିନିଧି ଭାବରେ ଯୋଗଦେବା ନେଇ ସଂଶୟ ହେତୁ ଚିନ୍ତିତ ସ୍ୱାମୀଜୀ ୨ ଅଗଷ୍ଟ ୧୮୯୩ରେ ଆଲସିଙ୍ଗା ପେରୁମଲଙ୍କ ନିକଟକୁ ଗୋଟିଏ ଚିଠି ଲେଖିଥିଲେ । ସେ ସେଥିରେ ଲେଖିଥିଲେ, ''ଏଠାରେ ଦୈନିକ ହେଉଥିବା ଖର୍ଚ୍ଚ ମୋ ପାଇଁ ଅତ୍ୟଧିକ । ତୁମର ମନେଥିବ ତୁମେ ମୋତେ ୧୭୦ ପାଉଣ୍ଡର ନୋଟ୍ ଏବଂ ୯ ପାଉଣ୍ଡ ନଗଦ ଦେଇଥିଲ । ବର୍ତ୍ତମାନ ମାତ୍ର

୧୩୦ ପାଉଣ୍ଡ ଅଛି । ପ୍ରତିଦିନ ଅତିକମ୍‌ରେ ଗୋଟିଏ ପାଉଣ୍ଡ ଖର୍ଚ୍ଚ ହେଉଛି । ଏଠାରେ ଗୋଟିଏ ସିଗାରେଟ୍‌ର ଦାମ୍ ଆମର ସେଠାକାର ଆଠଅଣା ସହିତ ସମାନ । ଆମେରିକା ଲୋକମାନେ ଏତେ ଧନୀ ଯେ ସେମାନେ ପାଣିପରି ପଇସାକୁ ଖର୍ଚ୍ଚ କରୁଛନ୍ତିଏବଂ ଆଇନ୍ କରି ସବୁ ପଦାର୍ଥର ଦରଦାମ ଏତେ ଅଧିକ ରଖିଛନ୍ତି ଯେ, ଦୁନିଆର କୌଣସି ରାଷ୍ଟ୍ର କୌଣସି ଭାବରେ ମଧ ତାଙ୍କ ସ୍ଥାନରେ ପହଞ୍ଚି ପାରିବ ନାହିଁ । ...ଏଠାକୁ ଆସିବା ପୂର୍ବରୁ ମୁଁ ଯେଉଁ ସୁନେଲୀ ସ୍ୱପ୍ନ ଦେଖୁଥିଲି, ବର୍ତ୍ତମାନ ତାହା ସମ୍ପୂର୍ଣ୍ଣ ଧୂଳିସାତ୍ ହୋଇଛି । ଏଠାରେ ମୋତେ ଅତ୍ୟନ୍ତ ବିଷମ ପରିସ୍ଥିତି ମଧରେ ଯୁଦ୍ଧ କରିବାକୁ ହେଉଛି । ଶହ ଶହ ଥର ଇଚ୍ଛା ହେଲାଣି ଯେ ଏ ଦେଶରୁ ଫେରିଯିବି । କିନ୍ତୁ ମୁଁ ଦୃଢ଼ ସଂକଳ୍ପ ଏବଂ ମୋତେ ଈଶ୍ୱରଙ୍କର ଆଦେଶ ପ୍ରାପ୍ତ ହୋଇଛି । ମୋତେ ରାସ୍ତା ଦେଖାଯାଉ ନାହିଁ ତ ଠିକ୍ ଅଛି, କିନ୍ତୁ ତାଙ୍କ (ଈଶ୍ୱରଙ୍କ) ଚକ୍ଷୁ ତ ସବୁ କିଛି ଦେଖୁଛି । ମୁଁ ମରେ ବା ବଞ୍ଚିକି ରୁହେ, ମୋର ଉଦ୍ଦେଶ୍ୟ ପ୍ରତି ଅଟଳ ରହିବି ।''

ଚିକାଗୋ ସହରରେ ଖର୍ଚ୍ଚ ଅତ୍ୟଧିକ ଦେଖି, ସେ ବୋଷ୍ଟନ୍ ଯିବାକୁ ସ୍ଥିର କଲେ । ଶ୍ରୀଯୁକ୍ତ ଲାଲୁ ଭାଇ ତାଙ୍କ ସହିତ ବୋଷ୍ଟନ ପର୍ଯ୍ୟନ୍ତ ଯାତ୍ରା କରିଥିଲେ ଏବଂ ତାଙ୍କର ପରିଚୟ ମିସ୍ କ୍ୟାଥରିନ୍ ଏବର୍ଟ ସାନବର୍ଣ୍ଣଙ୍କ ସହିତ ହୋଇଥିଲା । ମିସ୍ କ୍ୟାଥରିନ୍ ମାସାଚୁସେଟସ୍ ପ୍ରଦେଶର ବ୍ରିଜମେଡ଼ୋଜ୍ କୃଷିକ୍ଷେତ୍ରର ମାଲିକାଣୀ ଥିଲେ । ତାଙ୍କ ସହିତ ସାକ୍ଷାତ ସମ୍ପର୍କରେ ସ୍ୱାମୀଜୀ ଲେଖିଥିଲେ, 'ବର୍ତ୍ତମାନ ମୁଁ ବୋଷ୍ଟନ ନିକଟସ୍ଥ ଗୋଟିଏ ଗ୍ରାମରେ ଜଣେ ବୃଦ୍ଧ ମହିଳାଙ୍କ ଅତିଥି । ତାଙ୍କ ସହିତ ରେଳଗାଡ଼ିରେ ଅଚାନକ ଭେଟ ହେଲା । ସେ ମୋତେ ତାଙ୍କ ଘରେ ଆସି ରହିବାକୁ ନିମନ୍ତ୍ରଣ କଲେ । ସେଠାରେ ରହିବା ପରେ ମୋର ଏତିକି ସୁବିଧା ହେଲା ଯେ, ପ୍ରତ୍ୟେକ ଦିନ ମୋର ଖର୍ଚ୍ଚ ହେଉଥିବା ୧ ପାଉଣ୍ଡ ବଞ୍ଚିଗଲା ଏବଂ ତାଙ୍କର ଲାଭ ହେଲା ଯେ ସେ ତାଙ୍କର ବନ୍ଧୁମାନଙ୍କୁ ଡାକି ଭାରତରୁ ଆସିଥିବା ଏକ ବିଚିତ୍ର ଜନ୍ତୁକୁ ଦେଖାଇଲେ ।'

ଯଦିଓ ସ୍ୱାମୀଜୀ ତାଙ୍କୁ ବୃଦ୍ଧା ବୋଲି ଉଲ୍ଲେଖ କରିଛନ୍ତି ମାତ୍ର ମିସ୍ ସାନବର୍ଣ୍ଣ ଥିଲେ ପ୍ରୌଢ଼ା ଏବଂ ସମାଜରେ ଜଣେ ବକ୍ତା ଓ ଲେଖିକା ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ତାଙ୍କ ସାହାଯ୍ୟରେ ସ୍ୱାମୀଜୀ ଆମେରିକାର ଶିକ୍ଷିତ ଓ ପ୍ରତିଷ୍ଠିତ ସମାଜ ମଧରେ ପ୍ରବେଶ କଲେ । ତାଙ୍କ ସାହାଯ୍ୟରେ ସେ ପ୍ରଫେସର ଡକ୍ଟର ରାଇଟ୍‌ଙ୍କ ସହିତ ପରିଚିତ ହେଲେ, ଯାହାଫଳରେ ସେ ଧର୍ମ ମହାସଭାରେ ପ୍ରତିନିଧି ଭାବରେ ଯୋଗ ଦେବାର ସୁଯୋଗ ଲାଭ କଲେ । ସ୍ୱାମୀଜୀ ତାଙ୍କ ସହିତ ଯାଇ ବୋଷ୍ଟନ ମହିଳା କ୍ଲବ ଓ ଅନ୍ୟସ୍ଥାନରେ ଭାଷଣ ଦେଇଥିଲେ । ସ୍ୱାମୀଜୀଙ୍କ ସମ୍ପର୍କରେ 'ବୋଷ୍ଟନ ଇଭିନିଂ ଟ୍ରାନ୍ସକ୍ରିପ୍ଟ' ୨୦ ଅଗଷ୍ଟ ସଂଖ୍ୟାରେ ଲେଖିଥିଲା, ଭାରତରୁ ଆସିଥିବା ବ୍ରାହ୍ମଣ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦ ଆସନ୍ତା ମାସ ଚିକାଗୋରେ ହେବାକୁ ଥିବା ଧର୍ମ ମହାସଭାରେ ଯୋଗ ଦେବା ପାଇଁ ଏ ଦେଶକୁ ଆସିଛନ୍ତି, ଗତକାଲି ସେ କାଂକର୍ଡ଼ର ଶ୍ରୀଯୁକ୍ତ ଏଫ୍.ବି. ସେନ୍‌ବର୍ଣ୍ଣଙ୍କ ସହିତ ବୋଷ୍ଟନକୁ ଆସିଥିଲେ ।

ଶ୍ରୀଯୁକ୍ତ ଫ୍ରେଙ୍କାଲିନ ବେଞ୍ଜାମିନ୍ ସେନବର୍ଣ୍ଣ ମିସ୍ କେଟେ ସେନବର୍ଣ୍ଣଙ୍କର ମାଉସୀପୁଅ ଭାଇ ଥିଲେ । ପ୍ରଥମେ ସେ ଏହି ହିନ୍ଦୁ ସନ୍ନ୍ୟାସୀଙ୍କୁ ଅବିଶ୍ୱାସ ଦୃଷ୍ଟିରେ ଦେଖିଲେ ମାତ୍ର ବ୍ରିଜ୍ ମେଡ଼ୋଜରେ କଥାବାର୍ତ୍ତା କରିବା ପରେ ତାଙ୍କର ପରିବର୍ତ୍ତନ ହେଲା । ଶ୍ରୀଯୁକ୍ତ ସେନବର୍ଣ୍ଣ ସାମ୍ବାଦିକ, ଲେଖକ ଓ ପରୋପକାରୀ ଥିଲେ ଏବଂ ମହତ୍ ଉଦ୍ଦେଶ୍ୟରେ ସ୍ଥାପିତ ସଭା ସମିତିର ପୃଷ୍ଠପୋଷକ ଥିଲେ । ସେ ବିଭିନ୍ନ କାରଣରୁ ବୋଷ୍ଟନ ସମାଜର ବିଶେଷ ସମ୍ମାନିତ ବ୍ୟକ୍ତି ଥିଲେ ।

୨୦ ଅଗଷ୍ଟ ଚିଠିରେ ସ୍ୱାମୀଜୀ ଏହା ମଧ ଉଲ୍ଲେଖ କରିଥିଲେ, 'ମନେରଖ, ଏହା ଖ୍ରୀଷ୍ଟିୟାନ୍ ରାଷ୍ଟ୍ର ଏବଂ ଏଠାରେ ଅନ୍ୟକୌଣସି ଧର୍ମ ବା ମତର ପ୍ରଭାବର କୌଣସି ମୂଲ୍ୟ ନାହିଁ । ସଂସାରର କୌଣସି ମତବାଦ ପ୍ରତି ମୋର ସାମାନ୍ୟ ମାତ୍ର ଭୟ ନାହିଁ । ଏଠାରେ ମୁଁ ମେରୀଙ୍କର ପୁତ୍ର (ଯୀଶୁ)ଙ୍କ ସନ୍ତାନଙ୍କ ଗହଣରେ ବାସ କରୁଅଛି । ପ୍ରଭୁ ଯୀଶୁ ମୋର ସହାୟତା କରିବେ । ଆଉ ଗୋଟିଏ କଥା, 'ଏହି ଲୋକମାନେ ମୋର ହିନ୍ଦୁ ଧର୍ମ ସମ୍ବନ୍ଧୀୟ

ଉଦାର ମତ ଏବଂ ନାଜରଥ ଅବତାରଙ୍କ ପ୍ରତି ପ୍ରେମ ଦେଖି ବହୁତ ଆକୃଷ୍ଟ ହେଉଛନ୍ତି । ମୁଁ ସେମାନଙ୍କୁ କହୁଛି ଏହି ମହାପୁରୁଷଙ୍କ ବିରୁଦ୍ଧରେ ମୋର କିଛି କହିବାର ନାହିଁ, କେବଳ ଏତିକି ମାତ୍ର ଯେ ଯେପରି ଆପଣମାନେ ଯୀଶୁଙ୍କୁ ମାନୁଛନ୍ତି, ତା' ସହିତ ସେହିପରି ଭାବରେ ଭାରତୀୟ ମହାପୁରୁଷଙ୍କୁ ମାନିବା ଦରକାର । ଏକଥା ସେମାନେ ଅତ୍ୟନ୍ତ ଆଗ୍ରହର ସହିତ ଶୁଣୁଛନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ମୋର କାର୍ଯ୍ୟ କେବଳ ଏତିକି ମାତ୍ର ହୋଇଛି ଯେ ଲୋକମାନେ ମୋ ବିଷୟରେ କିଛି ଜାଣିଲେଣି ଏବଂ ଆଲୋଚନା କଲେଣି । ଏଠାରେ ଏହିପରି ଭାବରେ କାର୍ଯ୍ୟ ଆରମ୍ଭ କରିବାକୁ ହେବ ।'

'ଗତକାଲି ମହିଳା ବନ୍ଦୀଶାଳାର ଅଧ୍ୟକ୍ଷା ଶ୍ରୀମତୀ ଜନ୍‌ସନ୍ ଏଠାକୁ ଆସିଥିଲେ । ଏଠାରେ ଏହା ବନ୍ଦୀଶାଳା ନୁହେଁ ସୁଧାରଗୃହ କହନ୍ତି । ଆମେରିକାରେ ମୁଁ ଯେଉଁ ଅଦ୍ଭୁତ ପଦାର୍ଥ ଦେଖିଥିଲି, ତାହା ମଧ୍ୟରେ ଏହା ହେଉଛି ଗୋଟିଏ ଆଶ୍ଚର୍ଯ୍ୟଜନକ ବସ୍ତୁ । ବନ୍ଦୀମାନଙ୍କ ସହିତ କିପରି ସହୃଦୟତାର ସହିତ ବ୍ୟବହାର କରାଯାଏ, କିପରି ସେମାନଙ୍କର ଚରିତ୍ରରେ ସଂଶୋଧନ ଅଣାଯାଏ ଏବଂ ସେମାନେ ଜେଲରୁ ମୁକୁଳି ସମାଜରେ ଉପଯୁକ୍ତ ବ୍ୟକ୍ତି ଭାବରେ ଗଣା ହୁଅନ୍ତି, ଏହା ସବୁ ଅତ୍ୟନ୍ତ ଅଦ୍ଭୁତ । କେତେ ସୁନ୍ଦର ! ...ଏସବୁ ଦେଖିକରି ଯେତେବେଳେ ମୁଁ ନିଜ ଦେଶକଥା ଚିନ୍ତା କଲି, ମୋର ହୃଦୟ ବ୍ୟତିବ୍ୟସ୍ତ ହୋଇଉଠିଲା । ଭାରତବର୍ଷରେ ଦରିଦ୍ର, ପତିତ ଏବଂ ସାଧାରଣ ଲୋକମାନଙ୍କ ସମ୍ପର୍କରେ କ'ଣ ଆମ୍ଭେମାନେ ଚିନ୍ତା କରୁଛେ ? ସେଥିପାଇଁ କୌଣସି ସମୟ ନାହିଁ କିମ୍ବା ଚିନ୍ତା କରିବାର କୌଣସି ଅବକାଶ କିମ୍ବା ଉନ୍ନତି କରିବାର କୌଣସି ଉପାୟ । ଭାରତର ଦରିଦ୍ର, ପତିତ ଏବଂ ପାପୀମାନଙ୍କର କେହି ସାଥୀ ନାହାନ୍ତି, କୌଣସି ସହାୟକ ନାହାନ୍ତି । ସେମାନେ ଦିନକୁ ଦିନ ଅଧିକ ତଳକୁ ଯାଉଛନ୍ତି । ନିଷ୍ଠୁର ସମାଜ ତାଙ୍କ ଉପରେ ଯେଉଁ ପ୍ରହାର କରୁଛି, ତା'ର ଅନୁଭବ ତ ସେମାନଙ୍କର ବହୁତ ହେଉଛି କିନ୍ତୁ ସେମାନେ ଜାଣିପାରୁ ନାହାନ୍ତି ଏହି ପ୍ରହାର କେଉଁଠାରୁ ଆସୁଛି । ସେମାନେ ଭୁଲିଗଲେଣି ଯେ ସେମାନେ ମନୁଷ୍ୟ ଅଟନ୍ତି । ଏହାର ଫଳ ହେଉଛି ଗୋଲାମି ଓ ପଶୁତ୍ୱ । ଚିନ୍ତାଶୀଳ ଲୋକମାନେ ଗତ କେତେବର୍ଷ ଧରି ସମାଜର ଏହି ଦୁର୍ଦ୍ଦଶାକୁ ବୁଝୁଛନ୍ତି, ମାତ୍ର ଦୁର୍ଭାଗ୍ୟବଶତଃ ସେମାନେ ଏହାର ଦୋଷ ହିନ୍ଦୁଧର୍ମ ଉପରେ ଲଦି ଦେଉଛନ୍ତି । ସେମାନେ ଭାବୁଛନ୍ତି ଯେ ବିଶ୍ୱର ସର୍ବଶ୍ରେଷ୍ଠ ଏହି ଧର୍ମ ଶେଷ ହୋଇଯିବା ହିଁ ସମାଜ ଉନ୍ନତିର ଏକମାତ୍ର ଉପାୟ । ବନ୍ଧୁ ଶୁଣ, ପ୍ରଭୁଙ୍କ କୃପା ହେତୁ ମୋତେ ଏହାର ରହସ୍ୟ ଜଣାପଡ଼ିଛି । ଦୋଷ ଧର୍ମରେ ନାହିଁ । ଅପରନ୍ତୁ ତୁମର ଧର୍ମ ତୁମକୁ ଶିଖାଉଛି ଯେ ସଂସାରର ସମସ୍ତ ପ୍ରାଣୀ ତୁମର ଆତ୍ମାର ବିଭିନ୍ନ ରୂପ ଅଟନ୍ତି । ସମାଜର ଏପରି ଦୁଷ୍ଟ ଅବସ୍ଥାର ଏକମାତ୍ର କାରଣ, ଏହି ତତ୍ତ୍ୱ କୁ ବ୍ୟାବହାରିକ ଆଚରଣରେ ନ ଆଣିବା – ସହାନୁଭୂତିହୀନତା ଓ ହୃଦୟହୀନତା । ...ସମାଜର ଏ ଅବସ୍ଥାକୁ ଦୂର କରିବାକୁ ହେବ କିନ୍ତୁ ଧର୍ମକୁ ବିନାଶ କରି ନୁହେଁ, ବରଂ ହିନ୍ଦୁଧର୍ମର ମହାନ୍ ଉପଦେଶକୁ ଅନୁସରଣ କରି ଏବଂ ଏହା ସହିତ ହିନ୍ଦୁଧର୍ମର ସ୍ୱାଭାବିକ ବିକାଶ ପାଇଁ ବୌଦ୍ଧଧର୍ମର ଅପୂର୍ବ ସହୃଦୟତାକୁ ଗ୍ରହଣ କରି .....ପୃଥିବୀରେ ଏପରି କୌଣସି ଧର୍ମ ନାହିଁ, ଯାହା ହିନ୍ଦୁ ଧର୍ମ ପରି ଏତେ ଉଚ୍ଚକଣ୍ଠରେ ମାନବାତ୍ମାର ମହିମାକୁ ଘୋଷଣା କରିଛି ଏବଂ ପୃଥିବୀରେ ଏପରି କୌଣସି ଧର୍ମ ନାହିଁ, ଯାହା ହିନ୍ଦୁ ଧର୍ମରେ ଗରିବ ଓ ନିମ୍ନ ଜାତିଙ୍କର ସ୍ୱରକୁ ନିଷ୍ଠୁର ଭାବରେ ଦବାଇ ଚାଲିଛି । ଈଶ୍ୱର ମୋତେ ଦେଖାଇ ଦେଇଛନ୍ତି ଯେ ଏଥିରେ ଧର୍ମର କୌଣସି ଦୋଷ ନାହିଁ ବରଂ ଦୋଷ ସେଇମାନଙ୍କର ଯେଉଁମାନେ ହିନ୍ଦୁଧର୍ମର ଅନ୍ତର୍ଭୁକ୍ତ ହୋଇ ମଧ୍ୟ ଅହଂକାରୀ ଓ ଛଳନାକାରୀ ଅଟନ୍ତି, ଯେଉଁମାନେ ପରମାର୍ଥିକ ଏବଂ ବ୍ୟାବହାରିକ ତତ୍ତ୍ୱ କୁ ନେଇ ଅନେକ ପ୍ରକାର ଅତ୍ୟାଚାର କରନ୍ତି ।'

ସ୍ୱାମୀଜୀଙ୍କର ଏ ବକ୍ତବ୍ୟରୁ ସ୍ପଷ୍ଟ ଯେ ସେ ପାଶ୍ଚାତ୍ୟ ଜଗତର ଧର୍ମ, ଦର୍ଶନ ଓ ରୀତିନୀତିର ସୂକ୍ଷ୍ମ ଅନୁଧ୍ୟାନ କରି ଭାରତବର୍ଷରେ ଦେଖା ଦେଇଥିବା ବ୍ୟାଧିର ଉପଶମ ପାଇଁ ଚିକିତ୍ସାର ବ୍ୟବସ୍ଥା କରିଥିଲେ । ଏହା ତାଙ୍କର ମୌଳିକ ବୈଶିଷ୍ଟ୍ୟ । ସେ ବିଚାର କରିଥିଲେ ସାମାଜିକ ଦୁର୍ନୀତି ଓ ଶୋଷଣ ଇତ୍ୟାଦି ପାଇଁ ଧର୍ମକୁ ଦାୟୀ କରିବା ସଠିକ୍

ନୁହେଁ, ବରଂ ଏଥିପାଇଁ ଉତ୍ତରଦାୟୀ କ୍ଷମତାରେ ଥିବା ଶାସକ ଓ ପୁରୋହିତ ବର୍ଗଙ୍କର ସ୍ୱାର୍ଥପରତା ।

ସ୍ୱାମୀଜୀ ଆଲସିଙ୍ଗା ପେରୁମଲଙ୍କୁ ପତ୍ରରେ ଅର୍ଥର ଅଭାବ ସୂଚିତ କରିବା ସହିତ ଅର୍ଥ ପଠାଇବା ପାଇଁ ଅନୁରୋଧ କରିଥିଲେ । ପତ୍ର ପାଇଁ ଆଲସିଙ୍ଗା ତିନିଶହ ଟଙ୍କା ଓ ଖେତଡ଼ି ମହାରାଜା ୫ ଶହ ଟଙ୍କା ପଠାଇଥିଲେ ।

ବୋଷ୍ଟନ୍‌ଠାରେ ଥିବା ସମୟରେ ସ୍ୱାମୀଜୀ ଅନେକଗୁଡ଼ିଏ ସଭାରେ ବକ୍ତୃତା ପ୍ରଦାନ କରି ନିଜର ଭବିଷ୍ୟତ ଯୋଜନାର ଭିତ୍ତି ଆରମ୍ଭ କଲେ । ପ୍ରଫେସର ରାଇଟ୍‌ଙ୍କ ସହିତ ତାଙ୍କର ପରିଚୟ ତାଙ୍କୁ ଚିକାଗୋ ଧର୍ମ ମହାସଭାରେ ଯୋଗଦାନ କରିବାର ମାର୍ଗକୁ ସଫଳ କରିଥିଲା । ପ୍ରଫେସର ରାଇଟ୍ କହିଥିଲେ, ଏହି ବିରାଟ ଜାତି ସହିତ ପରିଚିତ ହେବାର ଆପଣଙ୍କ ପାଇଁ ଏହା ଏକ ସୁଯୋଗ । ଆପଣଙ୍କୁ ପରିଚୟପତ୍ର ମାଗିବା ଅର୍ଥ ହେଉଛି ସୂର୍ଯ୍ୟଙ୍କୁ ତାଙ୍କର ଆଲୋକ ପ୍ରଦାନ କରିବାର ଅଧିକାର କିଏ ଦେଲା ବୋଲି ପ୍ରଶ୍ନ କରିବା ସହିତ ସମାନ ।'' ସେ ନିଜେ ପ୍ରତିନିଧି ସଭାର ସଚିବଙ୍କ ନାମରେ ଚିଠି ଲେଖିଲେ । ଚିଠିରେ ଲେଖା ଥିଲା, 'ଏ ହେଉଛନ୍ତି ଏପରି ଜଣେ ବିଦ୍ୱାନ୍, ଯାହାଙ୍କ ସହିତ ଆମର ସମସ୍ତ ପ୍ରଫେସର ଏକତ୍ର ହେଲେ ମଧ ସମାନ ହୋଇପାରିବେ ନାହିଁ ।

ସ୍ୱାମୀଜୀ ଚିକାଗୋ ଅଭିମୁଖେ ଯାତ୍ରା କଲେ । ଚିକାଗୋ ଷ୍ଟେସନରେ ଓହ୍ଲାଇବା ପରେ ଦେଖିଲେ ଅଧିବେଶନର ସମ୍ପାଦକ ଡକ୍ଟର ବରୋଜଙ୍କ ଠିକଣାଟି ହଜିଯାଇଛି । ରାତ୍ର ସମୟ, ଅଗତ୍ୟା ଅସହାୟ ଅବସ୍ଥାରେ ସ୍ୱାମୀଜୀ ଏକ ପରିତ୍ୟକ୍ତ ରେଳଡ଼ବା ମଧ୍ୟରେ ରାତିରେ ଆଶ୍ରୟ ଗ୍ରହଣ କଲେ । ତା' ପରଦିନ ସକାଳେ ନିଦ୍ରାଭଙ୍ଗ ହେବା ପରେ ସେ ସୁଶୋଭିତ ରାଜମାର୍ଗରେ ଚାଲିବାକୁ ଲାଗିଲେ । କ୍ଷୁଧାରେ ଜର୍ଜରିତ ସ୍ୱାମୀଜୀ ଅନ୍ନ ପାଇଁ ଓ ମହାସଭାର ସ୍ଥାନ ସମ୍ପର୍କରେ ଦ୍ୱାର ଦ୍ୱାର ଭିକ୍ଷୁକ ପରି ବୁଲିବାକୁ ଲାଗିଲେ । କିନ୍ତୁ ସବୁଠାରେ ପାଇଲେ ନିରାଶାର ସ୍ୱର, କର୍କଶ ଓ ରୁକ୍ଷ ବ୍ୟବହାର । କ୍ଲାନ୍ତ, ଶ୍ରାନ୍ତ ସ୍ୱାମୀଜୀ ରାସ୍ତା ପାର୍ଶ୍ୱରେ ବସିଗଲେ ଏବଂ ଈଶ୍ୱରଙ୍କ ନିର୍ଦ୍ଦେଶ ଉପରେ ସବୁକିଛି ଛାଡ଼ିଦେଲେ । ହଠାତ୍ ସମ୍ମୁଖ ଗୃହର ଦ୍ୱାର ଖୋଲିଗଲା ଏବଂ ଜଣେ ମହିଳା ସ୍ୱାମୀଜୀଙ୍କ ନିକଟକୁ ଆସି ଅତ୍ୟନ୍ତ ମୃଦୁ ସ୍ୱରରେ ପଚାରିଲେ, 'ମହାଶୟ, ଆପଣ କ'ଣ ଧର୍ମ ମହାସଭାର ପ୍ରତିନିଧି ?' ସ୍ୱାମୀଜୀ ତାଙ୍କ ସମ୍ମୁଖରେ ନିଜର ସମସ୍ତ ସମସ୍ୟାକୁ ବ୍ୟକ୍ତ କଲେ । ସେ ସ୍ୱାମୀଜୀଙ୍କୁ ନିଜ ଗୃହକୁ ନେଇଗଲେ ଏବଂ ତାଙ୍କ ରହିବାର ସମସ୍ତ ବନ୍ଦୋବସ୍ତ କରି କହିଲେ ଯେ ସେ ତାଙ୍କୁ ଧର୍ମସଭା ସ୍ଥାନକୁ ନେଇଯିବେ । ସେହି ମହିଳା ଥିଲେ ଶ୍ରୀଯୁକ୍ତ ଜର୍ଜ ଡବ୍ଲ୍ୟୁ ହେଲଙ୍କର ପତ୍ନୀ ଶ୍ରୀମତୀ ହେଲ୍, ଯାହାଙ୍କୁ ସ୍ୱାମୀଜୀ 'ଫାଦର ପୋପ', 'ମଦର ଚର୍ଚ୍ଚ' ବୋଲି ସମ୍ବୋଧନ କରୁଥିଲେ ଏବଂ ତାଙ୍କର ଦୁଇ କନ୍ୟା ଓ ଦୁଇ ଭାଣିଜୀ ସ୍ୱାମୀଜୀଙ୍କର ଭଉଣୀ ହୋଇଯାଇଥିଲେ ।

ସ୍ୱାମୀଜୀ ଶ୍ରୀମତୀ ହେଲ୍‌ଙ୍କ ସହିତ ମହାସଭାର କାର୍ଯ୍ୟାଳୟରେ ପହଞ୍ଚିଲେ ଏବଂ ପ୍ରଫେସର ରାଇଟ୍ ଦେଇଥିବା ପରିଚୟ ପତ୍ର ପ୍ରଦାନ କଲେ । ସେ ଧର୍ମ ମହାସଭାର ପ୍ରତିନିଧି ଭାବେ ସ୍ୱୀକୃତ ହେଲେ । ତାଙ୍କର ରହିବାର ବ୍ୟବସ୍ଥା ୨୬୨, ମିଚିଗନ ଆଭେନ୍ୟୁରେ ଥିବା ଶ୍ରୀଯୁକ୍ତ ଜେ.ବି. ଲ୍ୟୋନଙ୍କ ଗୃହରେ ହୋଇଥିଲା । ଶ୍ରୀଯୁକ୍ତ ଲ୍ୟୋନଙ୍କ ନାତୁଣୀ ଶ୍ରୀମତୀ କାନେଲିୟା କୋଙ୍ଗରଙ୍କ ସ୍ୱାମୀଜୀଙ୍କ ରହିବା ସମ୍ପର୍କରେ ନିମ୍ନମତେ ଉଲ୍ଲେଖ କରିଥିଲେ ।

''ମହାସଭାର ଅଧିବେଶନ ପାଇଁ ବିଭିନ୍ନ ସମ୍ପ୍ରଦାୟର ଯେଉଁମାନଙ୍କୁ ସଭ୍ୟ ଭାବେ ଗ୍ରହଣ କରାଯାଇଥିଲା, ସେମାନେ ପ୍ରତିନିଧିମାନଙ୍କୁ ନିଜ ନିଜ ଘରେ ଅତିଥି ଭାବରେ ରଖିବାକୁ ସହମତ ପ୍ରକାଶ କରିଥିଲେ । ମୋର ଅଜା ଧର୍ମାନ୍ଧତାକୁ ନାପସନ୍ଦ କରୁଥିଲେ ମଧ ଦର୍ଶନ ସମ୍ପର୍କରେ ଆଗ୍ରହ ରଖୁଥିଲେ । ତେଣୁ ମୋର ଆଈ ଏପରି ଜଣେ ପ୍ରତିନିଧିଙ୍କୁ ଅତିଥି ଭାବରେ ପାଇବାକୁ ଇଚ୍ଛା ପ୍ରକାଶ କରିଥିଲେ, ଯାହାଙ୍କର ଦୃଷ୍ଟିକୋଣ ଥିବ ଅତ୍ୟନ୍ତ ଉଦାର । ସେହି ସମୟରେ ଆମ ଘରେ ଅତିଥି ଭର୍ତ୍ତି ହୋଇଥିଲେ, କାରଣ ମୋର ଅଜା ଓ ଆଈ ଅତ୍ୟନ୍ତ ଅତିଥି ପରାୟଣ

ଥିଲେ ଏବଂ ବିଶ୍ୱମେଳା ଅତ୍ୟନ୍ତ ଉତ୍ସାହବର୍ଦ୍ଧକ ଓ ଅଦ୍ଭୁତ ଥିଲା । ଆମକୁ ଯେତେବେଳେ ଖବର ମିଳିଲା ଯେ ଆମର ଅତିଥି ସନ୍ଧ୍ୟାକୁ ଆସିବେ, ସେତେବେଳେ ଆମ ଘରେ ଏତେ ସ୍ଥାନର ଅଭାବ ଥିଲା ଯେ ମୋର ଆଈ ତାଙ୍କର ମଝିଆ ପୁଅକୁ ଘରଛାଡ଼ି ଜଣେ ବନ୍ଧୁ ଘରକୁ ଯିବାକୁ କହିଲେ । ସମ୍ବାଦ ମିଳିଲା ଯେ, ଆମ ସମ୍ପ୍ରଦାୟ – ଫର୍ଷ୍ଟ ପ୍ରେସବିଟେରିୟନ ଚର୍ଚ୍ଚର ଜଣେ ସଦସ୍ୟ ଅର୍ଦ୍ଧରାତ୍ରକୁ ଅତିଥିଙ୍କୁ ନେଇ ଆସିବେ । ଆଈଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଶୋଇପଡ଼ିଲେ । ଦ୍ୱାର ଘଣ୍ଟି ଶବ୍ଦ ଶୁଣି ସେ ଯେତେବେଳେ ଦ୍ୱାର ଖୋଲିଲେ ସେ ଲମ୍ବା ଗେରୁଆ ପଞ୍ଜାବୀ ପିନ୍ଧିଥିବା ସ୍ୱାମୀ ବିବେକାନନ୍ଦଙ୍କୁ ଦେଖି ସ୍ତମ୍ଭୀଭୂତ ହୋଇଗଲେ । ଏହା ପୂର୍ବରୁ ସେ କେବେ କୌଣସି ଭାରତୀୟଙ୍କୁ ଦେଖିନଥିଲେ । ସେ ସ୍ୱାମୀଜୀଙ୍କୁ ଆଦର ସହକାରେ ନେଇ ତାଙ୍କ କୋଠରି ଦେଖାଇଦେଲେ । କିନ୍ତୁ ଶୋଇବାକୁ ଯିବା ପୂର୍ବରୁ ତାଙ୍କ ମନରେ ଚିନ୍ତା ହେଲା । ଆମର ଅନେକ ଅତିଥି ଦକ୍ଷିଣ ରାଜ୍ୟରୁ ଆସିଥିଲେ, ଯେଉଁମାନେ କେବଳ ଶ୍ୱେତାଙ୍ଗମାନଙ୍କ ସହିତ ମିଶିବାକୁ ପସନ୍ଦ କରୁଥିଲେ । ଅଜାଙ୍କର ନିଦ ଭାଙ୍ଗିବା ପରେ ସେ ତାଙ୍କୁ ଏହି ସମସ୍ୟା ସମ୍ପର୍କରେ ଅବଗତ କରାଇ ପଚାରିଲେ କ'ଣ ସେ ସ୍ୱାମୀଜୀ ଓ ଶ୍ୱେତାଙ୍ଗ ଅତିଥିମାନଙ୍କୁ ଏକାସାଙ୍ଗରେ ରଖିବେ ? ନଚେତ୍ ସ୍ୱାମୀଜୀଙ୍କୁ ଘର ନିକଟସ୍ଥ ଅଡ଼ିଟୋରିୟମ୍ ହୋଟେଲରେ ରଖାଯାଇପାରେ । ଜଳଖିଆ ଖାଇବା ଅଧଘଣ୍ଟାଏ ପୂର୍ବରୁ ଅଜା ଲୁଗାପଟା ପିନ୍ଧି ପୁସ୍ତକାଳୟ ଗୃହକୁ ଖବରକାଗଜ ପଢ଼ିବାକୁ ଗଲେ । ସେଠାରେ ତାଙ୍କର ସ୍ୱାମୀଜୀଙ୍କ ସହିତ କଥାବାର୍ତ୍ତା ହେଲା ଏବଂ ଜଳଖିଆ ଖାଇବା ପୂର୍ବରୁ ସେ ଆଈଙ୍କୁ କହିଲେ, 'ଏମିଲି, ଆମର ସମସ୍ତ ଅତିଥି ଚାଲିଗଲେ ମଧ୍ୟ ମୋର ଚିନ୍ତା ନାହିଁ । ଆମ ଘରକୁ ଏପର୍ଯ୍ୟନ୍ତ ଯେତେ ଲୋକ ଆସିଛନ୍ତି, ସେମାନଙ୍କ ମଧ୍ୟରୁ ଏହି ଭାରତୀୟ ସବୁଠାରୁ ବୁଦ୍ଧିମାନ୍ ଏବଂ ଉଦାର ହୃଦୟ ଏବଂ ସେ ଯେପର୍ଯ୍ୟନ୍ତ ରହିବେ ସେପର୍ଯ୍ୟନ୍ତ ଏଠାରେ ରହିବେ ।' ସେବେଠାରୁ ସେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତାର ସୂତ୍ରପାତ ହେଲା ଏବଂ ତାହାର ଫଳସ୍ୱରୂପ ସ୍ୱାମୀଜୀ ଚିକାଗୋ କ୍ଲବ୍‌ରେ ଅନ୍ୟ ବନ୍ଧୁମାନଙ୍କ ସମ୍ମୁଖରେ କହିଥିଲେ, ''ମୁଁ ବର୍ତ୍ତମାନ ପର୍ଯ୍ୟନ୍ତ ଯେତେ ଲୋକଙ୍କ ସହିତ ମିଶିଛି ମୋର ବିଶ୍ୱାସ ଯେ ଏମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଲ୍ୟୋନ ସବୁଠାରୁ ଅଧିକ ଯୀଶୁଙ୍କ ପରି ।'' ଏହା ଶୁଣି ଅଜା ଅତ୍ୟନ୍ତ ସଙ୍କୋଚ ଅନୁଭବ କରିଥିଲେ । ସ୍ୱାମୀଜୀଙ୍କର ମୋର ଆଈଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଥିଲା କାରଣ ତାଙ୍କୁ ଦେଖିବା ମାତ୍ରେ ସ୍ୱାମୀଜୀଙ୍କର ନିଜ ମା'ଙ୍କର ସ୍ମୃତି ମନେ ପଡୁଥିଲା । ମୁଁ ସେସମୟରେ ମାତ୍ର ଛ' ବର୍ଷର ଥିଲି ଏବଂ ମୋର ବିଧବା ମା'ଙ୍କ ସହିତ ସେହି ପରିବାରରେ ରହୁଥିଲି । ସ୍ୱାମୀଜୀ ମୋର ମା'ଙ୍କ ସହିତ କଥାବାର୍ତ୍ତା କରି ତାଙ୍କର ଦୁଃଖକୁ ଦୂର କରିବାକୁ ଚେଷ୍ଟା କରୁଥିଲେ । ମୋର ଅଜା ଓ ଆଈ ତାଙ୍କର ସମସ୍ତ ବକ୍ତୃତା ବେଳେ ଉପସ୍ଥିତ ରହୁଥିଲେ ।''

ଦିନେ ସ୍ୱାମୀଜୀ ମୋର ଆଈଙ୍କୁ କହିଲେ ଯେ ସେ ତାଙ୍କର ଆମେରିକା ଜୀବନରେ ସବୁଠାରୁ ବଡ଼ ପ୍ରଲୋଭନର ଶିକାର ହୋଇଛନ୍ତି । ଆଈ ତାଙ୍କୁ ଟିକିଏ ଚିଡ଼ାଇବାକୁ ପଚାରିଲେ, 'ଏହି ଝିଅଟି କିଏ ସ୍ୱାମୀଜୀ ?' ଏହା ଶୁଣି ଠୋ ଠୋ ହସି ସ୍ୱାମୀଜୀ କହିଲେ, 'ସେ ଝିଅ ନୁହେଁ, ତାହା ହେଉଛି ସଂଘ ଗଠନ ।' ପୁନଶ୍ଚ ତାହାକୁ ବୁଝାଇବାକୁ ଯାଇ କହିଲେ ଶ୍ରୀ ରାମକୃଷ୍ଣଙ୍କର ଶିଷ୍ୟମାନେ ଏକା ଏକା ଭ୍ରମଣ କରୁଛନ୍ତି ଏବଂ କୌଣସି ଗ୍ରାମରେ ପହଞ୍ଚିବା ପରେ ସେଠାରେ ଗୋଟିଏ ବୃକ୍ଷ ତଳେ ଆସନ ପକାଇ ବସୁଛନ୍ତି, ଉପଦେଶ ଦେବା ପାଇଁ କୌଣସି ଜିଜ୍ଞାସୁର ବାଟ ଚାହୁଁଛନ୍ତି । କିନ୍ତୁ ସେ ଆମେରିକା ଆସି ବୁଝିଗଲେ ଯେ ସଂଘବଦ୍ଧ ହୋଇ କାର୍ଯ୍ୟ କରିବାରେ କେତେ ଅଧିକ ସଫଳତା ମିଳିପାରେ । ପାଶ୍ଚାତ୍ୟ ଜଗତରେ ପହଞ୍ଚିବା ପରେ ଏହା ଥିଲା ସ୍ୱାମୀ ବିବେକାନନ୍ଦଙ୍କର ଅନୁଭୂତି, ଯାହାକୁ କଳ୍ପନା କରାଯାଇ ନପାରେ ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫

# ସାଧାରଣତନ୍ତ୍ର ଦିବସରେ ଅନୁଚିନ୍ତା

ପ୍ରଫେସର ବୈଷ୍ଣବ ଚରଣ ସାମଲ

ଦୀର୍ଘ କାଳର ବ୍ରିଟିଶ ଶାସନ କବଳରୁ ପୁଣ୍ୟ ଭାରତ ମୁକ୍ତ ହେଲା ପରେ (୧୯୪୭ ଅଗଷ୍ଟ ୧୫) ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ସ୍ୱାଧୀନ ଭାରତର ପ୍ରଥମ ସମ୍ବିଧାନ, ଯାହା ଡକ୍ଟର ବାବା ସାହେବ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ପ୍ରସ୍ତୁତ ହୋଇଥିଲା, ତାହା ଲୋକସଭାରେ ପାରିତ ହୋଇଗଲା ଓ ଭାରତବର୍ଷ ଲାଭ କଲା ତା'ର ସମ୍ବିଧାନ । ଭାରତ ହେଲା ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର । ଏହା ମଧ୍ୟ ହେଲା ପୃଥିବୀର ସବୁଠାରୁ ବୃହତ୍ ଗାଣତନ୍ତ୍ରିକ ଦେଶ । ଭାରତ ହିଁ ଏକମାତ୍ର ଦେଶ ଯେଉଁଠି ବାସ କରନ୍ତି ନାନା ଧର୍ମ, ନାନା ଭାଷା, ନାନା ଆଚାର ବିଚାରର ଲୋକ ଓ ଏ ଦେଶ କୌଣସି ନିର୍ଦ୍ଦିଷ୍ଟ ଧର୍ମର ଦେଶ ନ ହୋଇ, ହେଲା ସବୁ ଧର୍ମ, ସବୁ ଭାଷାର ଅପୂର୍ବ ମିଶ୍ର ରାଗ, ଅନ୍ୟ ଅର୍ଥରେ ହେଲା ଧର୍ମ ନିରପେକ୍ଷ ରାଷ୍ଟ୍ର । ବିବିଧ ବୈଷମ୍ୟ ବୈଚିତ୍ର୍ୟ ଥିଲେ ମଧ୍ୟ ଭାରତର ଆତ୍ମାର ବାଣୀ ହେଉଛି ବୈଷମ୍ୟ ମଧ୍ୟରେ ସାମ୍ୟ, ଅନୈକ୍ୟ ମଧ୍ୟରେ ଐକ୍ୟ । ଯିଏ ଯାହାର ଧର୍ମ ତାହା ପାଳନ କରୁ, ଅନ୍ୟକୌଣସି ଧର୍ମକୁ ନିନ୍ଦା ନ କରୁ, ପ୍ରତ୍ୟେକ ଧର୍ମର ଅନ୍ତର୍ନିହିତ ତତ୍ତ୍ୱକୁ ଉପଲବ୍ଧ କରୁ, ଈଶ୍ୱରଙ୍କ ନାମ -ବିଭିନ୍ନ ଧର୍ମରେ ଭିନ୍ନ ଭିନ୍ନ ହୋଇଥାଉ ମାତ୍ର ସେ ଯେ ଏକ, ତାହା ସମସ୍ତେ ଜାଣନ୍ତୁ ଓ ମାନବ-ମୈତ୍ରୀ-ଧର୍ମକୁ ପ୍ରାଧାନ୍ୟ ଦିଅନ୍ତୁ- ଏହାହିଁ ଆମ ସମ୍ବିଧାନର ମର୍ମ । ଏବେ ଆମ ଗଣତନ୍ତ୍ରକୁ, ଆମ ସମ୍ବିଧାନକୁ ସତୁରୀ ବର୍ଷ ହୋଇଗଲା । ଏଇ ସତୁରୀ ବର୍ଷ ଭିତରେ ଆମେ କ'ଣ କରିଛୁ, ଆମ ସମ୍ବିଧାନକୁ କେତେ ମାନ୍ୟତା ଦେଇଛୁ, ଆମ ଗଣତନ୍ତ୍ରକୁ କେତେ ଭଲ ପାଇଛୁ ଓ ଦେଶର ଅଖଣ୍ଡତା ରକ୍ଷା ପାଇଁ କେତେ ପରିମାଣରେ ଆମେ ବଦ୍ଧପରିକର ହୋଇଛୁ, ତାହା ବିଚାର କରିବା କଥା ।

ଉପରୋକ୍ତ ବିଷୟକୁ ବିଶ୍ଳେଷଣ କରିବା ପୂର୍ବରୁ ପ୍ରଥମତଃ ଆମକୁ ବିଚାର କରିବାକୁ ହେବ ଯେ କାହିଁକି ଦେଶ ବ୍ୟାପୀ ସଂଘର୍ଷ ଦେଖା ଦେଉଛି ? ଏଥିରେ କାହାର କ'ଣ ସ୍ୱାର୍ଥ ଅଛି ? ଏହାଦ୍ୱାରା ଆମର ଜାତୀୟ ସଂପତ୍ତି ନଷ୍ଟ ହୁଏ । କେହି ବୁଝନ୍ତି ନାହିଁ ଯେ ଦେଶ ରହିଲେ ସମସ୍ତେ ରହିବେ, ଦେଶ ଯଦି ନ ରହେ ଏସବୁ ରହିବ କି ? ଗଣତନ୍ତ୍ରରେ କହିବାର ସ୍ୱାଧୀନତା ଅଛି ବୋଲି କ'ଣ ଯିଏ ଯାହା ଚାହିଁବ ତାହା କହିପାରିବ, ତାହା ନୁହେଁ ? ତାହାର ଅର୍ଥ ହେଉଛି ଭାରତର ଜନଗଣ ଏ ପର୍ଯ୍ୟନ୍ତ ଗଣତନ୍ତ୍ର ପାଇଁ ସଚେତନ ବା ପ୍ରସ୍ତୁତ ହୋଇନାହାନ୍ତି ।

ଗଣତନ୍ତ୍ରର ସତୁରୀ ବର୍ଷପରେ ଏବେ ଚିନ୍ତା କରିବାକୁ ହେଉଛି ଯେ ଭାରତରେ କେବଳ ନୁହେଁ, ସାରା ପୃଥିବୀରେ ରାଜତନ୍ତ୍ର ଦୀର୍ଘକାଳ ଧରି ଅଖଣ୍ଡ ପ୍ରଭାବ ପକାଇଥିଲା । ରାଜାମାନେ ଥିଲେ ନର ରୂପରେ ଦେବତା, ଅଥଚ ରାଜତନ୍ତ୍ର ଗଲା ତା'ର ଅତ୍ୟଧିକ ଉପଭୋଗ-ଲାଳସା ପାଇଁ, ସ୍ୱେଚ୍ଛାଚାରିତା ପାଇଁ, ରାଜକର୍ମଚାରୀମାନଙ୍କର ମନୋମୁଖୀ କାର୍ଯ୍ୟକଳାପ ପାଇଁ । ତା'ପରେ ରାଜତନ୍ତ୍ର ଓ ସାମନ୍ତତନ୍ତ୍ର ଆସିଲା । ତାହା ମଧ୍ୟ ଗଲା । ଏହାପରେ ଭିନ୍ନ ଭିନ୍ନ ଶାସନ ବ୍ୟବସ୍ଥା କାୟା ବିସ୍ତାର କଲା । ହେଲେ ତାହା ରହିପାରିଲା ନାହିଁ । ଅଥଚ ଗଣତନ୍ତ୍ର, ଯାହା ଫରାସୀ ବିପ୍ଲବର ବରଦାନ, ତାହା ସାରା ପୃଥିବୀକୁ ସଂକ୍ରମିତ ହୋଇଗଲା ଓ ଯାହାକୁ ପ୍ରସିଦ୍ଧ ବିଦ୍ୱାନମାନେ ସ୍ୱାଗତ ଜଣାଇଲେ ଓ କହିଲେ ଗଣତନ୍ତ୍ର

ହିଁ ଶ୍ରେଷ୍ଠ ଶାସନ ପଦ୍ଧତି । ଏହା ଲୋକଙ୍କ ପାଇଁ, ଲୋକଙ୍କ ଦ୍ୱାରା ଓ ଲୋକମାନଙ୍କର ଶାସନ ପଦ୍ଧତି । ଏଥିରେ ଲୋକେ ହିଁ ମୁଖ୍ୟ । ଲୋକେ ଭୋଟ ଦେଇ ପ୍ରତିନିଧି ନିର୍ବାଚନ କରନ୍ତି । ସେହି ପ୍ରତିନିଧିମାନେ ହୁଅନ୍ତି ଲୋକଙ୍କ ମୁଖପାତ୍ର । ସେହିମାନେ ହିଁ ଲୋକଙ୍କ ଦାବି ଉପସ୍ଥାପନ କରନ୍ତି ଶାସନ–ସଭାରେ । ତେଣୁ ଦେଶେ ଦେଶେ ଗଣତନ୍ତ୍ର ପ୍ରତି ଆଦର ପ୍ରକାଶ ପାଇଲା ।

ଭାରତବର୍ଷର ଗଣତନ୍ତ୍ର ତଥାପି ଦୀପ୍ତ ମଶାଲ ଧରି ରଖିଛି । କାରଣ ଭାରତର ମାଟି ହେଉଛି ଗଣତନ୍ତ୍ରର ମାଟି । ତାହାର ନଜିର ହେଉଛି ବେଦବେଦାନ୍ତରେ ରାଜଧର୍ମ ଓ ରାଜାର କର୍ତ୍ତବ୍ୟ ସମ୍ପର୍କିତ ବର୍ଣ୍ଣନାରୁ, ରାମାୟଣର ରାମଚନ୍ଦ୍ର ଓ ମହାଭାରତର ଶରଶଯ୍ୟାରେ ଶାୟିତ ଭୀଷ୍ମଙ୍କର ଉପଦେଶରୁ । ପରେ ପରେ ଭାରତର ନାନା ବିପର୍ଯ୍ୟୟ ହୋଇଛି । ବୈଦେଶିକମାନେ ବାରମ୍ବାର ଭାରତକୁ ଆକ୍ରମଣ କରିଛନ୍ତି, ଅଧିକାର କରିଛନ୍ତି, ଲୁଣ୍ଠନ ଓ ଅତ୍ୟାଚାର କରିଛନ୍ତି, ତଥାପି ଭାରତ ବଞ୍ଚିଛି ଓ ସ୍ୱାଗତ ଜଣାଇଛି ଲୋକତନ୍ତ୍ରକୁ ଓ ଗଣତନ୍ତ୍ରକୁ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତବର୍ଷ ସ୍ୱାଧୀନ ହେଲା । ସବୁ ସଂକଟକୁ ମୁକାବିଲା କରି ଭାରତ ଶୁଣାଇଲା ଶାନ୍ତି, ମୈତ୍ରୀ ଓ ସୌହାର୍ଦ୍ଦ୍ୟର ବାଣୀ । ଗାନ୍ଧୀବାଦ କିନ୍ତୁ ବଞ୍ଚିରହିଲା ଓ ଏବେ ଦେଢ଼ଶହ ବର୍ଷପରେ ମନେ ହେଉଛି ଗାନ୍ଧୀବାଦ ହିଁ ଯେପରି ଏକମାତ୍ର ଆଦର୍ଶ ହେବାକୁ ଯାଉଛି ସାରା ପୃଥିବୀରେ । ଯେଉଁ ଗଣତନ୍ତ୍ର ଚାଲିଆସିଲା ଏପର୍ଯ୍ୟନ୍ତ, ସେଥିରେ ଯେପରି ଉପଲବ୍ଧି ହେଉଛି ଏକ ନୂତନ ଚେତନା । ଏହାର ପ୍ରଥମ ପ୍ରଣବ ଉଚ୍ଚାରିତ ହେଉଛି ଏକ ନୂତନ ଚେତନା । ଏହା ହେଉଛି ଓଡ଼ିଶାରୁ । ଏହା ହିଁ ଉତ୍ତର – ଗଣତନ୍ତ୍ରର ସଂକେତ । ଏ ଗଣତନ୍ତ୍ରରେ ଧର୍ମ ରହିବ, ତାହା କିନ୍ତୁ କୌଣସି ସାମ୍ପ୍ରଦାୟିକ ଧର୍ମ ନୁହେଁ । ତାହା ହେବ ଅଧ୍ୟାତ୍ମ ଉଦ୍ଦୀପିତ ଧର୍ମ ଓ ଗଣତନ୍ତ୍ର ହେବ ଅଧ୍ୟାତ୍ମ ଉତ୍ତରିତ ଗଣତନ୍ତ୍ର । ଏଥିରେ ଲୋକେ ହିଁ ହେବେ ପ୍ରକୃତ ମାଲିକ । ସେମାନେ ନିର୍ବାଚିତ କରିବେ ସେମାନଙ୍କ ନେତାଙ୍କୁ ଓ ନେତା ଦାୟିତ୍ୱ ତୁଲାଇବାରେ ଅସମର୍ଥ ହେଲେ ତାହାଙ୍କୁ ବାହାର କରିଦେବାକୁ କ୍ଷମତା ରହିବ । ନେତାମାନେ ଦେଶ ପ୍ରତି ଓ ଲୋକଙ୍କ ପ୍ରତି ଅଙ୍ଗୀକାରବଦ୍ଧ ହେବେ । ବିଳାସ ଓ ଉପଭୋଗବାଦରୁ ମୁକ୍ତ ହୋଇ ଲୋକଙ୍କ ସହିତ ମିଶିବେ, ସେମାନଙ୍କ ସମସ୍ୟାକୁ ଜାଣିବେ ଓ ତାହାକୁ ଦୂର କରିବାକୁ ଉଦ୍ୟମ କରିବେ । ଏବେ ଓଡ଼ିଶାରେ ଆରମ୍ଭ ହୋଇଛି ନୂତନ ପ୍ରକ୍ରିୟା– ପ୍ରଶାସକମାନେ ଯିବେ ଲୋକଙ୍କ ପାଖକୁ, ବିଧାୟକ, ସାଂସଦ ଓ ମନ୍ତ୍ରୀମାନେ ମଧ୍ୟ ଲୋକଙ୍କ ପାଖକୁ ଯିବେ । ସେମାନଙ୍କ ସମସ୍ୟାକୁ ତୁରନ୍ତ ସମାଧାନ କରିବେ । ସବୁ କ୍ଷେତ୍ରରେ ସଂସ୍କାର ଆରମ୍ଭ ହୋଇଯାଇଛି । ଏହାର ଶ୍ରେୟ ନିଶ୍ଚିତ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କର । ତେବେ Science Today ପତ୍ରିକାରେ ଛଅଜଣ ବୈଜ୍ଞାନିକଙ୍କ ମିଳିତ ଚେଷ୍ଟାରେ ପ୍ରକାଶିତ ଏକ ଲେଖାରେ ଉଲ୍ଲେଖ ଅଛି ଯେ, ଏକବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ପୃଥିବୀରେ ଘୋର ସଂକଟ ସୃଷ୍ଟି ହେବାକୁ ଯାଉଛି । ସେହି ସଂକଟ ହେଉଛି ୨୦୪୩ ମସିହା ବେଳକୁ ଜଳସଂକଟ ଭୟଙ୍କର ହୋଇଯିବ, ଭୂଗର୍ଭର ଜଳପତନ ବହୁ ତଳକୁ ଚାଲିଯିବ । ୨୦୬୩ ମସିହା ବେଳକୁ ପୃଥିବୀ ଗର୍ଭରେ ଥିବା ଖଣିଜ ସମ୍ପଦ ସରିଯିବ । ସୂର୍ଯ୍ୟ ପୃଥିବୀର ବହୁ ନିକଟବର୍ତ୍ତୀ ହୋଇଯିବେ । ଭୟଙ୍କର ଉତ୍ତାପ ବଢ଼ିବ । ବୃକ୍ଷଲତା ଲୋପ ପାଇବ । ମରୁଭୂମି ପାଲଟି ଯିବ ସର୍ବତ୍ର । ଘନ ଘନ ଭୂକମ୍ପ, ବାତ୍ୟା, ଅଗ୍ନ୍ୟୁତ୍ପାତ, ଅଜଣା ବ୍ୟାଧି ହେବା ଫଳରେ ଲୋକ କ୍ଷୟ, ଜୀବଜନ୍ତୁ ବିନାଶ ଇତ୍ୟାଦି ଘଟିବ । ଏପରି ଯଦି ହୁଏ, କ’ଣ ହେବ ପୃଥିବୀର ଭାଗ୍ୟ ? କ’ଣ ହେବ ଭାରତର ଅବସ୍ଥା ? ଗୋଟାଏ କଳ୍ପର କ୍ଷୟ ହେଲା ପରେ ପୁନର୍ବାର ନୂତନ କଳ୍ପର ଉନ୍ମେଷ ଘଟେ ଓ ପୁନର୍ବାର ମନୁଷ୍ୟ, ଜୀବଜନ୍ତୁ ଓ ବନଲତାର ହୁଏ ସୃଜନ । ସେହି ଅବସ୍ଥାହିଁ ହେବ ଉତ୍ତର–ଗଣତନ୍ତ୍ରର ଯୁଗ । ତାହା ହେବ ସ୍ନେହ ଶ୍ରଦ୍ଧା ମୈତ୍ରୀ ଓ ମାନବିକତାର ବାସ୍ନାରେ ବାସ୍ନାୟିତ । ଏହି ବାସ୍ନାର ଆଭାସ ଓଡ଼ିଶାରୁ ମିଳିବା ଆରମ୍ଭ କରିଛି ଓ ଏହା କ୍ରମେ ସମଗ୍ର ଦେଶକୁ ସଂକ୍ରମିତ ହୋଇଯିବ ବୋଲି ଆଶା ଓ ବିଶ୍ୱାସ । ଗଣକୁ ଭିକାରୀ ନ କରି, ପରମୁଖାପେକ୍ଷୀ ହେବାକୁ ନ ଦେଇ ନିଜ ଗୋଡରେ ଛିଡା ହେବାକୁ ଓ ଶ୍ରମକାତର ନ ହୋଇ ଶ୍ରମ ପ୍ରତି ଅନୁରାଗୀ ହେବାକୁ ଯେ ପ୍ରକୃତ ଗଣତନ୍ତ୍ର ପ୍ରେରଣା ଦେବ, ଏଥିରେ ସନ୍ଦେହ ନାହିଁ ।

ଅପର୍ଣ୍ଣା ନଗର
ଚାଉଳିଆଗଞ୍ଜ, କଟକ– ୭୫୩୦୦୪

# ଓଡ଼ିଆ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ ଫକୀର ମୋହନ

**ପଣ୍ଡିତ ତ୍ରିଲୋଚନ ମିଶ୍ର**

ଜଣେ ସୁଦକ୍ଷ ସେନାପତି ଯେପରି ନିଜର ଉପସ୍ଥିତ ବୁଦ୍ଧି, ସାହସ, ଶକ୍ତି ଦ୍ୱାରା ଯୁଦ୍ଧକ୍ଷେତ୍ରରେ ବିଜୟର ପତାକା ଉଡାଇଥାଏ, ଠିକ୍ ସେହିପରି ବ୍ୟାସକବି ଫକୀର ମୋହନ ସେନାପତି ଆମ ମାତୃଭାଷାକୁ ବିଜୟ ମୁକୁଟ ପିନ୍ଧାଇଥିଲେ କଠିନ ସଂଗ୍ରାମ କରି । ଯଥାର୍ଥରେ ସେହିଁ ଓଡ଼ିଆ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ । ମୈତ୍ରୀ ଶୁକ୍ଳଙ୍କ ରଚିତ ଫକୀର ମୋହନଙ୍କ ଆତ୍ମଜୀବନୀ ଚରିତର ବଙ୍ଗଭାଷା ଅନୁବାଦ ପୁସ୍ତକ ମୁଖବନ୍ଧରେ ବରିଷ୍ଠ ସାରସ୍ୱତ ସାଧକ ଅନ୍ନଦା ଶଙ୍କର ରାୟ ଲେଖିଥିଲେ– 'ଏପରି ଗଦ୍ୟ ଓଡ଼ିଆ ଭାଷାରେ କେହି କେବେ ଲେଖି ନାହାନ୍ତି । ଚେଷ୍ଟା କଲେ ମଧ ଲେଖିପାରିବେ ନାହିଁ । ଫକୀର ମୋହନଙ୍କୁ ନିଜର ଆଦ୍ୟ ଗୁରୁ ମାନୁଥିବା ଯଶସ୍ୱୀ ଲେଖକ ମନୋଜ ଦାସ 'ରେବତୀ' ଗଳ୍ପ ସମ୍ପର୍କରେ କହିଛନ୍ତି– 'ଏତେବଡ କ୍ଲାସିକ୍ ଗପ ବିଶ୍ୱ ଇତିହାସରେ ବିରଳ' । ମାତ୍ର ଚାଟଶାଳୀ ପାଠରେ ପାଠ ଡୋରି ବାନ୍ଧିଥିବା ଫକୀର ମୋହନଙ୍କ ଲେଖା ପଢି ବହୁ ସାରସ୍ୱତ ଗବେଷକ ସୁଦୂର ଇଂଲଣ୍ଡ, ଜର୍ମାନ୍, ଫ୍ରାନ୍ସ ମାଟିରୁ ତାଙ୍କ ଜନ୍ମମାଟି ବାଲେଶ୍ୱର ଜିଲ୍ଲାକୁ କ୍ରମାଗତ ଆସିଛନ୍ତି । ଏହା କ'ଣ ଓଡ଼ିଆ ଭାଷା ଓ ଓଡ଼ିଆମାନଙ୍କ ପାଇଁ ଗର୍ବର ବିଷୟ ନୁହେଁ ।

କେବଳ ଭାଷା ସଂଗ୍ରାମ ନୁହେଁ, ଓଡ଼ିଶାକୁ ଓଡ଼ିଆ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଫକୀର ମୋହନ ସେନାପତିଙ୍କ ଅବଦାନ ଅବିସ୍ମରଣୀୟ । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଆ ଜାତିର ମେରୁଦଣ୍ଡ ଭାଙ୍ଗିଗଲା । ଏ ସୁଯୋଗରେ ବଙ୍ଗଭାଷାବାସୀ ପଡୋଶୀମାନେ ଇଂରେଜମାନଙ୍କ କଚିରି ଦଖଲ କରିଗଲେ । ଓଡ଼ିଆ ଏକ ଭାଷା ନୁହେଁ, ଏଠାରେ ତୁରନ୍ତ ବଙ୍ଗଭାଷା ପ୍ରଚଳନ ପାଇଁ ସରକାରୀ ନିର୍ଦ୍ଦେଶନାମା ବାହାର କରିଦେଲେ । ମାତ୍ର ଦୃଢମନା ଓଡ଼ିଆ ଫକୀର ମୋହନ ଆଦୌ ବିବ୍ରତ ନ ହୋଇ ନିଜ ସଭାସମିତିରେ କହି ଚାଲିଲେ ବଙ୍ଗଭାଷାର ଜନକ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଂକାର ଜଣେ ଓଡ଼ିଆ ଥିଲେ । ବଙ୍ଗଭାଷା ପାଇଁ ସେ ପ୍ରଥମ ବ୍ୟାକରଣ 'ପ୍ରବୋଧ ଚନ୍ଦ୍ରିକା', ବଙ୍ଗଭାଷା ଇତିହାସ 'ରାଜାବଳି' ରଚନା କରିଥିଲେ । ଫୋର୍ଟ ଉଇଲିୟମ୍ କଲେଜର ମୁଖ୍ୟ ଅଧ୍ୟାପକ ପଦ ମଣ୍ଡନ କରି ଇଂରେଜ ପ୍ରଶାସକମାନଙ୍କୁ ବଙ୍ଗଭାଷା, ହିନ୍ଦୀ ଓ ଓଡ଼ିଆ ଭାଷା ପଢାଉଥିଲେ । ଏପରିକି ବିଶ୍ୱପ୍ରସିଦ୍ଧ ବଙ୍ଗୀୟ ମହାପୁରୁଷ ଶ୍ରୀ ଶ୍ରୀ ଚୈତନ୍ୟ ଦେବଙ୍କ ପିତା ଥିଲେ ଉତ୍କଳୀୟ ବ୍ରାହ୍ମଣ ଜଗନ୍ନାଥ ମିଶ୍ର । ଏ ସମସ୍ତ ତଥ୍ୟ ସମ୍ମିଳିତ ଏକ ଦରଖାସ୍ତ ସେ ତତ୍କାଳୀନ ବାଲେଶ୍ୱର ଜିଲ୍ଲାପାଳ ବହୁଭାଷାବିତ୍ ଜନ ବିମ୍ସଙ୍କୁ ଦେଇ ପ୍ରତିକାର ଲୋଡିଲେ । ଜନ ବିମ୍ସ ନିଜ ମତାମତରେ ଲେଖିଲେ ତାଙ୍କ ଗବେଷଣାରୁ ସେ ଜାଣିଛନ୍ତି ଓଡ଼ିଆ ଏକ ଶ୍ରେଷ୍ଠ ଆର୍ଯ୍ୟଭାଷା । ଏ ଭାଷାକୁ ଉପେକ୍ଷା କରାଯାଇପାରିବ ନାହିଁ । ଜନ୍ ବିମ୍ସଙ୍କ ପତ୍ର ପାଇ ଓଡ଼ିଶାର କମିଶନର ଟି.ରେଭେନ୍ସା ନିଜର ଦୃଢ ସମର୍ଥନ ଜଣାଇ ଇଂରେଜ ସରକାରଙ୍କ ପୂର୍ବ ନିର୍ଦ୍ଦେଶନାମାକୁ ଖାରଜ କରାଇଦେଲେ । ବଙ୍ଗୀୟ ଅଧିକାରୀମାନଙ୍କ ସମସ୍ତ ଚକ୍ରାନ୍ତକୁ ଏକା ସେନାପତି

ଫକୀର ମୋହନ ପଣ୍ଡ କରିଦେଲେ । ସେତିକିରେ ନିରବ ନ ରହି ଓଡ଼ିଆ ବ୍ୟାକରଣ, ପାଠ୍ୟପୁସ୍ତକ, ଗଳ୍ପ, ମହାପୁରୁଷଙ୍କ ଜୀବନୀ ଉପନ୍ୟାସ ରଚନା କରି ସବୁ ସ୍ତରର ଅଭାବ ମେଣ୍ଟାଇ ଦେଲେ । ଏପରିକି ବାଲେଶ୍ୱରରେ ନିଜ ପ୍ରଚେଷ୍ଟାରେ ଛାପାଖାନା ବସାଇ ପୁସ୍ତକ ଛାପି ଓଡ଼ିଆ ବିଦ୍ୟାର୍ଥୀମାନଙ୍କ ଓ ଶିକ୍ଷକମାନଙ୍କର ଭରସାର କେନ୍ଦ୍ରବିନ୍ଦୁ ହୋଇଗଲେ । ତାଙ୍କର ଏଇ ଦୁଇଧାଡି ରଚନା ଓଡିଆ ଭାଷା ପଢିବାକୁ ସମସ୍ତଙ୍କୁ ଅନୁପ୍ରାଣିତ କରିଥିଲା । ଲେଖାଟି ଏପରି–

ଯେଉଁପାଠ ପଢିବାରେ ଦେଉ ଅଛ ମନ
ନ ବିଚାର ସେ ତ ନୁହେଁ ତୁଚ୍ଛ ଗଣ୍ଡି ଧନ ।
ପଢ ଇଂରାଜୀ କେହି ମନା କରୁ ନାହିଁ
କିନ୍ତୁ ବାପା କାମକର ଜାତି କୁଳ ଚାହିଁ ।
ଘୃଣା କରୁଅଛ ମାତୃଭାଷା ପଢିବାକୁ
ହାୟ ହାୟ ଲାଜ କଥା କହିବି କାହାକୁ ।

ପ୍ରକୃତିବନ୍ଧୁ ଭବନ
ପ୍ରାଚୀ ବିହାର, କାକଟପୁର, ପୁରୀ

# ଜାତୀୟ ଯୁବ ଦିବସ

**ଯୁଧିଷ୍ଠିର ଲେଙ୍କା**

ପ୍ରଦୀପ ଜ୍ୱଳନେ ଦୂର ହୁଏ ନାହିଁ
କେବଳ ଘନ ତମିସ୍ରା
ଅସଂଖ୍ୟ ପ୍ରଦୀପ ଜଳିଉଠେ ସେଥୁ
ସ୍ପର୍ଶ ପାଇ ସେହି ଶିଖା ।
ମହାମାନବଙ୍କ ଜୀବନୀ ଆଦର୍ଶ
ନାଶେ ଅଜ୍ଞାନ ଅନ୍ଧାର
ତନ୍ମଧ୍ୟରୁ ସ୍ୱାମୀ ବିବେକାନନ୍ଦଙ୍କ
ଆଦର୍ଶ ଓ ବାଣୀ ସାର ।
ଚିକାଗୋର ଧର୍ମ ମହାସଭା ମଧ୍ୟେ
ହିନ୍ଦୁ ଧର୍ମର ପ୍ରଚାର
ଭ୍ରାତୃଭାବ ଶାନ୍ତି ମାନବତା ମୈତ୍ରୀ
ସର୍ବ ଧର୍ମର ଆଧାର ।
ପ୍ରାଚୀନ ଭାରତ ହିନ୍ଦୁତ୍ୱ ଆଦର୍ଶ
ବେଦାନ୍ତ ତତ୍ତ୍ୱ ବ୍ୟାଖ୍ୟାନ
ପାଶ୍ଚାତ୍ୟ ଦେଶର ଧର୍ମଯାଜକଙ୍କୁ
କରିଥିଲା ଆଲୋଡ଼ନ ।
ବିଶ୍ୱ ମାନବର ପ୍ରଗତି ପଥରେ
ଆଣିଥିଲା ନବାଲୋକ



ଅଭିହିତ ହେଲେ ଜ୍ଞାନମୂର୍ତ୍ତି ସ୍ୱାମୀ
ନିର୍ଭୀକ ବିଶ୍ୱପ୍ରେମିକ ।
ଉଠ ଜାଗ ନିଜ ଜୀବନର ଲକ୍ଷ୍ୟ
ପ୍ରାପ୍ତକର ବଜ୍ର ବାଣୀ
ଯୁବ ସମାଜର ଚିନ୍ତା ଚେତନାରେ
ନବ ଉନ୍ମାଦନା ଆଣି ।
ସ୍ୱଦେଶ ପ୍ରେମ ଓ ଆଧ୍ୟାତ୍ମିକତାର
ବହ୍ନି କଲା ପ୍ରଜ୍ୱଳିତ
ଅସଂଖ୍ୟ ଦୀପାଳି ଆଜିବି ଜଳୁଛି
ଶିଖାଟେକି ଅବିରତ ।
ଯୁବଶକ୍ତି ସଚେତନ ଉନ୍ମେଷରେ
ପାଳନ କରଇ ଦେଶ
ପୂଜ୍ୟ ସ୍ୱାମୀଜୀଙ୍କ ଜନ୍ମ ଦିବସକୁ
ଜାତୀୟ ଯୁବ ଦିବସ ।

ଗ୍ରାମ– ଅଠାନ୍ତର, ପୋଷ୍ଟ– ପହଙ୍ଗା
ଭାୟା– ନିଆଳୀ, ଜିଲ୍ଲା–କଟକ

# ଉତ୍ତରାୟଣର ପର୍ବ ମକର ସଂକ୍ରାନ୍ତି

**ଗୋଲାପ ନନ୍ଦ**

ସର୍ବ ଧର୍ମ ସମନ୍ୱୟର ଦେଶ ଏଇ ଭାରତରେ ସଂସ୍କୃତି ଓ ଧାର୍ମିକ ପରମ୍ପରା ପ୍ରଚଳିତ । ସେଇ ଧାର୍ମିକ ରୀତିନୀତିରେ ମକର ସଂକ୍ରାନ୍ତିର ଗୁରୁତ୍ୱ ଅନ୍ୟତମ । ଏହି ପର୍ବକୁ ସମସ୍ତେ ଉତ୍ସାହର ସହ ପାଳନ କରନ୍ତି । କେତେକ ଏହି ପର୍ବପର୍ବାଣିକୁ ପରମ୍ପରା ଅନୁସାରେ ପାଳନ କରୁଥିବା ବେଳେ ଆଉ କେତେକ ପର୍ବ ପାଳନ କରିବା ପଛରେ ଜ୍ଞାନ, ବିଜ୍ଞାନ ସ୍ୱାସ୍ଥ୍ୟ ସହ ଜଡ଼ିତ ଅନେକ କାରଣ ରହିଛି ବୋଲି କହିଥାନ୍ତି ।

ସୂର୍ଯ୍ୟ ଧନୁରାଶିକୁ ଛାଡ଼ି ମକର ରାଶିକୁ ଆସିଲେ ତାହାକୁ ମକର ସଂକ୍ରାନ୍ତି କୁହାଯାଏ । ବାର ମାସରେ ପାଳନ କରାଯାଉଥିବା ସଂକ୍ରାନ୍ତି ମଧ୍ୟରୁ ମକର ଏବଂ କର୍କଟ ସଂକ୍ରାନ୍ତିର ବିଶେଷ ମହତ୍ତ୍ୱ ରହିଛି। ସଂକ୍ରାନ୍ତି ଦିନ ସୂର୍ଯ୍ୟ ଉତ୍ତରାୟଣ ହୋଇ ମକର ରାଶିକୁ ଆସନ୍ତି । ଏହି ଦିନଠାରୁ ଛଅ ମାସ ପର୍ଯ୍ୟନ୍ତ ଉତ୍ତର ଦିଗକୁ ଯାତ୍ରା କରିଥାନ୍ତି । ପୂର୍ବ ଛଅ ମାସରୁ ତାଙ୍କର ଗତି ଦକ୍ଷିଣାୟନ ଥିଲା କର୍କଟ ସଂକ୍ରାନ୍ତିଠାରୁ । ସୂର୍ଯ୍ୟଙ୍କର ଉତ୍ତରାୟଣ, ଦକ୍ଷିଣାୟନ ଓ ବିଷୁବ ଗତି ଅନୁସାରେ ଦିନ, ରାତି ବଡ ଛୋଟ ବା ସମାନ ହୁଏ । ଓଡ଼ିଆ ପ୍ରବାଦ ଅନୁଯାୟୀ ମକର ଦିନଠାରୁ ବେଳ ବକର ହୁଏ ଅର୍ଥାତ୍ ଏହି ଦିନଠାରୁ ଦିନ କ୍ରମଶଃ ବଡ ହୁଏ । ଏହି ଦିନଠାରୁ ସୂର୍ଯ୍ୟଙ୍କର ତେଜ ପ୍ରଖର ହୁଏ । ବିଜ୍ଞାନମତ ଅନୁସାରେ ଉତ୍ତରାୟଣରେ ସୂର୍ଯ୍ୟଙ୍କର ଗତି ପୃଥିବୀରେ ଆଲୋକର ସମୟ ବଢାଇଦିଏ । ଏହି କାରଣରୁ ଦିନ ବଡ ହୋଇଚାଲେ । ସୂର୍ଯ୍ୟଙ୍କର ସଳଖ କିରଣ ପୃଥିବୀ



ଉପରେ ପଡେ । ଏଥିପାଇଁ ଉତ୍ତାପ ବଢେ ଓ ଶୀତରୁ ମୁକ୍ତି ମିଳେ ।

ପୌରାଣିକ ମତ ଅନୁସାରେ ଉତ୍ତରାୟଣ ଦେବତାମାନଙ୍କର ଦିନ ଭାବେ ପରିଗଣିତ । ତେଣୁ ମକର ସଂକ୍ରାନ୍ତିର ଶୁଭ ଅବସରରେ ଶୁଭ ମୁହୂର୍ତ୍ତରେ ସ୍ନାନ ଓ ଦାନ ପୁଣ୍ୟ କରିବାର ବିଶେଷ ମହତ୍ତ୍ୱ ରହିଛି। ବିଶ୍ୱାସ ରହିଛି ଉତ୍ତରାୟଣରେ ମୃତ୍ୟୁବରଣ କରୁଥିବା ମନୁଷ୍ୟ ବିଷ୍ଣୁଲୋକରେ ସ୍ଥାନ ପାଇଥାଏ । ଏହି କାରଣରୁ ପିତାମହ ଭୀଷ୍ମ ସୂର୍ଯ୍ୟଙ୍କର ଉତ୍ତରାୟଣ ଗତିକୁ ଅପେକ୍ଷା କରି ଶରଶଯ୍ୟାରେ ପଡି ରହିଥିଲେ ଏବଂ ଉତ୍ତରାୟଣରେ ଦେହ ତ୍ୟାଗ କରିଥିଲେ । ଉତ୍ତରାୟଣ ବିଶେଷ କରି ମକର ସଂକ୍ରାନ୍ତି ଭଳି ପବିତ୍ର ତିଥିରେ ମୃତ୍ୟୁବରଣ କରୁଥିବା ପ୍ରାଣୀର ପୁନର୍ଜନ୍ମ ହୁଏ ନାହିଁ ବୋଲି ବିଶ୍ୱାସ ରହିଛି ।

ମକର ସଂକ୍ରାନ୍ତିର ସ୍ନାନ ଅଧିକ ପୁଣ୍ୟଦାୟୀ । ପ୍ରାତଃ କାଳରୁ ନଦୀ ପୁଷ୍କରିଣୀରେ ତିଳ ବା ରାଶିକୁ (ଚିକ୍କଣ ଭାବେ ବଟା ଯାଇଥିବା) ଦେହରେ ଲଗାଇ ବୁଡ ପକାଯାଏ । ସ୍ନାନ ପରେ ସୂର୍ଯ୍ୟ ଦେବତାଙ୍କର ଏବଂ ଶିବଙ୍କର ଆରାଧନା କରାଯାଇଥାଏ । ଏହି ପବିତ୍ର ଦିନରେ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରେ ଅନ୍ୟତମ ଯାତ୍ରା "ଉତ୍ତରାୟଣ ଯାତ୍ରା" ବା ମକର ସଂକ୍ରାନ୍ତି ଉତ୍ସବ ମହାସମାରୋହରେ ପାଳିତ ହୁଏ । ଏହି ଯାତ୍ରା ସମ୍ବନ୍ଧରେ ସ୍କନ୍ଦ ପୁରାଣରେ ଉଲ୍ଲେଖ ରହିଛି



ଯେ ମହାପୁଣ୍ୟମୟ ମକର ସଂକ୍ରାନ୍ତି ଦିନ ଶ୍ରୀକ୍ଷେତ୍ରରେ ତୀର୍ଥରାଜ ମହୋଦଧିରେ ସ୍ନାନ କରି ଶ୍ରୀମନ୍ଦିରରେ କଳ୍ପବଟ ପ୍ରଦକ୍ଷିଣ ପୂର୍ବକ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କଲେ ଅଶେଷ ଫଳପ୍ରାପ୍ତି ହୋଇଥାଏ । ଏହି ଦିନ ପ୍ରସିଦ୍ଧ ଗଙ୍ଗାସାଗର ମେଳା ଅନୁଷ୍ଠିତ ହୁଏ । ପୁଣ୍ୟଲାଭ ଆଶାରେ ଲୋକେ ଗଙ୍ଗାସାଗରରେ ବୁଡ ପକାଇଥାନ୍ତି । କୁହାଯାଏ ମକର ସଂକ୍ରାନ୍ତି ଦିନ ଗଙ୍ଗା ମାତା ରାଜା ଭଗିରଥୀଙ୍କ ପଛେ ପଛେ ଯାଇ କପିଳ ମୁନିଙ୍କ ଆଶ୍ରମ ଦେଇ ସାଗରରେ ମିଶିଥିଲେ । ତେଣୁ ଏହି ଦିନରେ ଗଙ୍ଗାସାଗର ମେଳା ହୋଇଥାଏ । ଏହି ଦିନ ସୂର୍ଯ୍ୟଦେବ ନିଜ ପୁତ୍ର ଶନିଙ୍କୁ ଭେଟିବାକୁ ସ୍ୱୟଂ ତାଙ୍କ ଘରକୁ ଯାଇଥିଲେ । ମାଆ ଯଶୋଦା ଶ୍ରୀକୃଷ୍ଣଙ୍କୁ ପ୍ରାପ୍ତ କରିବା ପାଇଁ ଏହି ଦିନ ବ୍ରତ ରଖିଥିଲେ ।

ମକର ସଂକ୍ରାନ୍ତି ଦିନ ଭିନ୍ନ ଭିନ୍ନ ଖାଦ୍ୟ ସହିତ ଖେଚୁଡି ତିଆରି କରିବା ଓ ଖାଇବାର ବିଶେଷ ମହତ୍ତ୍ୱ ଥାଏ । ଏହାକୁ ଅନେକ ସ୍ଥାନରେ ଖେଚୁଡି ପର୍ବ ମଧ୍ୟ କୁହାଯାଏ । ଚାଉଳକୁ ଚନ୍ଦ୍ରମାର ପ୍ରତୀକ ବୋଲି କୁହାଯାଏ ଓ ବିରି ଡାଲିକୁ ଶନିଙ୍କ ପ୍ରତୀକ ବୋଲି କୁହାଯାଏ । ସବୁଜ ପନି ପରିବା ବୁଧଙ୍କ ସହିତ ସମ୍ବନ୍ଧ ରଖେ । ମାନ୍ୟତା ଅଛି– ଖେଚୁଡିର ଉତ୍ତାପ ମଙ୍ଗଳ ଓ ସୂର୍ଯ୍ୟଙ୍କ ସହିତ ଜଡିତ । ସେଥିପାଇଁ ମକର ସଂକ୍ରାନ୍ତି ଦିନ ଖେଚୁଡି ଖାଇବା ଦ୍ୱାରା ରାଶିରେ ଗ୍ରହଗୁଡିକର ସ୍ଥିତି ମଜବୁତ୍ ହୋଇଥାଏ । ନୂଆ ଚାଉଳର ପ୍ରସ୍ତୁତ ଖେଚୁଡି ଖାଇଲେ ବର୍ଷସାରା ଆରୋଗ୍ୟତା ମିଳେ ।

ମକର ସଂକ୍ରାନ୍ତି ବେଳକୁ ଓଡିଶାରେ ଧାନ, ଆଖୁ ଆଦି ନୂଆ ଫସଲ ଅମଳ ହୋଇଥାଏ । ତେଣୁ ନୂଆ ଧାନରୁ ପ୍ରସ୍ତୁତ ଅପକ୍ୱ ଅରୁଆ ଚାଉଳ, ନୂଆ ଗୁଡ, ଛେନା, ନଡିଆ କୋରା, ପାଚିଲା କଦଳୀ, ସେଓ, କାଜୁ, କିସ୍‌ମିସ୍, କ୍ଷୀର ଇତ୍ୟାଦି ଏକତ୍ର ମିଶାଇ ଗୋଳାଇ ଗୋଟିଏ ସୁମିଷ୍ଟ ଭୋଗ ପ୍ରସ୍ତୁତ କରି ଗୃହ ଦେବତାଙ୍କୁ ଓ ଧାନ ଖଳାରେ ପୂଜା କରାଯାଏ । ରାଶିକୁ ବାଟି ଅରୁଆ ଚାଉଳ, ଗୁଡ, ନଡିଆ ମିଶାଇ ଏକ ପ୍ରକାର କ୍ଷୀରି ବା ଜାଉ ପ୍ରସ୍ତୁତ କରାଯାଏ । ତାକୁ ମକର ଜାଉ କୁହାଯାଏ । ମକର ଚାଉଳକୁ ପରସ୍ପର ମଧ୍ୟରେ ବାଣ୍ଟି ମିତ୍ରତା ସ୍ଥାପନ କରାଯାଏ ଏବଂ ନିଜ ମଧ୍ୟରେ ମକର ଡକାଡକି ହୁଅନ୍ତି । ସୂର୍ଯ୍ୟଙ୍କ ଯୋଗୁଁ କୃଷି କ୍ଷେତ୍ରରେ ଶସ୍ୟ ଉତ୍ପନ୍ନ ହେଉଥିବାରୁ କୃଷକମାନେ ମକର ସଂକ୍ରାନ୍ତିର ପୁଣ୍ୟକାଳରେ ସୂର୍ଯ୍ୟ ଦେବତାଙ୍କୁ ପୂଜାର୍ଚ୍ଚନା କରିଥାନ୍ତି । ପିଠାପଣା ମଧ୍ୟ ହୁଏ । ଓଡିଶାର ପ୍ରତି ଘରେ ଘରେ ଏ ପର୍ବ ପାଳନ କରାଯାଏ ।

ମକର ସଂକ୍ରାନ୍ତି ଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ମଙ୍ଗଳ ଆଳତି ଓ ଅବକାଶ ନୀତି ବଢିବା ପରେ ଶ୍ରୀଜୀଉମାନଙ୍କର ପଟା ପହରଣ (ପତଳା ସୂତାର ଜାଲିକନା) ଲାଗି କରାଯିବା ପରେ ତ୍ରିମୁଣ୍ଡିରେ ମକର

ଚୂଳ ଲାଗି ହୋଇଥାଏ । ଏହା ପରେ କର୍ପୂର ଲାଗି ହୋଇ ଶ୍ରୀବିଗ୍ରହମାନଙ୍କର ବେଶ ବଢିଥାଏ । ଗୋପାଳବଲ୍ଲଭ ଓ ସକାଳ ଧୂପ ନୀତି ବଢିବା ପରେ ମଇଲମ, ମହାସ୍ନାନ, ସର୍ବାଙ୍ଗ ଲାଗି, ନୂଆ ଲୁଗା ଲାଗି, ମାଳଚୂଳ ଲାଗି ହେବା ପରେ ୬ ମୂର୍ତ୍ତି ଅଳଙ୍କାର ଲାଗି ହୋଇ ମକର ବେଶ ବଢିଥାଏ । ଘଣ୍ଟ, ଛତା, କାହାଳୀ ପଟୁଆର ସହିତ ତଳୁଛ ଓ ପ୍ରଧାନୀ ସେବକଙ୍କ ହାତ ପୈଠ ହୋଇ ରୋଷ ଘରଠାରୁ ଭୋଗ ଶ୍ରୀଛାମୁଙ୍କୁ ଆସିଥାଏ । ଭୋଗଟେରା (ଭୋଗ ପୂଜା ସମୟରେ ସାଧାରଣ ପ୍ରବେଶ ନିରୋଧ କରିବାକୁ ଶ୍ରୀମନ୍ଦିର ଭିତରେ କଳାହାଟ ଦ୍ୱାର ସମ୍ମୁଖରେ ବନ୍ଧା ହେଉଥିବା କନାର ଲୁଗା) ବନ୍ଧା ହେବା ପରେ ଦିଗପାଳବଳି ନୀତି ହୋଇଥାଏ । ଭୋଗ ବାଢିବା ପରେ ପାଣି ପଡି ଧୋପଖାଳ (ଲୋକମାନଙ୍କୁ ବାହାର କରାଯାଇ ଭୋଗ ବଢାଯିବା ସ୍ଥାନ ଧୂଆ ହୋଇ ପରିଷ୍କାର କରାଯିବା) ହୋଇ ଟେରା ବନ୍ଧାଯାଏ । ଏହା ମଧ୍ୟରେ ମକର ଚାଉଳ ପ୍ରସ୍ତୁତି ନିମନ୍ତେ ରୋଷ ଘରକୁ ଗୋଦାମରୁ ନଡିଆ, ଘିଅ, ମିଠା, ମସଲା, କ୍ଷୀର ସରମାନ ଅଣାଯାଇଥାଏ । ହାଣ୍ଡିକୁଡୁଆ ଇତ୍ୟାଦି ସଜଡା ଯାଇଥାଏ । ଶୁଦ୍ଧ ସୁଆର ସେବକ ଏହି ଦ୍ରବ୍ୟଗୁଡିକରେ ମକର ଚାଉଳ ପ୍ରସ୍ତୁତ କରି ରଖିଥାନ୍ତି। ପୂର୍ବ ଦିନରୁ ଭୋଗ ମଣ୍ଡପ ଘରେ ଶୁଦ୍ଧପୂତ ଭାବେ ଅଧିବାସ ହୋଇ ରଖା ଯାଇଥିବା ମକର ଚାଉଳକୁ ପନ୍ତିବଡୁ (ଶ୍ରୀଛାମୁରେ କୋଠ ଭୋଗ ବାଢିବା ସେବକ) ସେବକମାନେ ମୁହଁରେ ବାଘମୁହଁ (ଭୋଗ ନେବା ବେଳେ ପାଟିରୁ ଛେପ ନ ପଡିବା ପାଇଁ ମୁହଁରେ ବନ୍ଧା ଯାଉଥିବା କନା), ବାନ୍ଧି ଘଣ୍ଟ, ଛତା, କାହାଳୀ, ପଟୁଆରେ ଚିଳଛୁଆଁ ସହ ମୁଖ୍ୟ ମନ୍ଦିରକୁ ତିନିଥର ପରିକ୍ରମା କରି ଶ୍ରୀଛାମୁରେ ପନ୍ତି ବାଢିଥାନ୍ତି । ଏହା ପରେ ମହାଭୋଇ (ଶ୍ରୀମନ୍ଦିର ମୁଖ୍ୟ ଗଉଡ ସେବକ) କ୍ଷୀର ଗୁଡିଆ ଶାକର ସବୁକୁ ଏକ ଥର ବଡଦେଉଳ ପରିକ୍ରମା କରି ଜୟ ବିଜୟ ଦ୍ୱାରଠାରେ ମହାସୁଆରଙ୍କ ଜିମା ଦେଲେ ମହାସୁଆର ତାକୁ ନେଇ ଶ୍ରୀଛାମୁରେ ବାଢିଥାନ୍ତି। ହଡପ ନାୟକ ସେବକ (ପନା ଯୋଗାଉଥିବା ସେବକ) ହଡପ ନେଇ ମହା ସୁଆରକୁ ଦେଇ ଥାଆନ୍ତି । ମୁଦିରସ୍ତ ସେବକ ପ୍ରସାଦ ଲାଗି କରିବା ପରେ ତିନି ବାଡରେ ତିନି ପୂଜାପଣ୍ଡା ପଞ୍ଚୋପଚାରରେ ମଣୋହି କରାନ୍ତି । ଭୋଗପରେ ଶ୍ରୀଜୀଉମାନଙ୍କୁ ବନ୍ଦାପନା କରାଯାଏ । ଏ ସମ୍ପର୍କରେ ସ୍କନ୍ଦ ପୁରାଣର ବିଷ୍ଣୁ ଖଣ୍ଡରେ ଉଲ୍ଲେଖ ରହିଛି ଯେ ମହର୍ଷି କଶ୍ୟପ ପୂର୍ବ କଳ୍ପରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରୀତି ନିମନ୍ତେ ଶ୍ରୀମନ୍ଦିରରେ ଏହି ମହୋତ୍ସବ ପାଳନ କରିଥିଲେ । ଜଗମୋହନରେ ଶ୍ରୀଜୀଉଙ୍କର ଅର୍ପିତ ଅମୃତୋଗମ ମକରଚାଉଳ ମକରାନ୍ନ କୈବଲ୍ୟ ବା ମକର ଭୋଗ ଲାଭ କରିବା ନିମନ୍ତେ ଭକ୍ତମାନଙ୍କର ପ୍ରବଳ ଆଗ୍ରହ ଦେଖାଯାଏ । ହିନ୍ଦୁ ଧର୍ମ ବିଶ୍ୱାସ ଅନୁସାରେ ମକର ସଂକ୍ରାନ୍ତି ଦିନ ଜଗନ୍ନାଥ ଦର୍ଶନରେ ରାଜସୂୟ ଯଜ୍ଞର ଫଳପ୍ରାପ୍ତି ହୋଇଥାଏ ।

ଓଡିଶାର ଉତ୍ତରାଞ୍ଚଳରେ ବିଶେଷତଃ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ଆଦିବାସୀମାନଙ୍କର ମକରଯାତ୍ରା ଏକ ପ୍ରଧାନ ପର୍ବ । ସେମାନେ ଏହି ପର୍ବକୁ ଟୁସୁ ପରବ ରୂପେ ପାଳନ କରନ୍ତି । ଅତ୍ରି ଉଷ୍ମ ପ୍ରସବଣ ପୀଠରେ ଅନୁଷ୍ଠିତ ହୋଇଥାଏ । ଶ୍ରୀ ଶ୍ରୀ ହଟକେଶ୍ୱରଙ୍କର ମକର ଯାତ୍ରା । ଏହି ଦିନ ନୀଳାମ୍ବୁ ଚିଲିକାର କାଳିଜାଈ ପୀଠରେ ମକର ଯାତ୍ରା ହୁଏ । ଶ୍ରୀଶ୍ରୀଲିଙ୍ଗରାଜ ମହାପ୍ରଭୁଙ୍କ ସମେତ ବିଭିନ୍ନ ପୀଠରେ ଦେବଦେବୀଙ୍କର ବନ୍ଦାପନା ଓ ମକର ଚାଉଳ ଲାଗି ହୁଏ । ପୁରପଲ୍ଲୀରେ ମକର ଚାଉଳ ଓ ସୂର୍ଯ୍ୟ ପୂଜା କରାଯାଏ । ମାଣିତ୍ରୀଠାରେ ମକର ମେଳା, କେନ୍ଦୁଝର, ବଣାଇ, ରାଜଗାଙ୍ଗପୁର ଓ ଢେଙ୍କାନାଳର ନାଧରାରେ ମକର ମେଳା ହୁଏ । ଝଙ୍କଡର ଶାରଳା ପୀଠରେ ରାମଚଣ୍ଡୀ ପୀଠ ନିରାକାରପୁର, ଘୁମୁସର, କୁଚିଣ୍ଡା, ଖୋର୍ଦ୍ଧା, ଶରଣକୂଳ ବାଙ୍କୋଇ, ବଉଳାବନ୍ଧ ମାଣ୍ଡିଆମେରୁ ବାରାହୀଙ୍କଠାରେ ଓ ଚିତ୍ରୋତ୍ପଳା ନିକଟସ୍ଥ ଗଦାଧର ଗୋସ୍ୱାମୀ ପୀଠରେ କଟକର ଧବଳେଶ୍ୱର ମନ୍ଦିରରେ ମକର ଯାତ୍ରା ଅନୁଷ୍ଠିତ ହୁଏ । ବଜ୍ରକାଳୀ ପୀଠରେ ପାଞ୍ଚଦିନ ଧରି ଯାତ୍ରା, ଭକ୍ତାନନ୍ଦ ଆଶ୍ରମରେ ଚୂଡା ପଖାଳ ଭୋଗ, ପୋଡାଡିହ ଶମୀ ବୃକ୍ଷ ମୂଳେ ଚାରିଦିନ ବ୍ୟାପି ମେଳା ମହୋତ୍ସବ ହୋଇଥାଏ । ଭୀମକୁଣ୍ଡଠାରେ ବୈତରଣୀରେ ପବିତ୍ର ସ୍ନାନ ଶ୍ରୀ କୁଣ୍ଡେଶ୍ୱର ଦର୍ଶନ, ଗଞ୍ଜାମ ସିଦ୍ଧିପୁର ବାରାହୀ ତାରାତାରିଣୀ, ମହୁରୀ, କାଳିଆ ମନ୍ତ୍ରୀ ଏକାଙ୍ଗୀ

ଭୈରବୀ ଦେବୀଙ୍କ ଯାତ୍ରା । ଲକ୍ଷ୍ମଣେଶ୍ୱର ପୀଠରେ, ଖଣ୍ଡାଧାର ଜଳପ୍ରପାତଠାରେ ମକର ବୁଡ ଓ ଯାତ୍ରା । ପୁରୀ ସାତଶଙ୍ଖ ଉତ୍ତରାୟଣୀ ପୀଠରେ ବନ୍ଦାପନା, ଜଗତସିଂହପୁର ଓଳକଣା ଓ ତିରାଠାରେ ପାଞ୍ଚଦିନ ମକର ଯାତ୍ରା ହୁଏ । ଅପଣ୍ଡରାଗୋଡା ଗାଦି ବ୍ରହ୍ମପ୍ରାଙ୍ଗଣରେ ମକର ଯାତ୍ରା, ଭୁବନେଶ୍ୱର ନିକଟ ବରିମୁଣ୍ଡ ଗ୍ରାମରେ ବିଜେ ଶ୍ରୀ ଶ୍ରୀ ରଘୁନାଥ ଦେବଙ୍କର ଅଲଣା ଓଷା । ଘଟ ଗାଁ ମା' ତାରିଣୀଙ୍କର ସୁନାବେଶ । ଫୁଲବାଣୀ କରିଙ୍ଗ ଆଶ୍ରମରେ ମକରମେଳା ଅନୁଷ୍ଠିତ ହୁଏ ।

ଓଡିଶା ବ୍ୟତୀତ ଭାରତର ବିଭିନ୍ନ ରାଜ୍ୟରେ ଛତିଶଗଡ, ଗୋଆ, ବିହାର, ଝାରଖଣ୍ଡ, ଆନ୍ଧ୍ରପ୍ରଦେଶ, ତେଲେଙ୍ଗାନା, କର୍ଣ୍ଣାଟକ, ମଣିପୁର, ମଧ୍ୟପ୍ରଦେଶ, ରାଜସ୍ଥାନ ଓ ସିକ୍କିମ ଆଦି ରାଜ୍ୟରେ ମକର ସଂକ୍ରାନ୍ତି ପାଳନ କରାଯାଏ । ଦକ୍ଷିଣ ଭାରତରେ ଏହି ଦିନ ତାମିଲ୍ ନୂଆବର୍ଷ ପାଳନ ହେଉଥିବାରୁ ଏହା ''ଥାଇପୋଙ୍ଗଲ' ନାମରେ ପରିଚିତ । ସିନ୍ଧି ଲୋକେ ଏହାକୁ 'ତିରମୌରୀ' କହୁଥିବା ବେଳେ ଗୁଜୁରାଟରେ 'ଉତ୍ତରାୟଣ' ଏବଂ ଉତ୍ତରାଖଣ୍ଡରେ 'ଉତ୍ତରାୟଣୀ' ବୋଲି କୁହାଯାଏ । ଉତ୍ତର ପ୍ରଦେଶ ଓ ପଶ୍ଚିମ ବିହାରରେ ଖେଚୁଡି ସଂକ୍ରାନ୍ତି , ହରିଆନା ହିମାଚଳ ପ୍ରଦେଶ ଏବଂ ପଞ୍ଜାବରେ ଏହାର ନାମ ମାଘି । ବଙ୍ଗୀୟମାନେ ଏହାକୁ ପୌଷ ସଂକ୍ରାନ୍ତି ନାମରେ ପାଳନ କରନ୍ତି । ମହାରାଷ୍ଟ୍ରରେ ତିଲ୍ ଗୁଡ ଭାବେ ତିନିଦିନ ଧରି ଉତ୍ସବ ପାଳନ କରାଯାଏ ।

କେବଳ ଏହି ପୂଜାର୍ଚ୍ଚନାରେ ମକର ସଂକ୍ରାନ୍ତି ପାଳନ ନୁହେଁ, ଏହି ଦିନ ଗୁଡି ଉଡେଇବା ମଧ୍ୟ ଅନ୍ୟତମ ପରମ୍ପରା । ଭଗବାନ ଶ୍ରୀରାମ ଗୁଡିଉଡା ଆରମ୍ଭ କରିଥିଲେ ବୋଲି ତୁଳସୀ ଦାସଙ୍କ ରାମଚରିତ ମାନସରେ ବର୍ଣ୍ଣିତ ଅଛି । ହନୁମାନଙ୍କୁ ପମ୍ପାପୁରରୁ ଡକାଯାଇଥିଲା । ସେତେବେଳେ ସେ ଶିଶୁ ରୂପରେ ଥିଲେ । ମକର ସଂକ୍ରାନ୍ତି ଦିନ ସେ ଆସିଥିଲେ ଏବଂ ଶ୍ରୀରାମ ଭାଇମାନଙ୍କ ସହିତ ମିଶି ଗୁଡି ଉଡାଇଲେ । କୁହାଯାଏ – ଏହି ଗୁଡି ଉଡି ଉଡି ଯାଇ ଦେବଲୋକରେ ପହଞ୍ଚି ଯାଇଥିଲା । ଏହାକୁ ଦେଖି ଇନ୍ଦ୍ରପୁତ୍ର ଜୟନ୍ତଙ୍କ ପତ୍ନୀ ମୁଗ୍ଧ ହୋଇଯାଇଥିଲେ । ତେଣୁ ଗୁଡି ଉଡାଇ ଦେବଲୋକ ପର୍ଯ୍ୟନ୍ତ ପହଞ୍ଚାଇଥିବା ବ୍ୟକ୍ତିଙ୍କୁ ଦର୍ଶନ କରିବା ପାଇଁ ସେ ଗୁଡିଟିକୁ ଧରି ବସିଲେ । ଶ୍ରୀରାମଙ୍କ ନିର୍ଦ୍ଦେଶରେ ହନୁମାନ ଗୁଡି ଖୋଜିବା ପାଇଁ ଇନ୍ଦ୍ରଲୋକରେ ପହଞ୍ଚିଲେ । ଶ୍ରୀରାମ ଏହି ଗୁଡିଟି ଉଡେଇ ଥିବାର ଶୁଣି ଦର୍ଶନ କରିବାକୁ ଇଚ୍ଛା କଲେ ଜୟନ୍ତଙ୍କ ପତ୍ନୀ । ପରେ ଚିତ୍ରକୂଟରେ ଶ୍ରୀରାମ ଦର୍ଶନ ଦେବେ ବୋଲି କହିବାରୁ ହନୁମାନ ଗୁଡି ଧରି ଫେରିଲେ । ଏହି ପ୍ରସଙ୍ଗରୁ ମକର ସଂକ୍ରାନ୍ତିରେ ଗୁଡି ଉଡା କେତେ ପ୍ରାଚୀନ ତାହା ଜଣାପଡେ ।

ମକର ସଂକ୍ରାନ୍ତି କେବଳ ଏକ ପର୍ବ ନୁହେଁ, ଭାଇଚାରା ସୃଷ୍ଟି କରିବା ସହିତ ସ୍ନେହ ପ୍ରେମର ବାର୍ତ୍ତା ପ୍ରଦାନ କରିବା କ୍ଷେତ୍ରରେ ଏହାର ପ୍ରମୁଖ ଭୂମିକା ରହିଛି । ରୀତିନୀତି ସହିତ ଜଡିତ ପ୍ରତ୍ୟେକ ହିନ୍ଦୁ ଏହି ପର୍ବ ପାଳନ କରିଥାନ୍ତି ।

ଦେଉଳବେଡା କଲୋନୀ
ତାଳଚେର, କ୍ୱାର୍ଟର ନଂ – ୧ ବି – ୨୦
ପିନ୍ – ୭୫୯୧୦୨, ତାଳଚେର



# ବିଶ୍ୱ ମହାତ୍ମା–ଗାନ୍ଧିଜୀ

**ଅଧ୍ୟାପକ ପବିତ୍ର ମୋହନ ବାରିକ**

ବିଶ୍ୱର ଆଲୋକ, ଜାତିର ଜନକ, କୋଟି ହୃଦୟର ପଦକ ମହାତ୍ମା ଗାନ୍ଧୀ ଜଣେ ମହାନୁଭବୀ ମହାମାନବ । ଏହି ପ୍ରଣମ୍ୟ ମହାପୁରୁଷଙ୍କ ଶହେ ପଚାଶତମ ଜନ୍ମ ବାର୍ଷିକୀକୁ ଆଜି ସମଗ୍ର ବିଶ୍ୱ ଶ୍ରଦ୍ଧା ଓ ସମ୍ମାନର ସହିତ ପାଳନ କରୁଛି । ଗାନ୍ଧିଜୀ କେବଳ ଏକ ନାମ ତାହା ନୁହେଁ, ଏହା ଏକ ଆନ୍ଦୋଳନ, ବିଚାରଧାରା, ବ୍ୟବସ୍ଥା, ତତ୍ତ୍ୱ ଓ ମତବାଦ । ଗାନ୍ଧୀ ଗୋଟିଏ ଜାତିର ଜନକ ଭାବରେ ସୀମାବଦ୍ଧ ନୁହଁନ୍ତି, ସେ ସାରା ବିଶ୍ୱର ମାନବାଦର୍ଶୀ । ଗାନ୍ଧିଜୀଙ୍କର ଚିନ୍ତାଧାରା, ଆଦର୍ଶ, ଦର୍ଶନ, ତତ୍ତ୍ୱ , ଜୀବନଶୈଳୀ, ଚେତନା, ଭାବନା ଓ କାର୍ଯ୍ୟଶୈଳୀ ପ୍ରଭୃତି ବିଶ୍ୱରେ ଏକ ଅଭିନବ ମତବାଦକୁ ଜନ୍ମ ଦେଇଛି, ଯାହା ଗାନ୍ଧୀବାଦ ନାମରେ ଅଧିକ ପରିଚିତ ଏବଂ ସର୍ବଜନ ଆଦୃତ । ଗାନ୍ଧୀବାଦ ବିଶ୍ୱର ଆକର୍ଷଣର କେନ୍ଦ୍ର ବିନ୍ଦୁ । ଅହିଂସା ତାଙ୍କର ପରମ ଧର୍ମ, ସତ୍ୟ ତାଙ୍କ ପାଇଁ ସିଦ୍ଧାନ୍ତ ଓ ମାନବ ଧର୍ମର ସେ ଥିଲେ ଅଦ୍ୱିତୀୟ ଦେବଦୂତ । ଭାରତୀୟ ମୁକ୍ତି ସଂଗ୍ରାମରେ ସେ ପରୀକ୍ଷା କରିଥିବା ଓ ସଫଳତା ପାଇଥିବା ଅହିଂସା ଆନ୍ଦୋଳନ ଆଜି ବିଶ୍ୱର ମାର୍ଗ ଦର୍ଶକ ରୂପେ ସ୍ୱୀକୃତି ଲାଭ କରିଛି । ଗାନ୍ଧୀ ନିଜେ ଥିଲେ ନିଜର ପରିଚୟ । ତାଙ୍କ ଜୀବଦଶାରେ ଓ ଆବର୍ତ୍ତନରେ କେତେ ଗ୍ରହଣୀୟ ଥିଲେ, ଏହାର ପ୍ରମାଣର କୌଣସି ଆବଶ୍ୟକତା ନାହିଁ । ମିଳିତ ଜାତିସଂଘ ୨୦୦୭ ମସିହା ସାଧାରଣ ଅଧିବେଶନରେ ମହାତ୍ମା ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନକୁ ସ୍ୱୀକୃତି ପ୍ରଦାନ କରି ତାଙ୍କ ଜନ୍ମ ଦିବସକୁ ଅନ୍ତର୍ଜାତୀୟ ଅହିଂସା ଦିବସ ରୂପେ ପାଳନ କରିବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ପ୍ରତିବର୍ଷ ଅକ୍ଟୋବର ଦୁଇ ତାରିଖ ଗାନ୍ଧୀ ଜୟନ୍ତୀକୁ ସମଗ୍ର ବିଶ୍ୱ ଅହିଂସା ଦିବସ ରୂପେ ପାଳନ କରୁଛି । ଗାନ୍ଧୀବାଦର ବିଚାରଧାରାକୁ ସମଗ୍ର ବିଶ୍ୱ ଆଜି ଆପଣାର କରିନେଇଛି । କିଛି ବିଦ୍ୱାନ ଗାନ୍ଧୀଙ୍କୁ ବିଶ୍ୱର ବିସ୍ମୟ ରୂପେ ଅଭିହିତ କରୁଥିବା ବେଳେ ଅନ୍ୟ କିଛି ଗବେଷକମାନଙ୍କ ମତରେ ଗାନ୍ଧୀ ଜଣେ ଅସାଧାରଣ ବ୍ୟକ୍ତି ଅବା ବିରଳ ବ୍ୟକ୍ତିତ୍ୱ କେବଳ ନଥିଲେ ବରଂ ସେ ଏକ ତତ୍ତ୍ୱ ଓ ବିଚାରଧାରା ଥିଲେ । ଗାନ୍ଧିଜୀ କେବଳ ଭାରତବର୍ଷର ଆଦର୍ଶ ନୁହଁନ୍ତି ସାରା ବିଶ୍ୱ ସମୁଦାୟର ପଥପ୍ରଦର୍ଶକ । ଗାନ୍ଧିଜୀଙ୍କର ବ୍ୟକ୍ତିତ୍ୱ, ନେତୃତ୍ୱ, ଆଦର୍ଶ ଓ ତ୍ୟାଗ ପାଇଁ ସମଗ୍ର ଭାରତବର୍ଷର ଜନସାଧାରଣ ତାଙ୍କୁ ମହାତ୍ମା ବୋଲି ସମ୍ବୋଧନ କରୁଛନ୍ତି । କେବଳ ଭାରତୀୟମାନେ ନୁହଁନ୍ତି ବିଦେଶର ବହୁ ସୁନାମଧନ୍ୟ ବ୍ୟକ୍ତିତ୍ୱ ଗାନ୍ଧିଜୀଙ୍କର ପ୍ରେମରେ ବିମୋହିତ । ଅଦ୍ୱିତୀୟ ଗାନ୍ଧିଜୀଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱରେ ବିଦେଶୀ ନାଗରିକମାନେ ପ୍ରଭାବିତ ଓ ଅନୁପ୍ରାଣିତ । ବିଦେଶରେ ଗାନ୍ଧିଜୀଙ୍କର ପ୍ରତିଭା କେତେ ପ୍ରଭାବଶାଳୀ ଥିଲା ଏକ ଛୋଟ ଉଦାହରଣରୁ ସହଜରେ ଏହା ଅନୁମେୟ ହୁଏ । ୧୯୩୦ ମସିହାରେ ଇଂଲଣ୍ଡର ଭାରତ ସଚିବ ଯେକି ଜଣେ କ୍ୟାବିନେଟ୍ ମନ୍ତ୍ରୀ ତାଙ୍କର ପରାମର୍ଶଦାତା ସାର୍ ଅବଦୁଲ୍ କାଦିର୍ ଅଷ୍ଟ୍ରିଆର ରାଜଧାନୀ ଭିଏନା ନଗରୀ ଯାଇଥିଲେ । ସେ ଭିଏନାର ଏକ ରେଷ୍ଟୁରାଣ୍ଟକୁ ଯାଇ ଟେବୁଲରେ ବସି ଖାଇବା ତାଲିକାରେ ଆଖି ପକାଉଥିବା ବେଳେ ଏକ ଯୁବ ପରିଚାଳକ ତାଙ୍କ ପାଖକୁ ଆସି କ’ଣ ଖାଇବେ ପଚାରିବା

ପରିବର୍ତ୍ତେ ସେ ପ୍ରଶ୍ନ କରିଥିଲେ ଆପଣ କ'ଣ ଗାନ୍ଧିଜୀଙ୍କ ଦେଶରୁ ଆସିଛନ୍ତି । ସାର୍ ଅବଦୁଲ୍ କାଦିର୍ କହିଲେ– ମୁଁ ଗାନ୍ଧୀଙ୍କ ଦେଶରୁ ଆସିଛି, ତାଙ୍କୁ ଦେଖିଛି ଓ ତାଙ୍କ ସହିତ ବହୁବାର କଥା ହୋଇଛି । ତତ୍‌କ୍ଷଣାତ ଯୁବ ପରିଚ଼ାଳକ ଆନନ୍ଦରେ ବିଭୋର ଓ ଉତ୍‌ଫୁଲ୍ଲିତ ହୋଇ କହିଲେ– ମୁଁ ନିଜକୁ ବହୁତ ଭାଗ୍ୟବାନ ଓ ଗୌରାବାନ୍ୱିତ ମନେ କରୁଛି ଯେ ଗାନ୍ଧୀଙ୍କୁ ଦେଖିଥିବା ଓ ତାଙ୍କ ସହିତ କଥା ହୋଇଥିବା ଜଣେ ବ୍ୟକ୍ତିଙ୍କୁ ମୁଁ ଦେଖୁଛି ଓ ତାଙ୍କ ସହିତ କଥା ହେଉଛି । ୧୯୩୯ ମସିହାରେ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ସଂପାଦନରେ ଏକ ସାରଗର୍ଭକ ଓ ତତ୍ତ୍ୱ ଦର୍ଶନ ସମ୍ବଳିତ ଏକ ବିରଳ ପୁସ୍ତକ ପ୍ରକାଶିତ ହୋଇଥିଲା । ଗାନ୍ଧିଜୀଙ୍କର ୭୦ତମ ଜନ୍ମବାର୍ଷିକୀ ଉପଲକ୍ଷେ ଏହି ପୁସ୍ତକ ପ୍ରକାଶିତ ହୋଇଥିଲା । ଆମେରିକାର ସୁନାମଧନ୍ୟ ପାଦ୍ରୀ ଜନ୍ ହେନ୍ସ୍ ହୋମ୍ସଙ୍କ ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ସେହି ପ୍ରବନ୍ଧରେ ସେ ଉଲ୍ଲେଖ କରିଛନ୍ତି– ''୨୦ ବର୍ଷ ତଳେ ଯେତେବେଳେ ମୁଁ ଘୋଷଣା କରିଥିଲି ଗାନ୍ଧୀ ବିଶ୍ୱର ସର୍ବଶ୍ରେଷ୍ଠ ବ୍ୟକ୍ତି, ସେତେବେଳେ ମୋ କଥାକୁ କେହି ବିଶ୍ୱାସ କରି ନଥିଲେ । ସେତେବେଳେ ପାଶ୍ଚାତ୍ୟ ଦେଶ ତାଙ୍କୁ ଭଲ ଭାବରେ ବୁଝିପାରି ନଥିଲେ । ଆଜି କିନ୍ତୁ ସେ ସମଗ୍ର ପୃଥିବୀରେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଭାବରେ ପ୍ରସିଦ୍ଧିଲାଭ କରିଛନ୍ତି । ଗାନ୍ଧିଜୀ ଦାର୍ଶନିକ, ଋଷି, ସାଧୁ, ସନ୍ଥ ନଥିଲେ । ସେ କୌଣସି ପୁସ୍ତକ ବା କବିତା ଲେଖି ପ୍ରସିଦ୍ଧି ଅର୍ଜନ କରିନଥିଲେ । ତାଙ୍କ ଚ଼େହେରାରେ ସେଭଳି କୌଣସି ଆକର୍ଷଣ ନଥିଲା । କିନ୍ତୁ ଗୋଟିଏ ଦେଶର ଯୋଗ୍ୟ ନାଗରିକ ହେବା ପାଇଁ ଯାହା–ଯାହା ଆବଶ୍ୟକ ସେ ଭାରତ ସମେତ ସମଗ୍ର ବିଶ୍ୱକୁ ଜଣାଇଥିଲେ'' । ନ୍ୟାୟ ଓ ଉଦାରବାଦ ପରି ଦୁଇଟି ପାଶ୍ଚାତ୍ୟ ବିଚ଼ାରଧାରାକୁ ମାନବବାଦର ଆୟୁଧ ରୂପେ ବ୍ୟବହାର କରିଥିଲେ ଗାନ୍ଧିଜୀ । ତାଙ୍କ ପ୍ରଣୋଦିତ ଅହିଂସା ଆନ୍ଦୋଳନ ରାଜନୈତିକ ସୀମା ଓ ସରହଦ ଅତିକ୍ରମ କରି ବିଶ୍ୱରେ ବ୍ୟାପକ ଭାବରେ ବିସ୍ତାର ଲାଭ କଲା । ଯୁକ୍ତରାଷ୍ଟ୍ର ଆମେରିକାର ମାର୍ଟିନ୍ ଲୁଥର କିଙ୍ଗ୍ ଜାମ୍ବିଆର କେନିଥ୍ କାଉଣ୍ଡା, ଦକ୍ଷିଣ ଆଫ୍ରିକାର ଇନ୍‌କୋସି, ଆଲବର୍ଟ ଲୁଥାଲ, ନେଲ୍‌ସନ୍ ମଣ୍ଡେଲା ପ୍ରଭୃତି ବିଶ୍ୱର ବରେଣ୍ୟ ବ୍ୟକ୍ତିତ୍ୱ ଗାନ୍ଧୀଭକ୍ତ ଭାବରେ ଜଣାଶୁଣା । ୧୯୧୫ ମସିହାରେ ନୋବେଲ ପୁରସ୍କାର ବିଜୟୀ ବିଖ୍ୟାତ ସାହିତ୍ୟିକ ତଥା ଦାର୍ଶନିକ ରୋମାରୋଲାଁ ଗାନ୍ଧୀଙ୍କ ପ୍ରେମର ଜଣେ ଅନୁରକ୍ତ ଗୁଣଗ୍ରାହୀ । ରୋମାରୋଲାଁ ଜଣେ ଶାନ୍ତିକାମୀ, ସତ୍ୟବାଦୀ, ମାନବବାଦୀ ଓ ଈଶ୍ୱର ବିଶ୍ୱାସୀ ମହାନୁଭବ ଭାବରେ ୟୁରୋପ ମହାଦେଶରେ ଯଥେଷ୍ଟ ସୁନାମର ଅଧିକାରୀ ଥିଲେ । ଯୁଦ୍ଧର କୁ–ପରିଣାମ ସଂପର୍କରେ ସଫଳ ଜନମତ ସୃଷ୍ଟି କରିବା ଦିଗରେ ସମର୍ଥ ହୋଇଥିଲେ । ତାଙ୍କୁ ୟୁରୋପର ''ବିବେକ ଓ ନୈତିକ ଚ଼େତନା'' ବୋଲି କୁହାଯାଏ । ରୋମାରୋଲାଁ ଅନୁଭବ କରିଥିଲେ ପ୍ରଭୁ ଯୀଶୁ ପୁନର୍ବାର ଗାନ୍ଧୀ ମହାତ୍ମା ରୂପେ ଭାରତରେ ଆବିର୍ଭାବ ହୋଇଛନ୍ତି । ଗାନ୍ଧିଜୀଙ୍କର ସମସ୍ତ ନୀତି, ଆଦର୍ଶ ଓ ଚ଼ିନ୍ତାଧାରା ବିଷୟରେ ସଂପୂର୍ଣ୍ଣ ଅବଗତ ହୋଇ ରୋମାରୋଲାଁ ଦୃଢ଼ ନିଶ୍ଚିତ ହେଲେ ଗାନ୍ଧୀ ପ୍ରଭୁ ଯୀଶୁଙ୍କର ଅବତାର । ଭାରତବର୍ଷ, ଗାନ୍ଧିଜୀ ଓ ତାଙ୍କ ପ୍ରଣୀତ ଅହିଂସା ଆନ୍ଦୋଳନ ସଂପର୍କରେ ତଥ୍ୟ ସଂଗ୍ରହ କରି ଗାନ୍ଧୀଙ୍କ ସହିତ ପତ୍ର ମାଧ୍ୟମରେ ସଂପର୍କ ସ୍ଥାପନ କଲେ । ଭାରତବର୍ଷ ଭଗବାନଙ୍କର ଉତ୍ପତ୍ତିସ୍ଥଳ ଓ ଗାନ୍ଧିଜୀ ମାନବ ଜାତିର ନୂତନ ସମ୍ଭାବନା, ପଥ ପ୍ରଦର୍ଶକ, ଦିଗ୍‌ଦର୍ଶକ ପରି ରୋମାରୋଲାଁଙ୍କୁ ପ୍ରତୀୟମାନ ହେଲା । ରୋମାରୋଲାଁ ୧୯୨୪ ମସିହାରେ ଏକ କ୍ଷୁଦ୍ର ପୁସ୍ତକ ଗାନ୍ଧିଜୀଙ୍କ ସଂପର୍କରେ ପ୍ରକାଶ କରିଥିଲେ । ଉକ୍ତ ପୁସ୍ତକର ନାମ ଥିଲା ''ମହାତ୍ମା ଗାନ୍ଧୀ ଦି ଲିଡର ଅଫ୍ ଦି ୟୁନିଭରସାଲ ପିସ୍ ଏଣ୍ଡ ଲିବର୍ଟି'' । ଏହି ବହିଟି ବହୁ ଭାଷାରେ ଅନୁଦିତ ହୋଇ ସମଗ୍ର ୟୁରୋପରେ ଗାନ୍ଧିଜୀଙ୍କର ସ୍ୱତନ୍ତ୍ର ପରିଚ଼ୟ ସୃଷ୍ଟି କରିଥିଲା । ଭାରତ ପ୍ରତି ଓ ବ୍ୟକ୍ତିଗତ ଭାବେ ଗାନ୍ଧିଜୀଙ୍କ ପ୍ରତି ରୋମାରୋଲାଁଙ୍କ ସର୍ବଶ୍ରେଷ୍ଠ ଅବଦାନ ଥିଲା ମେଡେଲିନ୍ ସ୍ଲେଡ ବା ମୀରା ବେନ୍ । ମେଡେଲିନ୍ ସ୍ଲେଡ ଥିଲେ ସାର୍ ଏଡମଣ୍ଡ ସ୍ଲେଡ ନାମକ ଜୈନିକ ବ୍ରିଟିଶ୍ ସାମରିକ ଅଧିକାରୀଙ୍କ କନ୍ୟା ଏବଂ ରୋମାରୋଲାଁଙ୍କ ଛାତ୍ରୀ । ଗାନ୍ଧୀ ପ୍ରଭୁ ଯୀଶୁଙ୍କର ଅବତାର ଏକଥା ମେଡେଲିନ୍ ନିଜଗୁରୁ ରୋମାରୋଲାଁଙ୍କଠାରୁ ଶୁଣି ଭାରତ ଯାଇ ଗାନ୍ଧୀଙ୍କ

ସେବାରେ ନିଜକୁ ସମର୍ପିତ କରିବା ନିମନ୍ତେ ସିଦ୍ଧାନ୍ତ ନେଲେ । ପତ୍ର ମାଧ୍ୟମରେ ଏକଥା ଗାନ୍ଧିଜୀଙ୍କୁ ଜଣାଇ ଦିଆଗଲା । ମେଡେଲିନ୍‌ଙ୍କୁ ମୀରା ବେନ୍ ନାମ ପ୍ରଦାନ କରି ନିଜ କନ୍ୟାର ମାନ୍ୟତା ଦେଇ ଗାନ୍ଧିଜୀ ନିଜ ପାଖରେ ରଖିଲେ । ୧୯୨୫ ମସିହାରେ ମୀରା ବେନ୍ ଭାରତ ଆସି ସାବରମତି ଆଶ୍ରମରେ ଗାନ୍ଧିଜୀଙ୍କ ସେବାରେ ନିଜକୁ ହଜାଇଦେଲେ । ଭାରତର ସ୍ୱାଧୀନତା ସଂଗ୍ରାମରେ ମୀରା ବେନ୍‌ଙ୍କ ସକ୍ରିୟ ଯୋଗଦାନକୁ ଏ ଜାତି କେବେ ଭୁଲି ପାରିବ ନାହିଁ । ସାର୍ ରିଚାର୍ଡ଼ ଏଟେନବରୋଙ୍କ ଗାନ୍ଧୀ ଚଳଚ୍ଚିତ୍ର ପ୍ରଦର୍ଶନ ପରେ ଗାନ୍ଧୀବାଦର ଭାବଧାରା ପ୍ରତି ସାରା ବିଶ୍ୱ ସମୁଦାୟର ଯୁବ ଗୋଷ୍ଠୀଙ୍କ ମଧ୍ୟରେ ପ୍ରବଳ ଆଗ୍ରହ ପରିଲକ୍ଷିତ ହୋଇଥିଲା । ତାଙ୍କ ଚଳଚ୍ଚିତ୍ର ‘‘ଗାନ୍ଧୀ’’ ୧୯୮୩ ମସିହାରେ ଓସ୍କାର ପୁରସ୍କାର ପାଇବାରେ ସଫଳ ହୋଇଥିଲା । ଏଟେନବରୋ ଉଲ୍ଲେଖ କରିଥିଲେ ଅହିଂସା କେବେ ଜଣେ ଭୀରୁର ଅସ୍ତ୍ର ନୁହେଁ ଏହା ସାହସୀର ଆୟୁଧ ଅଟେ ।

ଆମେରିକାର ଯୁବପିଢ଼ି ପ୍ରଶ୍ନ କରିଥିଲେ ଯେ ଏପରି ଏକ ମହାନ ଆତ୍ମାଙ୍କ ସଂପର୍କରେ କାହିଁକି ଆମକୁ ଆଗରୁ କୁହାଯାଇନଥିଲା । ୧୯୩୦ ମସିହାରେ ଆମେରିକାର ଟାଇମ୍ ପତ୍ରିକା ଗାନ୍ଧୀଙ୍କୁ ସନ୍ଥ ଗାନ୍ଧୀ ଭାବରେ ଅଭିହିତ କରିବା ସହ ସେହି ବର୍ଷର ଶ୍ରେଷ୍ଠ ବ୍ୟକ୍ତିତ୍ୱ ରୂପେ ପ୍ରତିପାଦନ କରିଥିଲା । କାରଣ ସାମାନ୍ୟ ମୁଠାଏ ଲୁଣକୁ ଅସ୍ତ୍ର କରି ଗୋଟିଏ ଶକ୍ତିଶାଳୀ ସାମ୍ରାଜ୍ୟର ଅହଂକାରକୁ ଅହିଂସା ମାଧ୍ୟମରେ ଗାନ୍ଧୀ ଧୂଳିସାତ୍ କରିଥିଲେ । ବିଶ୍ୱ ପ୍ରସିଦ୍ଧ ନାଟ୍ୟକାର ବର୍ଣ୍ଣାଡ ଶ’ଙ୍କ ସହିତ ଗାନ୍ଧିଜୀଙ୍କର ସାକ୍ଷାତକାର ଥିଲା ଏକ ଐତିହାସିକ ଘଟଣା । ବର୍ଣ୍ଣାଡ ଶ’ କହିଥିଲେ– ଗାନ୍ଧିଜୀ ସାଧାରଣ ଉପାଦାନରେ ଗଢ଼ା ଏକ ମଣିଷ ନୁହଁନ୍ତି । ସେ ଏକ ବିସ୍ମୟ ତତ୍ତ୍ୱ । ନୋବେଲ୍ ପୁରସ୍କାର ବିଜେତା ଜର୍ଜ ବର୍ଣ୍ଣାଡ ଶ’ଙ୍କୁ ଗାନ୍ଧୀଙ୍କ ସମ୍ବନ୍ଧରେ ତାଙ୍କର କି ଧାରଣା ରହିଛି ବୋଲି ପ୍ରଶ୍ନ କରାଯାଇଥିଲା । ଉତ୍ତରରେ ସେ କହିଥିଲେ– ‘‘ହିମାଳୟ ଉପରେ କି ଧାରଣା ରହିଛି ମୋତେ ପଚାରି ପାରନ୍ତି । ହିମାଳୟ ଓ ଗାନ୍ଧିଜୀଙ୍କ ମଧ୍ୟରେ ଥିବା ବିଶାଳଧାରଣା ମଧ୍ୟରେ ସାମାନ୍ୟ ପ୍ରଭେଦ ନାହିଁ’’ ।

ପ୍ରସିଦ୍ଧ ବ୍ରିଟିଶ୍ ଚଳଚ୍ଚିତ୍ର ନିର୍ମାତା ତଥା ନିର୍ଦ୍ଦେଶକ ରିଚ଼ାର୍ଡ ସାମୁଏଲ୍ ଏଟେନ୍‌ବରୋ ଯେଉଁ ଗାନ୍ଧୀ ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ଏହା ଗାନ୍ଧିଜୀଙ୍କ ଜୀବନଧାରା ଉପରେ ପର୍ଯ୍ୟବସିତ ଥିଲା । ବହୁ ଦେଶର ଲୋକ ଏହାକୁ ଏକାଧିକ ବାର ଦେଖିଥିଲେ । ଏହି ବ୍ୟୟ ବହୁଳ ଚଳଚ୍ଚିତ୍ରର ସମସ୍ତ ଖର୍ଚ୍ଚ କେବଳ ଦକ୍ଷିଣ ଆଫ୍ରିକାରୁ ଭରଣା ହୋଇପାରିଥିଲା । ବ୍ରିଟେନ୍, ଆମେରିକା, ଭାରତ ସମେତ ଅନ୍ୟାନ୍ୟ ଦେଶରୁ ଏହି ଚଳଚ୍ଚିତ୍ରରୁ ଯେଉଁ ଆୟ ଆସିଲା ଏହା କେବଳ ପ୍ରଯୋଜକଙ୍କ ଲାଭ ଥିଲା ।

ଗାନ୍ଧୀବାଦ ଓ ଗାନ୍ଧିଜୀଙ୍କର ଜୀବନ ଦର୍ଶନ ପ୍ରତି ଥିବା ବିଶ୍ୱବାସୀଙ୍କର ଅତୁଟ ବିଶ୍ୱାସ ଏହ ଜ୍ୱଳନ୍ତ ପ୍ରମାଣ ଅଟେ । ଇଟାଲିର ତତ୍କାଳୀନ ସମୟର ଏକଛତ୍ରବାଦୀ ଶାସକ ବେନିଟୋ ମୁସୋଲିନ୍‌ଙ୍କ ସହିତ ଗାନ୍ଧିଜୀଙ୍କର ସାକ୍ଷାତକାରରେ ବିଶ୍ୱବାସୀ ଆଶ୍ଚର୍ଯ୍ୟ ଓ ସ୍ତମ୍ଭୀଭୂତ ହୋଇ ପଡିଥିଲେ । କାରଣ ନିର୍ଦ୍ଧାରିତ ସମୟଠାରୁ ବହୁ ଅଧିକ ସମୟ ପର୍ଯ୍ୟନ୍ତ ଉଭୟ ପ୍ରସଙ୍ଗଭିତ୍ତିକ ଆଲୋଚନାରେ ନିମଗ୍ନ ଥିଲେ । ଆଲୋଚନା ସମାପ୍ତ ପରେ ମୁସୋଲିନ୍ ନିଜ ଆସନରୁ ଉଠି ଗାନ୍ଧିଜୀଙ୍କୁ ସସମ୍ମାନେ ବିଦାୟ ଦେଇଥିଲେ । ମୁସୋଲିନ ଏଭଳି ଏକ ବ୍ୟକ୍ତିତ୍ୱ ଯେ କେବେ କୌଣସି ପରିସ୍ଥିତିରେ କାହାକୁ ନିଜ ଆସନରୁ ଉଠି ପାଛୋଟି ନେବା କି ବିଦାୟ ଦେବା କେବେ ଦେଖାଯାଇନଥିଲା । ସେ ଯେତେ ପ୍ରଭାବଶାଳୀ ବ୍ୟକ୍ତି ହୋଇଥାନ୍ତୁ ନା କାହିଁକି ଏହା କିନ୍ତୁ ଗାନ୍ଧିଜୀଙ୍କ କ୍ଷେତ୍ରରେ ହୋଇ ନଥିଲା । ଏହା ଥିଲା ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱର ପରିଚ଼ୟ ଯାହା ପ୍ରବଳ ପ୍ରତାପୀ ବେନିଟୋ ମୁସୋଲିନ୍ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ବିଶ୍ୱର କଲ୍ୟାଣ ନିମନ୍ତେ ଗାନ୍ଧିଜୀ ବିଭିନ୍ନ ସମୟରେ ଅନେକ ବ୍ୟକ୍ତିଙ୍କୁ ଚିଠି ଲେଖି ନିଜର ଭାବାବେଗ ପ୍ରକାଶ କରିଛନ୍ତି । ଦ୍ୱିତୀୟ ବିଶ୍ୱଯୁଦ୍ଧର କିଛିଦିନ ପୂର୍ବରୁ ଓ ଯୁଦ୍ଧ ଚାଲୁଥିବା ସମୟରେ ଗାନ୍ଧିଜୀ ନାଜି ଜର୍ମାନୀର ସୌର ଶାସକ ତଥା ଦ୍ୱିତୀୟ ବିଶ୍ୱଯୁଦ୍ଧର ଅନ୍ୟତମ ଯୋଦ୍ଧା ଆଡଲଫ ହିଟ୍‌ଲର୍‌କୁ ଚ଼ିଠି ଲେଖି ନିଜର ମନୋଭାବ ପ୍ରକାଶ କରିଥିଲେ । ଗାନ୍ଧିଜୀଙ୍କ ଦ୍ୱାରା ଲିଖିତ ଦୁଇଟି ଚ଼ିଠିର ସାରମର୍ମ ଥିଲା– ମାନବିକତାର ଦୃଷ୍ଟିକୋଣରୁ ମାନବ ଜାତିର ସୁରକ୍ଷା ପାଇଁ

ଯୁଦ୍ଧ ବନ୍ଦ କରିବା ଏକାନ୍ତ ଆବଶ୍ୟକତା ରହିଛି । ହିଟ୍‌ଲର୍‌ଙ୍କୁ ଲିଖିତ ଗାନ୍ଧିଜୀଙ୍କର ଚିଠିରୁ ସ୍ପଷ୍ଟ ବାରି ହୋଇପଡେ ତାଙ୍କ ହୃଦୟର ମର୍ମ ବେଦନା ଓ ବ୍ୟାକୁଳତା । ଆମେରିକୀୟ ଗାନ୍ଧୀବାଦୀ ମାର୍ଟିନ୍ ଲୁଥର କିଙ୍ଗ୍ ଗାନ୍ଧୀ ଆଦର୍ଶର ଜଣେ ନିଷ୍ଠାପର ଭକ୍ତ । ସେ ଗାନ୍ଧୀ ଚିନ୍ତାଧାରାକୁ ଶେଷଜୀବନ ପର୍ଯ୍ୟନ୍ତ କାର୍ଯ୍ୟରେ ଆଗ୍ରହର ସହ ଉପଯୋଗ କରିଥିଲେ । ତାଙ୍କ ଭାଷାରେ– ''ଗାନ୍ଧିଜୀଙ୍କୁ ବାଦ୍ ଦେଇ ମାନବ ସମାଜର ପ୍ରଗତି ଚିନ୍ତା କରାଯାଇ ପାରେନା'' । ଆମେରିକାର ପୂର୍ବତନ ରାଷ୍ଟ୍ରପତି ବରାକ୍ ଓବାମା ଗାନ୍ଧିଜୀଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ନିଜର ଉପାଦେୟ ବକ୍ତବ୍ୟ ରଖିଥିଲେ– ''ଜୀବନରେ ମୁଁ ସବୁବେଳେ ମହାତ୍ମା ଗାନ୍ଧୀଙ୍କୁ ମୋ ପ୍ରେରଣା ବୋଲି ଭାବେ କାରଣ ଅତି ସାଧାରଣ ଲୋକେ ମିଶିଗଲେ ଯେ ଅସାଧାରଣ କିଛି ହାସଲ କରାଯାଇପାରେ ତାହା ସେ ନିଜେ ପ୍ରମାଣ କରି ଦେଖାଇ ଦେଇଥିଲେ । ୨୦୦୯ ମସିହାରେ ଏକ ଛାତ୍ରର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ରାଷ୍ଟ୍ରପତି ଓବାମା କହିଥିଲେ– ''ମୋ ରାତ୍ର ଭୋଜନର ପ୍ରଥମ ପସନ୍ଦର ସାଥୀ ହେଉଛନ୍ତି ଗାନ୍ଧୀ ଯିଏ ପ୍ରକୃତରେ ମୋ ପାଇଁ ବାସ୍ତବ ନାୟକ'' । ଗାନ୍ଧିଜୀଙ୍କ ସହିତ ଅତି ନିବିଡ ଓ ଆତ୍ମିକ ସଂପର୍କ ଥିଲା ବିଶ୍ୱ ପ୍ରସିଦ୍ଧ ଦାର୍ଶନିକ ରୋମାରୋଲାଁଙ୍କର । ଗାନ୍ଧିଜୀଙ୍କ ସଂପର୍କରେ ଯେଉଁ କାଳଜୟୀ ମନ୍ତବ୍ୟ ଦେଇଛନ୍ତି ରୋମାରୋଲାଁ ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ– ''ଗାନ୍ଧିଜୀଙ୍କୁ କେବଳ ଆଗାମୀ କିଛି ସହସ୍ରାବ୍ଦୀ ପାଇଁ ଭାରତୀୟ ଇତିହାସର ପୁରୁଷ କହିଲେ ଚଳିବ ନାହିଁ, ଯୀଶୁଖ୍ରୀଷ୍ଟଙ୍କ ବାଣୀକୁ ପୁଣି ଉଜ୍ଜୀବିତ କରିଥିବା ଜଣେ ସନ୍ଥ ଆକାରରେ ମଧ୍ୟ ତାଙ୍କୁ ପାଶ୍ଚ୍ୟାତ ବିଶ୍ୱ ମନେ ରଖିବ । ସେ ଖ୍ରୀଷ୍ଟ, ରଷୋ, ଟଲଷ୍ଟୟ ଆଦି ମହାମାନବଙ୍କ ସମ୍ମିଶ୍ରଣ ଅବତାର'' । ବିଦ୍ୱାନ ରୋମାରୋଲାଁଙ୍କର ଗାନ୍ଧିଜୀଙ୍କ ପ୍ରତି ଅତୁଟ ଭକ୍ତି ଓ ସମ୍ମାନ ଥିଲା । ରୋମାରୋଲାଁ ଗାନ୍ଧିଜୀଙ୍କୁ ସାକ୍ଷାତ କରିବା ପୂର୍ବରୁ ଏକ ପ୍ରାଣସ୍ପର୍ଶୀ ମନ୍ତବ୍ୟ ତାଙ୍କ ଉଦ୍ଦେଶ୍ୟରେ ରଖିଥିଲେ, ତାହା ଥିଲା– ''ମୁଁ ଗାନ୍ଧିଜୀଙ୍କୁ ଦେଖିନାହିଁ କି ତାଙ୍କ ଦେଶକୁ ଯାଇ ନାହିଁ ଯଦି ତାଙ୍କୁ ଦେଖା କରେ ତାଙ୍କ ପାଦ ସ୍ପର୍ଶ କରି ପ୍ରଣାମ କରିବି'' । ମହାନ୍ ବିପ୍ଳବୀ ହୋଚିମିନ୍‌ଙ୍କର ଭାରତ ଗସ୍ତ ସମୟରେ ଭାରତୀୟ ସାମ୍ବାଦିକ ତାଙ୍କୁ ପ୍ରଶ୍ନ କରିଥିଲେ– ''ଭିଏତନାମ୍‌ରେ ତାଙ୍କର ଭୂମିକା ଓ ଭାରତରେ ଗାନ୍ଧିଜୀଙ୍କର ଭୂମିକାରେ କି ପ୍ରଭେଦ ରହିଛି?'' । ଉତ୍ତରରେ ହୋଚିମିନ୍ କହିଥିଲେ– ''ଏ ପ୍ରଶ୍ନଟି ଭୁଲ ଏବଂ ଏ ଉଭୟଙ୍କ ମଧ୍ୟରେ ତୁଳନା କରିବା ମୂର୍ଖତା । ଅବଶ୍ୟ ଏକଥା ସତ୍ୟ ଯେ ମୁଁ ବା ମୋ ଭଳି ଅନ୍ୟମାନେ କ୍ରାନ୍ତିକାରୀ ହୋଇପାରନ୍ତି । ଆମକୁ ଲୋକେ ଅତି ବେଶୀରେ ବିପ୍ଳବୀ କହିବେ ହେଲେ ଆମେ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷରେ ହେଉଛୁ ଗାନ୍ଧୀଙ୍କ ଶିଷ୍ୟ'' । ୱିଲ୍ ଡୁରାଣ୍ଟଙ୍କ ଗାନ୍ଧିଜୀଙ୍କ ପ୍ରତି ଥିବା ତାଙ୍କର ମନୋଭାବର ମାର୍ମିକ ଭାବକୁ ବିଶ୍ୱବାସୀଙ୍କ ନିକଟରେ ଉପସ୍ଥାପନ କରିଥିଲେ – ''ବୁଦ୍ଧଙ୍କ ପରେ ଭାରତୀୟମାନେ ଆଉ କାହାକୁ ଏଭଳି ଭକ୍ତି କରିନଥିଲେ । ଗୋଟିଏ ବିପ୍ଳବର ନେତୃତ୍ୱ ଯେ ଏତେ ସଫଳତାର ସହ ଏମିତି ଜଣେ ସନ୍ଥ ଦ୍ୱାରା କରାଯାଇପାରେ ତାହା ଦେଖିଲେ ଆଶ୍ଚର୍ଯ୍ୟ ଲାଗୁଛି'' । ଗାନ୍ଧିଜୀ ସତ୍ୟ, ଅହିଂସାର ମନ୍ତ୍ର ବିଦେଶ ମାଟିରୁ ଗ୍ରହଣ କରିଥିଲେ । ଯେଉଁଠି ମାନବବାଦ ପ୍ରତି ବିପଦ ଦେଖାଯାଇଛି ସେଠାରେ ଗାନ୍ଧୀବାଦର ଆଦର୍ଶକୁ ସ୍ମରଣ କରାଯାଇଅଛି । ଅତ୍ୟାଚାରୀର ହୃଦୟ ପରିବର୍ତ୍ତନ କରିବାରେ ଗାନ୍ଧୀବାଦ ସମର୍ଥ ଅଟେ । ଗାନ୍ଧିଜୀଙ୍କର ଚରମ ବିରୋଧୀ ଜେନେରାଲ୍ ସ୍କଟ୍‌ସ ତାଙ୍କର ବନ୍ଧୁ ହୋଇଥିଲେ ପରବର୍ତ୍ତୀ ସମୟରେ । ପୋଲାଣ୍ଡର ଶ୍ରମିକ ନେତା ନୋବେଲ୍ ଶାନ୍ତି ପୁରସ୍କାର ବିଜେତା ହେଲେନ ୱାରେସା କମ୍ୟୁନିଷ୍ଟ ଶାସନ ବିରୁଦ୍ଧରେ ଏବଂ ଶ୍ରମିକମାନଙ୍କର ଅଧିକାର ସାବ୍ୟସ୍ତ କରିବା ପାଇଁ ଗାନ୍ଧୀବାଦର ପଥରେ ସଂଗ୍ରାମ କରିଥିଲେ । ତିବ୍ବତୀୟ ଧର୍ମଗୁରୁ ଦଲାଇଲାମା ମଧ୍ୟ ଗାନ୍ଧିଜୀଙ୍କ ଅନୁଗାମୀ ବୋଲି ସର୍ବଦା କହି ଆସିଛନ୍ତି । ତାଙ୍କ ଦୃଷ୍ଟିରେ– ଗାନ୍ଧିଜୀ ଜଣେ ମହାନ୍ ମଣିଷ ଓ ମଣିଷ ପ୍ରକୃତି ସଂପର୍କରେ ଗଭୀର ବୋଧ ଶକ୍ତି ଥିଲା । ଦଲାଇଲାମା ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ନିଜର ଭକ୍ତି ଭାବ ପ୍ରକଟ କରି ଉଲ୍ଲେଖ କରିଥିଲେ – ''ଗାନ୍ଧିଜୀଙ୍କ ଜୀବନରୁ ମୁଁ ଅନେକ ପ୍ରେରଣା ପାଇଛି ଓ ତାଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନ ରହିଛି'' । ଜନ୍ ଲେନନ୍ ଇଂଲଣ୍ଡର ଜଣେ ପ୍ରସିଦ୍ଧ ସଙ୍ଗୀତଜ୍ଞ ଓ ଗୀତିକାର ।

ସେ ଗାନ୍ଧିଜୀଙ୍କୁ ତାଙ୍କ ସଙ୍ଗୀତର ଉତ୍ସ ବୋଲି ଅଭିହିତ କରନ୍ତି । ଜନ୍ ଲେନନ୍ ତାଙ୍କ ପତ୍ନୀ ୟୋଯୋ ଥିଲେ ଗାନ୍ଧୀ ଅନୁଗାମୀ ସଫଳ ବ୍ୟକ୍ତିତ୍ୱ । ପୃଥିବୀରେ ହିଂସା ଓ ଭିଏତ୍‌ନାମରେ ହିଂସା ବନ୍ଦ ପାଇଁ ଗାନ୍ଧୀ ଦର୍ଶନରେ ପରିଚାଳିତ ଆନ୍ଦୋଳନର ଆଶ୍ରୟ ନେଇଥିଲେ । ଦକ୍ଷିଣ ଆଫ୍ରିକାର ପୂର୍ବତନ ରାଷ୍ଟ୍ରପତି ନେଲ୍‌ସନ୍ ମଣ୍ଡେଲା ଏକାଧାରରେ ଜଣେ ରାଜନେତା, ବିପ୍ଳବୀ ଓ ଗାନ୍ଧୀବାଦର ଜଣେ ସତୀର୍ଥ ସମର୍ଥକ । ଏକଦା ସେ ଗାନ୍ଧିଜୀଙ୍କୁ ଏକ ଆଦର୍ଶ ଶିକ୍ଷକ ଭାବରେ ଅଭିହିତ କରିଥିଲେ । ଆଫ୍ରିକାର ପୁନର୍ଗଠନରେ ଗାନ୍ଧୀବାଦର ପ୍ରଚ୍ଛନ୍ନ ଭୂମିକା ରହିଥିବାର ସେ ମୁକ୍ତକଣ୍ଠରେ ସ୍ୱୀକାର କରିଥିଲେ । ଗାନ୍ଧିଜୀଙ୍କ ଶିକ୍ଷାପାଇଁ ବର୍ଣ୍ଣ ବୈଷମ୍ୟ ମଧ୍ୟ ଦୂର ହୋଇଥିବାର ମତବ୍ୟକ୍ତ କରନ୍ତି ନେଲ୍‌ସନ୍ ମଣ୍ଡେଲା । ବିଶ୍ୱବିଖ୍ୟାତ ପଦାର୍ଥ ବିଜ୍ଞାନୀ ଆଲବର୍ଟ ଆଇନ୍ ଷ୍ଟାଇନ୍ ଓ ମହାତ୍ମା ଗାନ୍ଧୀ ପରସ୍ପରକୁ ସମ୍ମାନ ଦେଉଥିଲେ । ଉଭୟ ପରସ୍ପରକୁ ନିୟମିତ ଚିଠି ଆଦାନ-ପ୍ରଦାନ କରୁଥିଲେ । ଚିଠିରେ ଆଇନ୍‌ଷ୍ଟାଇନ୍ ଗାନ୍ଧିଜୀଙ୍କୁ ଆଗାମୀ ପିଢ଼ିର ଆଦର୍ଶ ବୋଲି ଉଲ୍ଲେଖ କରିଥିଲେ । ସେ ଗାନ୍ଧିଜୀଙ୍କୁ ମଧ୍ୟ ବିଂଶ ଶତାବ୍ଦୀର ବିସ୍ମୟ ବୋଲି ଅଭିହିତ କରିଛନ୍ତି । ଆଇନ୍‌ଷ୍ଟାଇନ୍ ଆଉ ମଧ୍ୟ ଉଲ୍ଲେଖ କରିଛନ୍ତି ଗାନ୍ଧୀ ରକ୍ତ ମାଂସ ଶରୀର ଧାରଣ କରି ଏ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ ଆଗାମୀ ପିଢ଼ି ବିଶ୍ୱାସ କରି ପାରିବେ ନାହିଁ । ଆମେରିକାର ପୂର୍ବତନ ଉପରାଷ୍ଟ୍ରପତି ତଥା ପରିବେଶବିତ୍ ଆଲ୍‌ଗୋରେ ସ୍ୱୀକାର କରିଛନ୍ତି ଗାନ୍ଧୀ ତାଙ୍କ ପ୍ରେରଣାର ଉତ୍ସ । ମହାତ୍ମା ଗାନ୍ଧୀଙ୍କର ସତ୍ୟାଗ୍ରହ ଦର୍ଶନକୁ ସତ୍ୟର ଶକ୍ତି ବୋଲି ଅଭିହିତ କରିଛନ୍ତି । ଖାଁ ଅବଦୁଲ୍ ଗଫର ଖାଁ ଯେ ସୀମାନ୍ତ ଗାନ୍ଧୀ ନାମରେ ପରିଚିତ ଜଣେ ନିଷ୍ଠାପର ଗାନ୍ଧୀ ଭକ୍ତ ଥିଲେ । ଗାନ୍ଧୀଙ୍କ ସତ୍ୟ ଓ ଅହିଂସା ନୀତି ପ୍ରତି ତାଙ୍କର ଅଶେଷ ଶ୍ରଦ୍ଧା ଓ ସମ୍ମାନ ଥିଲା । ଜୀବନଚର୍ଯ୍ୟାରେ ସେ ଗାନ୍ଧୀଙ୍କ ନୀତିକୁ ସେ ଅନୁସରଣ କରି ଆସୁଥିଲେ । ସିଜର୍ କ୍ୟାଭେଥ ଜଣେ ଆମେରିକୀୟ ଶ୍ରମିକ ନେତା ତଥା ନାଗରିକ ଅଧିକାର ପ୍ରବକ୍ତା ଗାନ୍ଧୀଙ୍କ ଦର୍ଶନରେ ଅନୁଗ୍ରହୀତ ହୋଇଥିଲେ । କ୍ୟାଭେଜ ଗାନ୍ଧିଜୀଙ୍କ ଶୈଳୀ ଅନୁକରଣ କରି ତାଙ୍କର ଅନେକ ଆନ୍ଦୋଳନରେ ''ବାସନ୍ଧ'' ଓ ''ଅନଶନ''କୁ ଉପଯୋଗ କରି ସଫଳତା ପାଇଥିଲେ । ଗାନ୍ଧିଜୀଙ୍କ ପ୍ରତି ସିଜର୍ କ୍ୟାଭେଜ୍‌ଙ୍କ ଉତ୍ସାହପ୍ରଦ ମନ୍ତବ୍ୟ ଥିଲା- ''ଗାନ୍ଧିଜୀ କେବଳ ଅହିଂସାରେ କଥା କହୁନଥିଲେ, ନ୍ୟାୟ ଓ ସ୍ୱାଧୀନତା ପାଇଁ ଅହିଂସା କିପରି କାର୍ଯ୍ୟ କରିଥାଏ ଏକଥା ଦେଖାଇଥିଲେ'' । ଗାନ୍ଧିଜୀ ନିଜେ ଥରେ କହିଥିଲେ- ''ମୁଁ ରାଜନୀତିଜ୍ଞ ବେଶ ଧାରଣ କରିଥିଲେ ମଧ୍ୟ ଅନ୍ତରରେ ମୁଁ ଜଣେ ଧର୍ମପ୍ରାଣ ବ୍ୟକ୍ତି ।'' ଏ କଥାକୁ ପ୍ରମାଣ କରିଥିଲେ ଏଲ୍. ମସେଲ ତାଙ୍କ ପୁସ୍ତକ ''ଲାଷ୍ଟ ଡେଜ୍ ଅଫ୍ ବ୍ରିଟିଶ୍ ରାଜ୍'' ରେ । ଉକ୍ତ ପୁସ୍ତକରେ ସେ ଉଲ୍ଲେଖ କରିଥିଲେ- ବହୁ ଦୃଷ୍ଟିକୋଣରୁ ଗାନ୍ଧିଜୀ ଥିଲେ ଜଣେ ଧର୍ମପ୍ରାଣ ବ୍ୟକ୍ତି'' । ତାଙ୍କର କୃତିତ୍ୱକୁ ସମୀକ୍ଷା କରି ଯଥାର୍ଥରେ କୁହାଯାଇଛି- ଯୀଶୁଖ୍ରୀଷ୍ଟଙ୍କ ସମୟରୁ ପୃଥିବୀ ପୃଷ୍ଠରେ ମହାତ୍ମା ଗାନ୍ଧୀଙ୍କ ପରି ଜଣେ ସ୍ୱଦେଶ ଭକ୍ତ ଓ ବିଦ୍ରୋହୀ ଜନ୍ମ ନେଇ ନାହାନ୍ତି । ଆନ୍ଦୋଳନାତ୍ମକ ପନ୍ଥାର ବୈପ୍ଳବିକ ଆବିଷ୍କାର ଓ ତା'ର ଅଭିନବ ପ୍ରୟୋଗ ଦୃଷ୍ଟିରୁ ବିଚାର କଲେ ସକ୍ରେଟିସ୍, ଲେନିନ୍, ଗାରିବାଲଡ୍, ସନ୍-ୟାତ୍-ସେନ୍ ଅଥବା ୱାଶିଂଟନ୍ ଗାନ୍ଧିଜୀଙ୍କ ସହ ସମତୁଲ୍ୟ ହୋଇ ନ ପାରନ୍ତି । ନେପୋଲିଅନ ଯୁଦ୍ଧ କରି ପରାଜୟ ବରଣ କଲେ । ହିଟ୍‌ଲର୍ ୟୁରୋପକୁ କରଗତ କରି ଶେଷରେ ମୃତ୍ୟୁବରଣ କଲେ, କିନ୍ତୁ ଗାନ୍ଧିଜୀ ଅହିଂସା ନୀତିରେ ଅଗ୍ରସର ହୋଇ ଶେଷରେ କୃତକାର୍ଯ୍ୟ ହୋଇଥିଲେ । ତାଙ୍କର ବିଜୟ ଥିଲା ଅନ୍ୟାୟ ଉପରେ ନ୍ୟାୟର ବିଜୟ, ଅସତ୍ୟ ଉପରେ ସତ୍ୟର ବିଜୟ, ପାଶବିକ ଶକ୍ତି ଉପରେ ନୈତିକ ଶକ୍ତିର ବିଜୟ । ଗାନ୍ଧିଜୀଙ୍କର ଜୀବନୀ ଓ କୃତିତ୍ୱ ବିଶ୍ୱ ସମୁଦାୟ ପାଇଁ ପ୍ରେରଣାର ଉତ୍ସ । ଅବହେଳିତ ଓ ନିଷ୍ପେସିତମାନଙ୍କର ସେ ଥିଲେ ତ୍ରାଣକର୍ତ୍ତା ଓ ସ୍ୱର । ଯଥାର୍ଥରେ ସେ ବିଶ୍ୱମହାତ୍ମା ପଦବାଚ୍ୟ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪

# ଭାରତୀୟ ଶାକ୍ତ ଧର୍ମ ଦର୍ଶନ ଓ ସଂସ୍କୃତିରେ ମା' ବିରଜା

ଅଧ୍ୟାପକ ରବୀନ୍ଦ୍ର କୁମାର ବେହୁରିଆ

ଭାରତୀୟ ସଂସ୍କୃତିରେ ପ୍ରାକ୍-ବୈଦିକ କାଳରୁ ଶକ୍ତି ଉପାସନାର ଅବିଚ୍ଛିନ୍ନ ଧାରାରୁ ଶାକ୍ତ ଧର୍ମର ଉନ୍ମେଷ ଓ ବିକାଶ ଘଟିଛି । ପ୍ରାକ୍ ବୈଦିକ କାଳୀନ ସିନ୍ଧୁ ସଭ୍ୟତାର ଧ୍ୱଂସାବଶେଷରୁ ପ୍ରତୀକାତ୍ମକ ଓ ଦେବୀ ମୂର୍ତ୍ତି ଉଭୟର ସନ୍ଧାନ ମିଳିଥିବାରୁ ହୃଦବୋଧ ହୁଏ, ବେଦ ରଚନାର ବହୁ ପୂର୍ବରୁ ଶାକ୍ତ ଧର୍ମର ଏକ ବିକଶିତ ଧାରା ପବିତ୍ର ଭାରତ ଭୂମିରେ ପ୍ରବାହିତ ହୋଇଥିଲା । ଶାକ୍ତ ଚେତନାର ଉତ୍ତରଣରେ ଆର୍ଯ୍ୟ ପ୍ରଚେତାବୃନ୍ଦ ବେଦର ଅସଂଖ୍ୟ ମନ୍ତ୍ର ଦର୍ଶନ କରିଥିଲେ । ଋକ୍ ବେଦର ବାଗାମୃଣୀ ସୂକ୍ତଠାରୁ ଅଥର୍ବ ବେଦ ପର୍ଯ୍ୟନ୍ତ ସୁବିସ୍ତୃତ ଏହି ମନ୍ତ୍ର ପୁରାଣ ଯୁଗରେ ଶାକ୍ତ ମୂର୍ତ୍ତିରେ ରୂପାନ୍ତରିତ ହୋଇ ଶାକ୍ତ ଧର୍ମ, ସଂସ୍କୃତି ଓ ଦର୍ଶନର ବ୍ୟାପକ ପ୍ରସାର ଘଟିଥିଲା । ଏହି ଶାକ୍ତ ମୂର୍ତ୍ତିର ପ୍ରାଚୀନତମ ନିଦର୍ଶନ ହେଉଛନ୍ତି ଆଦ୍ୟାଶକ୍ତି ମା' ବିରଜା । ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ମା', ବିରଜା ଦ୍ୱିଭୁଜା । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ଜଣାଯାଏ, ଦ୍ୱିଭୁଜା ଦେବୀ ମା' ବିରଜା ସର୍ବପ୍ରାଚୀନ ମୂର୍ତ୍ତି । ତାଙ୍କ ଧ୍ୟାନରୁ ଜଣାଯାଏ ଯେ, ଦ୍ୱିଭୁଜା ଦେବୀ ବାମ ହସ୍ତରେ ମହିଷରୂପୀ ଦାନବର ପୁଚ୍ଛ ଧରି ଦକ୍ଷିଣ ହସ୍ତରେ ତାଙ୍କ ଶରୀରକୁ ଶୂଳବିଦ୍ଧ କରୁଛନ୍ତି । ଶ୍ରୀବିରଜା ଦେବୀଙ୍କର ବୈଶିଷ୍ଟ୍ୟ ହେଉଛି ତାଙ୍କ ମସ୍ତକରେ ପାଞ୍ଚଗୋଟି ମୁଦ୍ରା ପରିଶୋଭିତ । ସେହିସବୁ ମୁଦ୍ରା ହେଉଛନ୍ତି ଗଣପତି, ନାଗ, ଶକ୍ତି, ଲିଙ୍ଗ ଓ ଚନ୍ଦ୍ର । ପୁରାଣ ବର୍ଣ୍ଣନାନୁସାରେ ଦେବୀ ବିବସନା ହୋଇ ମହିଷାସୁରକୁ ବଧ କରିଥିଲେ ମଧ ଜଗତର ମା' ହିସାବରେ ପୂଜିତା ଦେବୀଙ୍କୁ ଶିଳ୍ପୀ ସଂପୂର୍ଣ୍ଣ ବିବସନା କରି ନଥାନ୍ତି । ଦେବୀ ବିରଜା ମୂର୍ତ୍ତିର ସର୍ବାଙ୍ଗ ବସନ ଭୂଷଣରେ ଆବୃତ । କେବଳ ଅଳଙ୍କାର ଖଚିତ ମସ୍ତକ ବ୍ୟତୀତ ଅଙ୍ଗ ପ୍ରତ୍ୟଙ୍ଗ ଆଦୌ ଦୃଷ୍ଟିଗୋଚର ହୁଏ ନାହିଁ । ତାଙ୍କ ମୁକୁଟରେ ଗଣେଷ, ସର୍ପ, ଯୋନିଲିଙ୍ଗ ଓ ଚନ୍ଦ୍ରଙ୍କ ଅବସ୍ଥିତି ଯୋଗୁଁ ତାହା ସର୍ବଧର୍ମ ସମନ୍ୱୟର ପ୍ରତୀକ ବୋଲି ପ୍ରତୀୟମାନ ହୁଏ ।



ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ମା' ବିରଜାଙ୍କର କେବେ କିପରି ଉତ୍ପତ୍ତି ହେଲା, ତାହା ମଧ୍ୟ ସଠିକ୍ ବିବରଣୀ କେହି କହି ପାରିବେ ନାହିଁ । ତଥାପି ଐତିହାସିକ ଓ ପୌରାଣିକ ତଥ୍ୟରୁ ଜଣାଯାଏ, ଯାଜପୁରରେ ଦେବୀ ବିରଜାଙ୍କର ଆବିର୍ଭାବ ତୃତୀୟ ଶତାବ୍ଦୀ ପୂର୍ବରୁ ହୋଇଥିଲା । ବହୁ ପଣ୍ଡିତ ମତବ୍ୟକ୍ତ କରିଛନ୍ତି ଯେ, ବ୍ୟାସକବିଙ୍କ ସଂସ୍କୃତ ମହାଭାରତ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସଂକଳିତ ହୋଇଥିଲା । ସେହି ମହାଭାରତର ଅନ୍ୟ କୌଣସି ତୀର୍ଥକ୍ଷେତ୍ରର ବର୍ଣ୍ଣନା ନଥିବା ସ୍ଥଳେ, ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ମା' ବିରଜାଙ୍କର ବର୍ଣ୍ଣନା ରହିଛି ।

''ତତୋ ବୈତରଣୀ ଗଚ୍ଛେତ୍ ସର୍ବପାପ ପ୍ରମୋଚନୀମ୍
ବିରଜାଂ ତୀର୍ଥମାସାଦ୍ୟ ବିରାଚତି ଯଥା ଶଶୀ ।
ପ୍ରଚରେ କୁଳଂ ପୁଣ୍ୟ ଚ ସର୍ବପାପଂ ବ୍ୟପୋହତି
ଗୋ ସହସ୍ର ପଂଳଂ ଲବ୍ଧ୍ୱାପୁନାତି ସ୍ୱକୁଳଂ ନରଂ ।''
(ମହାଭାରତ–ବନପର୍ବ, ୮୩ ଅଧ୍ୟାୟ)

ଏତଦ୍‌ବ୍ୟତୀତ ବିରଜା ମାହାତ୍ମ୍ୟ, ବାୟୁପୁରାଣ, ବ୍ରହ୍ମାଣ୍ଡ ପୁରାଣ, ହରିବଂଶ, ଯାମଳାତନ୍ତ୍ର, କପିଳ ସଂହିତା, ବିଷ୍ଣୁ ପୁରାଣ ଓ କୁବ୍‌ଜିକା ତନ୍ତ୍ର ଆଦି ପୁରାଣ ଦେବୀଙ୍କ ମହିମା ଗାନ କରି ମହିମାନ୍ୱିତ ।

ଯାଜପୁର ସହରର ଦକ୍ଷିଣ ସୀମାରେ ପୁରାଣ ପ୍ରସିଦ୍ଧ ବୈତରଣୀ ନଦୀ କୂଳରେ ପ୍ରାୟ ତିନି ଏକରରୁ ଊର୍ଦ୍ଧ୍ୱ ଭୂମି ଖଣ୍ଡରେ ଦେବୀ ବିରଜାଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିରର ପୂର୍ବ ଉତ୍ତର କୋଣରେ ଖିଲଟେଶ୍ୱର ମନ୍ଦିର, ପଶ୍ଚିମରେ ବିଲେଶ୍ୱର ମନ୍ଦିର, ଦକ୍ଷିଣରେ ବରୁଣେଶ୍ୱର ମନ୍ଦିର ଓ ମଧ୍ୟବର୍ତ୍ତୀ ପଞ୍ଚକୋଶକୁ ବିରଜାକ୍ଷେତ୍ର କୁହାଯାଏ । ଏହି କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ମା' ବିରଜା ।

ଉତ୍କଳର ଏହି କ୍ଷେତ୍ର ଗଦାକ୍ଷେତ୍ର, ଶକ୍ତି କ୍ଷେତ୍ର, ଯଜ୍ଞପୁର, ମହାକ୍ଷେତ୍ର, ପାର୍ବତୀ କ୍ଷେତ୍ର, ଗୌରୀ କ୍ଷେତ୍ର, ଅବିମୁକ୍ତ କ୍ଷେତ୍ର, ନାଭିକ୍ଷେତ୍ର ଓ ବିରଜା କ୍ଷେତ୍ର ରୂପେ ପରିଚିତ ।

''ଉତ୍କଳେ ନାଭିଦେଶଚ ବିରଜା କ୍ଷେତ୍ର ମୁଚ୍ୟତେ
ବିରଜାସ୍ତୁ ମହାଦେବୀ ବିଜୟସ୍ତତ୍ର ଭୈରବଃ ।''
(ତନ୍ତ୍ର ଚିନ୍ତାମଣି, ୫୧ ଶ୍ଳୋକ)

ଏକାବନ ଗୋଟି ଶିବଲିଙ୍ଗ ଧାରଣ କରିଥିବା ଏହି ମହାକ୍ଷେତ୍ର ବିଶ୍ୱର ବିରଳ ପଞ୍ଚ 'ବ' କାରାନ୍ତ ବରାହ, ବିରଜା, ବେଦ, ବିପ୍ର ଓ ବୈତରଣୀ ନଦୀ ସହ ବନଦୁର୍ଗା, ଅଷ୍ଟ ଚଣ୍ଡୀ, ଭୈରବ ଚତୁଃଷ୍ଟୟ, ଦ୍ୱାଦଶ ମାଧବ, ଅଷ୍ଟଭୈରବୀ, ମହାକାଳୀ, ମହା ସରସ୍ୱତୀ, ମହାଲକ୍ଷ୍ମୀ, ଯଜ୍ଞବରାହ, ଶ୍ୱେତବରାହ, ପଞ୍ଚତୀର୍ଥ, ସପ୍ତରେଖା ଏବଂ ମନ୍ଦାକିନୀକୁ ଧାରଣ କରି ସାରା ବିଶ୍ୱରେ ଏକକ ମହୀୟାନ୍ ବିରଜା କ୍ଷେତ୍ର ରୂପେ ପ୍ରତିପାଦନ କରିଆସିଛି । ଏହାକୁ କେବଳ ଅନୁକ୍ଷଣ, ସର୍ବେକ୍ଷଣ, ସମାଲୋଚନା ଓ ପର୍ଯ୍ୟାଲୋଚନା କଲେ ଏହାର ମହତ୍ତ୍ୱ ପ୍ରତିପାଦିତ ହୋଇପାରିବ ।

'ବରାହ ବିରଜା ଦେବୀ ବିପ୍ରା
ବୈତରଣୀ ନଦୀ
ଶୋଭନ୍ତେ କ୍ଷେତ୍ର ରାଜେସ୍ମିନ୍
'ବ' କାରଃ ପଞ୍ଚ ଦୁର୍ଲଭଃ ।'

ଉଡ୍‌ଡ଼ୀୟାନ ତନ୍ତ୍ରରେ ବର୍ଣ୍ଣନା କରାଯାଇଛି –

'ବିରଜା ନାଭିପୀଠସ୍ଥ ବାରାହୋ ଭୈରବ କୃତି ।'

ପ୍ରପଞ୍ଚସାର ତନ୍ତ୍ରରେ ବିରଜାଙ୍କୁ ପରିପୂର୍ଣ୍ଣା କୁହାଯାଇଛି ।

'ପୂର୍ଣ୍ଣୋଦରୀଚ ବିରଜା ତୃତୀୟା ଶାଲ୍ମଳୀ ତଥା
ଲୀଳାଖୀ ବତୁଳାକ୍ଷୀ ଚ ଦୀର୍ଘଘଣା ତଥୈବଃଚ ।'

ଏହି ଶକ୍ତିପୀଠ ଅସଂଖ୍ୟ ତୀର୍ଥମାନଙ୍କୁ ଧାରଣ ପୂର୍ବକ ମହାକ୍ଷେତ୍ରରେ ପରିଣତ ହୋଇ କ୍ଷେତ୍ରାଧିକାରୀ ଦ୍ୱିଭୁଜା ଦେବୀ ବିରଜାଙ୍କ ଶୁଭାଶିଷ ପ୍ରଦାନ ପୂର୍ବକ ଭକ୍ତଜନମାନସକୁ ଅଭୟ ପ୍ରଦାନ କରି ଆସୁଛି । କୁହାଯାଇଛି ପୁରାଣରେ–

ବିରଜେ ବିରଜା ମାତାଂ ବ୍ରହ୍ମଣାଂ ସପ୍ରତିଷ୍ଠିତା
ଯସ୍ୟା ସଦର୍ଶନାତ୍ ମର୍ତ୍ତ୍ୟୋଃ ନୁନାତ୍ୟା ସପ୍ତମଂ କୁଲମ୍ ।
କାଶୀବାସୀ ବିନାଷ୍ଟାଚ ବିଦୈକଂ ପୁରୁଷୋତ୍ତମ୍
ତତ୍ ଫଳ ଲଭତେ ମର୍ତ୍ତ୍ୟୋ ବିରଜା ମୁଖ ଦର୍ଶନୋ'

ବିଭିନ୍ନ ସମୟରେ ଏଠାରେ ଶାକ୍ତ, ସୌର, ଗାଣପତ୍ୟ, ବୈଷ୍ଣବ, ବୌଦ୍ଧ ପ୍ରଭୃତି ବହୁ ଧର୍ମ ଧାରାର

ପ୍ରବାହ ଏ ଧରାକୁ ପ୍ଲାବିତ କରିଛି । ବିଭିନ୍ନ ଧର୍ମ ସଂପ୍ରଦାୟ ଓ ସେମାନଙ୍କର ପର୍ବପର୍ବାଣି ପରବର୍ତ୍ତୀ ସମୟରେ ହୋଇଛି । ଗବେଷକମାନଙ୍କ ମତରେ ବିରଜା କ୍ଷେତ୍ର ବା ଆଧୁନିକ ଯାଜପୁର ଏକ ସର୍ବଧର୍ମ ସମନ୍ୱୟ କ୍ଷେତ୍ର । ପ୍ରାଚୀନ କାଳରୁ କ୍ଷେତ୍ରାଧିଶ୍ୱରୀ ବିରଜା, କ୍ଷେତ୍ରାଧିଶ୍ୱର ଶ୍ରୀ ବରାହଙ୍କୁ କେନ୍ଦ୍ରକରି ଯେଉଁ ତ୍ରିକୋଣାଗାର କ୍ଷେତ୍ରର ପରିକଳ୍ପନା କରାଯାଇଥିଲା, ସେହି କ୍ଷେତ୍ରରେ ଶୈବ, ଶାକ୍ତ, ବୈଷ୍ଣବ, ସୌର, ଗାଣପତ୍ୟ, ବୌଦ୍ଧ ଇତ୍ୟାଦି ଧର୍ମ ମତବାଦର ବିକାଶ ଘଟିଥିଲା ଓ ପରବର୍ତ୍ତୀ କାଳରେ ସେହି ମତାବାଦଗୁଡ଼ିକର ସମନ୍ୱିତ ସହାବସ୍ଥାନ ଏହି କ୍ଷେତ୍ରକୁ ଗୌରବାବହ ଐତିହ୍ୟରେ ଋଦ୍ଧିମନ୍ତ କରିଛି ।

ଧର୍ମଧାରଣା ଆଚାର ବିଚାର ଓ ଭୌଗଳିକ ଅବସ୍ଥିତିକୁ ଭିତ୍ତିକରି ଅତୀତରେ ଓଡ଼ିଶାର ସାଂସ୍କୃତିକ ଜଗତ ଦୁଇଗୋଟି ମଣ୍ଡଳରେ ବିଭକ୍ତ ହୋଇଥିଲା । ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କୁ ଆଧାର କରି ବୈଷ୍ଣବ ଧର୍ମାଚାର୍ଯ୍ୟମାନେ ଜଗନ୍ନାଥ ମଣ୍ଡଳରେ ବୈଷ୍ଣବ ଧର୍ମର ଭୂୟୋବିକାଶ ଘଟାଇଥିବା ବେଳେ ଶାକ୍ତ ଉପାସକମାନେ ଅଧିଷ୍ଠାତ୍ରୀ ବିରଜା ଦେବୀଙ୍କୁ ଆଧାର କରି ବିରଜା ମଣ୍ଡଳରେ ଶାକ୍ତ ଓ ତାନ୍ତ୍ରିକ ପରଂପରାର ପ୍ରସାର କରିଥିଲେ । ତେବେ ବୌଦ୍ଧ, ଶାକ୍ତ ଓ ତନ୍ତ୍ର ମନ୍ତ୍ରର ସମନ୍ୱୟରେ ସମୃଦ୍ଧ ବିରଜା ମଣ୍ଡଳର ଶାକ୍ତ ଚେତନା କେବଳ ଓଡ଼ିଶାରେ ନୁହେଁ, ଭାରତର ଜନମାନସକୁ ନିରନ୍ତର ଆନ୍ଦୋଳିତ କରି ରଖିଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଖ୍ରୀଷ୍ଟୀୟ ତୃତୀୟ ଚତୁର୍ଥ ଶତକରେ ବିରଜା ମଣ୍ଡଳ ଯାଜପୁର ବୌଦ୍ଧଧର୍ମର ଲୀଳାଭୂମି ଭାବେ ପ୍ରସିଦ୍ଧି ଲାଭ କରିଥିଲା । ଗୁପ୍ତ ରାଜତ୍ୱ କାଳରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ସମୟରେ ବୌଦ୍ଧଧର୍ମକୁ ପ୍ରତିହତ କରିବା ପାଇଁ ମୂର୍ତ୍ତିପୂଜାର ପ୍ରସାର ଦ୍ୱାରା ଭାରତରେ ଅନେକ ବୌଦ୍ଧପୀଠ ଯାଜପୁର ଶକ୍ତି କ୍ଷେତ୍ରର ମାନ୍ୟତା ଲାଭକରିଥିଲା । ଗୁପ୍ତ ଯୁଗରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବେଳକୁ ଓଡ଼ିଶାରେ ଶକ୍ତି ଉପାସନାର କ୍ରମ ବିକାଶ ଘଟିଥିଲା । ଓଡ଼ିଶାରେ ଶକ୍ତି ଉପାସନାର ଧାରା ଆଦିବାସୀମାନଙ୍କ ସ୍ତମ୍ଭ ଉପାସନାର ବିବର୍ତ୍ତିତ ରୂପ ବୋଲି ଗବେଷକମାନେ କହନ୍ତି । ଶାକ୍ତ ମୂର୍ତ୍ତିମାନଙ୍କ ଉପାସନା ପୂର୍ବରୁ ଓଡ଼ିଶାର ଆଦିବାସୀମାନେ ସ୍ତମ୍ଭେଶ୍ୱରୀଙ୍କୁ ହିଁ ଦେବୀରୂପେ ପୂଜା କରୁଥିବାର ପ୍ରମାଣ ରହିଅଛି । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ରାଜତ୍ୱ କରୁଥିବା ରାଜା ତୁଷ୍ଟିକର ଦେବଙ୍କ କଳାହାଣ୍ଡିର ଟେରାସଂଗ ତାମ୍ର ଫଳକରେ 'ସ୍ତମ୍ଭେଶ୍ୱରୀ ପାଦଭକ୍ତ' ଉଲ୍ଲେଖରୁ ଏହା ହିଁ ଓଡ଼ିଶାର ଶକ୍ତି ପୂଜାର ପ୍ରାଚୀନ ପ୍ରମାଣ ବୋଲି ମନେହୁଏ । ଓଡ଼ିଶାର ପଶ୍ଚିମାଞ୍ଚଳରେ ଶାସନ କରୁଥିବା ଶୁଲ୍କୀ, ଭଂଜ ଓ ରାଷ୍ଟ୍ରକୂଟ ବଂଶର ରାଜାମାନେ ମଧ୍ୟ ସ୍ତମ୍ଭେଶ୍ୱରୀ ଉପାସକ ଥିଲେ । ରାଜକୀୟ ପୃଷ୍ଠପୋଷକତା ଲାଭ କରି ଦୁମାଲ ଜାତୀୟ ଆଦିବାସୀ କନ୍ଧମାନେ ସ୍ତମ୍ଭ ବା ବାଡ଼ିକୁ ଦେବୀ ରୂପେ ପୂଜା କରୁଥିଲେ । ଏହି ସ୍ତମ୍ଭ ପରଂପରାରୁ ହିଁ ଶ୍ରୀ ବିରଜା ଉପାନସନାର ପରିକଳ୍ପନା ସମ୍ଭବ ହୋଇଅଛି । ମାନୁଷୀ ମୂର୍ତ୍ତି ରୂପେ ପୂଜିତ ହେବାର ବହୁ ପୂର୍ବରୁ ବିରଜାଙ୍କୁ ସ୍ତମ୍ଭ ରୂପେ ଅୟମାରମ୍ଭ ଘଟାଇଥିଲେ । ସେହି ଦେବୀ ପୂଜାର ସ୍ମୃତି ବହନ କରି ଏବେ ମଧ୍ୟ ମନ୍ଦିରରେ ଶାରଦୀୟ ପୂଜା କାଳରେ ଆଶା ଦଣ୍ଡ ନାମରେ ପ୍ରସିଦ୍ଧି ରୌପ୍ୟମୟ କାଷ୍ଠଦଣ୍ଡ ଦେବୀଙ୍କ ପ୍ରତିନିଧି ରୂପେ ବହିର୍ଯାତ୍ରା କାଳରେ ପୂଜିତ ହେବାର ବିଧି ପ୍ରଚଳିତ । ଏହି ରୌପ୍ୟମୟ ଦଣ୍ଡର ଉପରି ଭାଗରେ ଶକ୍ତିଙ୍କ ବାହନ ସିଂହ ସ୍ଥାନିତ ହୋଇ ପୂଜା ପାଉଛନ୍ତି । ଅଣ ଆର୍ଯ୍ୟ ଦୁମାଲ ସଂପ୍ରଦାୟ ଦ୍ୱାରା ପୂଜିତ ସ୍ତମ୍ଭକୁ ଆଶ୍ୱିନ ମାସରେ ଶାରଦୀୟ ପୂଜା କାଳରେ ବ୍ରାହ୍ମଣମାନେ ବନଦୁର୍ଗା ରୂପରେ ବିଶେଷ ପୂଜାନୁଷ୍ଠାନ କରନ୍ତି । ସୁତରାଂ ଏହି ସ୍ତମ୍ଭେଶ୍ୱରୀ ଉପାସନାରୁ ଓଡ଼ିଶାରେ ବନଦୁର୍ଗା ଉପାସନାର ଧାରା ଆରମ୍ଭ ହୋଇଥିଲା । ତାହା ଶ୍ରୀବିରଜାଙ୍କ ମାଧ୍ୟମରେ ଓଡ଼ିଶା ତଥା ରାଜ୍ୟ ବାହାରେ କ୍ରମଶଃ ପ୍ରସାରିତ ହେଲା । ସ୍ତମ୍ଭେଶ୍ୱରୀ ଉପାସନାର ଛାୟା ବିରଜାଙ୍କ ପୂଜା ପଦ୍ଧତିରେ ପ୍ରତିଫଳିତ ହେବାର ଲକ୍ଷ୍ୟ କରାଯାଏ । ଦେବୀଙ୍କ ଶାରଦୀୟ ଦୁର୍ଗାପୂଜା କାଳରେ ସ୍ୱତନ୍ତ୍ର ମନ୍ତ୍ର ସହ ବିରଜାଙ୍କୁ ମଧ୍ୟ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଏ । ଓଡ଼ିଶାର ଦୁର୍ଗାପୂଜା ପରଂପରା ବଙ୍ଗୀୟ ଶାକ୍ତ ମତକୁ ଅନୁକରଣ କରିଅଛି । ବଙ୍ଗଳାରେ ବନଦୁର୍ଗା ଭାଣ୍ଡାଳୀ ନାମରେ ଖ୍ୟାତ । ଭାଣ୍ଡାଳୀ ବା ବନଦୁର୍ଗା କାଳୀ ଓ

ବୈଷ୍ଣବୀଙ୍କ ସମ୍ମିଳିତ ରୂପ ବୋଲି ଗବେଷକମାନେ ମତ ଦିଅନ୍ତି । ରାଜା ନହୁଷ ହିଁ ଭାଣ୍ଡାଳୀ ବା ବନଦୁର୍ଗା ପୂଜାର ପ୍ରଚଳନ କରାଇଥିଲେ । ଏଠାରେ ଲକ୍ଷ୍ୟଣୀୟ ଯେ, ବ୍ରହ୍ମାଣ୍ଡ ପୁରାଣରେ ଶ୍ରୀବିରଜାଙ୍କୁ ରାଜା ନହୁଷଙ୍କ ସ୍ୱାଧୀ ପତ୍ନୀ ରୂପେ ବର୍ଣ୍ଣନା କରାଯାଇଅଛି । ଏଥିରୁ ଅନୁମାନ କରାଯାଏ ଯେ, ଓଡ଼ିଶାରେ ସ୍ତମ୍ଭ ଉପାସନା ପରସ୍ମିନ୍ କାଳରେ ବିରଜାଙ୍କଠାରେ ରାଜକୀୟ ଉତ୍ସବ ରୂପେ ପ୍ରତିଫଳିତ ହୋଇ କ୍ରମଶଃ ଓଡ଼ିଶାର ଅନ୍ୟ ପୀଠମାନଙ୍କରେ ବନଦୁର୍ଗା ପୂଜାର ପରିବର୍ତ୍ତିତ ରୂପ ଗ୍ରହଣ କରିଅଛି ।

ଶାକ୍ତ ସଂସ୍କୃତିକୁ ବିରଜା ମଣ୍ଡଳ ଯାଜପୁରର ଦାନ ଅନବଦ୍ୟ । ଯେହେତୁ ଭାରତବର୍ଷର ପ୍ରାଚୀନ ଶକ୍ତି ମୂର୍ତ୍ତିମାନଙ୍କ ମଧ୍ୟରେ ଯାଜପୁରର ଅଧିଷ୍ଠାତ୍ରୀ ବିରଜାଙ୍କୁ ପ୍ରାଚୀନତମ ମହିଷମର୍ଦ୍ଦିନୀ ଦେବୀମୂର୍ତ୍ତି ରୂପେ ଇତିହାସ ମନସ୍କ ଗବେଷକମାନେ ଗ୍ରହଣ କରିଅଛନ୍ତି । ବିରଜାଙ୍କ ଦ୍ୱିଭୁଜ ବିଗ୍ରହକୁ ଐତିହାସିକ ରମାପ୍ରସାଦ ଚାନ୍ଦ ପୂର୍ବ ଗୁପ୍ତଯୁଗୀୟ ବୋଲି କହିଛନ୍ତି । ସୁତରାଂ ଦ୍ୱିଭୁଜା ବିରଜାଙ୍କୁ କେନ୍ଦ୍ର କରି କେବଳ ଓଡ଼ିଶାରେ ନୁହେଁ ସମଗ୍ର ଭାରତରେ ଶାକ୍ତ ଧର୍ମର କ୍ରମବିକାଶ ହୋଇ ଥିଲା । ସେଥିପାଇଁ ଶାକ୍ତପୀଠ ପରଂପରାରେ ବିରଜା ପୀଠକୁ ସ୍ୱତନ୍ତ୍ର ମାନ୍ୟତା ଦିଆଯାଇଅଛି । ଖ୍ରୀଷ୍ଟୀୟ ୬୯୩ରେ ଲିଖିତ ହେବଜ୍ରତନ୍ତ୍ରରେ ଭାରତର ପ୍ରମୁଖ ଚାରିଗୋଟି ଶକ୍ତିପୀଠ ମଧ୍ୟରେ ଉଡ୍ର ବା ଉଡ୍ଡୀୟାନ ପୀଠ ତନ୍ତ୍ର ଜଗତରେ ଆଦ୍ୟପୀଠ ରୂପେ ବର୍ଣ୍ଣନା କରାଯାଇ ବିରଜାଙ୍କୁ ସ୍ଥାନ ଦିଆଯାଇ କୁହାଯାଇଅଛି–

ଓଡ୍ରାଖ୍ୟ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍
ଓଡ୍ରପୀଠ ପଶ୍ଚିମେତୁ ତଥୈବୋଡ୍ରଶ୍ୱରୀଂ ଶିବାମ୍
କାତ୍ୟାୟନୀଂ ଜଗନ୍ନାଥମୋଡ୍ରେଶଂଚ ପ୍ରପୂଜୟେତ୍ ।

ଏଠାରେ ବିରଜାଙ୍କୁ କାତ୍ୟାୟନୀ ବୋଲି କୁହାଯାଇଅଛି । ଅଷ୍ଟମ ନବମ ଶତକରେ ବିରଜା କାତ୍ୟାୟନୀ ନାମରେ ପରିଚିତ ହେଲେ । ଭୌମରାଣୀ ତ୍ରିଭୁବନ ମହାଦେବୀ ନିଜ ଇଷ୍ଟଦେବୀ କାତ୍ୟାୟନୀଙ୍କ ପରି ପରାକ୍ରମଶାଳୀ ମନେକରୁଥିଲେ । ସେଥିପାଇଁ ତାଙ୍କୁ 'କାତ୍ୟାୟିନୀ ସିଂହାସନାରୂଢା' ବୋଲି ପ୍ରଶସ୍ତି ଗାନ କରାଯାଉଥିଲା । ବାମନ ପୁରାଣରେ କାତ୍ୟାୟନୀଙ୍କ ସଂପର୍କରେ ସର୍ବପ୍ରଥମ ଉଲ୍ଲେଖ ଥିବାର ଦେଖିବାକୁ ମିଳେ । ସେଥିରେ କାତ୍ୟାୟନୀ ଶିବପତ୍ନୀ ରୂପେ ଦର୍ଶାନଯାଇ ଦେବତେଜଃସମ୍ଭୂତା ବୈଷ୍ଣବୀ ଶକ୍ତିରୂପେ ବର୍ଣ୍ଣନା କରାଯାଇଛି । ବିଶିଷ୍ଟ ପ୍ରାଚ୍ୟବିଦ୍ୟା ଗବେଷକ ଡଃ ଆର ଜି ଭଣ୍ଡାରକରଙ୍କ ମତରେ ଆଦିମ ଅଧିବାସୀ କାତ୍ୟ ଜାତିଦ୍ୱାରା ଆରାଧିତା ଭାବେ ପରବର୍ତ୍ତୀ କାଳରେ କାତ୍ୟାୟନୀ ନାମରେ ପ୍ରସିଦ୍ଧ ଥିଲେ । ମହନୀୟତା ହେଉଛି, ବିରଜା ଦେବୀ କାତ୍ୟାୟନୀ ନାମରେ ବୈଷ୍ଣବୀ ଦେବୀ ରୂପରେ ଏକତା ଓଡ଼ିଶାରେ ପ୍ରସିଦ୍ଧ ଥିଲେ । ପରେ ଉଡ୍ରପୀଠ ଅଧିଶ୍ୱରୀ ରୂପେ ତାଙ୍କୁ ବିଭିନ୍ନ ତନ୍ତ୍ରଗୁଡ଼ିକରେ ବର୍ଣ୍ଣନା କରାଯାଇଅଛି ।

ଉଡ୍ର ବା ଓଡ୍ର ଦେଶକୁ ଚୀନ ପରିବ୍ରାଜକ ହୁଏନ୍‌ସାଂ ବିରଜା ମଣ୍ଡଳ ସହ ଚିହ୍ନିତ କରିଛନ୍ତି । ତାଙ୍କ ବର୍ଣ୍ଣନାନୁସାରେ ମେଦିନୀପୁର ଜିଲ୍ଲାର ଉତ୍ତରାଞ୍ଚଳ, ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାର କେତେକ ଅଞ୍ଚଳ ସେତେବେଳେ ଉଡ୍ର ଜନପଦ ନାମରେ ପରିଚିତ ଥିଲା । ଆହୁରି ମଧ୍ୟ ପରିବ୍ରାଜକଙ୍କ ବିବରଣୀରେ ଉଡ୍ର ଦେଶର ରାଜଧାନୀର ଅବସ୍ଥିତି ଯେପରି ଭାବରେ ବର୍ଣ୍ଣନା କରାଯାଇଅଛି, ସେଥିରୁ ତାହା ବର୍ତ୍ତମାନର ଯାଜପୁର ବୋଲି ଐତିହାସିକ ଡ଼ଃ ହରେକୃଷ୍ଣ ମହତାବ ମତ ଦେଇଛନ୍ତି । ସୁତରାଂ ବିରଜା ମଣ୍ଡଳ ଏକଦା ଉଡ୍ର ବା ଓଡ଼ିଶାକୁ ବୁଝାଉଥିଲା ଓ ବିରଜାଙ୍କୁ ଓଡ଼ିଶାର ଅଧିଷ୍ଠାତ୍ରୀ ଦେବୀର ମର୍ଯ୍ୟାଦା ମିଳିଥିଲା । ପରବର୍ତ୍ତୀ କାଳରେ ମହାଶକ୍ତି ବିରଜାଙ୍କ ଅଧିଷ୍ଠାନ ହେତୁ ପୀଠ ପରଂପରାରେ କୌଳଭୂମି ରୂପେ ଉଡ୍ଡୀୟାନ ପୀଠ ରୂପେ ଏହା ପ୍ରସିଦ୍ଧି ଅର୍ଜନ କରିଅଛି । ଜଗନ୍ନାଥ ସଂସ୍କୃତିର ଗବେଷକ ଶ୍ରୀଯୁକ୍ତ ସଦାଶିବ ରଥ ମତଦେଇ କହିଛନ୍ତି – ''ବୈତରଣୀ ତଟାରଭ୍ୟ ଯାବତ୍ ମହେନ୍ଦ୍ର ପର୍ବତଂ'' ତାବତ ଭୂମିର କେନ୍ଦ୍ର ଥିଲା ଉଡ୍ର ଜନପଦ । ସେଥିରୁ ହିଁ ଉଡ୍ଡୀୟାନ ପୀଠର ପରିକଳ୍ପନା ପରବର୍ତ୍ତୀ ସମୟରେ ଆସିଥିବା ସମ୍ଭବ । ପରବର୍ତ୍ତୀ କାଳରେ ଭାରତର ୫୧ଗୋଟି ସିଦ୍ଧ ପୀଠ ମଧ୍ୟରେ ଯାଜପୁର ଏକ ତନ୍ତ୍ରପୀଠ ରୂପେ ସର୍ବଭାରତୀୟ ପ୍ରସିଦ୍ଧି ଅର୍ଜନ କରିଛି ।

ଶାକ୍ତ ଧର୍ମଧାରା ବୌଦ୍ଧ ଓ ଜୈନଙ୍କ ଉପରେ ମଧ୍ୟ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ନିରୀଶ୍ୱରବାଦୀ ଜୈନମାନେ ବିରଜା ଉପାସନାରେ ଆକୃଷ୍ଟ ହୋଇ ଚକ୍ରେଶ୍ୱରୀ, ସରସ୍ୱତୀ, କାଳିକା, ଶ୍ୟାମା, ଚଣ୍ଡୀ, ବିଜୟା, ଧାରିଣୀ ପ୍ରଭୃତି ଦେବୀଙ୍କର ଉପାସନା କରିଥିଲେ । 'ଶାକ୍ତତନ୍ତ୍ର'ର 'ସାରସ୍ୱତ କଳ୍ପ, ପ୍ରଭାବରେ ସେମାନେ ଦେବୀ ବିରଜାଙ୍କୁ ମହା ସରସ୍ୱତୀ ଜ୍ଞାନ କରିଥିଲେ । ଜୈନ ସଂପ୍ରଦାୟରେ ମୂର୍ତ୍ତିପୂଜା ଓ ମନ୍ଦିର ନିର୍ମାଣର ପ୍ରେରଣାଦାତ୍ରୀ ହେଉଛନ୍ତି ଦେବୀ ବିରଜା । ଜୈନମାନଙ୍କ ସଦୃଶ ବୌଦ୍ଧମାନେ ମଧ୍ୟ ଶକ୍ତି ଉପାସନାକୁ ଆପଣାର କରିନେଇଥିଲେ । ପରିଣାମ ସ୍ୱରୂପ ବୌଦ୍ଧତନ୍ତ୍ରର ଉନ୍ମେଷ ଘଟି ବଜ୍ରଯାନ, କାଳଚକ୍ରଯାନ ଓ ସହଜଯାନ ପ୍ରଭୃତି ତାନ୍ତ୍ରିକ ପଦ୍ଧତି ଜନ୍ମ ନେଇଥିଲା । ବଜ୍ରଯାନ ତନ୍ତ୍ରସାଧନାର ଚାରିଗୋଟି ମୁଖ୍ୟ ପୀଠ ମଧ୍ୟରେ ଉଡ୍‌ଡ଼ୀୟାନ ଥିଲା ପ୍ରଥମ । ଉଡ୍‌ଡ଼ୀୟାନ ବା ଓଡ଼ିଶାରୁ ବୌଦ୍ଧତନ୍ତ୍ର ଜନ୍ମଲାଭ କରିଥିଲା ବୋଲି ଗବେଷକମାନଙ୍କର ମତ । ବ୍ରହ୍ମଯାମଳ ତନ୍ତ୍ରରେ ବିରଜା ଉତ୍ତରଦେଶ ଅଧିଷ୍ଠିତା ବୋଲି ଉଲ୍ଲେଖ ଅଛି–

''ରାମେଶ୍ୱରୀ ସେତୁବନ୍ଧେ ବିମଳା ପୁରୁଷୋତ୍ତମେ
ବିରଜା ଉଡ୍ରଦେଶେଚ କାମାକ୍ଷା ନୀଳ ପର୍ବତେ ।''

ଉଡ୍‌ଡ଼ୀୟାନ ତନ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି–

ଉଡ୍‌ଡ଼ୀୟାନ ପରଂପୀଠଂ ଯତ୍ର ବୈତରଣୀ ନଦୀ
ଉଡ୍ରଭୂମି ମହାକୌଳ ଯାବତ୍ ମହେନ୍ଦ୍ର ପର୍ବତେ ।''

ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ, ବିରଜା ପୀଠ ହିଁ ଉଡ୍‌ଡ଼ୀୟାନ ପୀଠ ଏବଂ ବିରଜାଙ୍କୁ କେନ୍ଦ୍ରକରି ବୌଦ୍ଧ ତନ୍ତ୍ରର ଉନ୍ମେଷ ଓ ବିକାଶ ଘଟିଥିଲା । ବିରଜାପୀଠ, ଲଳିତଗିରି, ରତ୍ନଗିରି, ଷୋଳମ୍ପୁର ପ୍ରଭୃତି ବିରଜା ମଣ୍ଡଳର ବ୍ୟାପକ ଅଞ୍ଚଳ ଓ ବୈତରଣୀ ଅବବାହିକାରୁ ପ୍ରାପ୍ତ ଅସଂଖ୍ୟ ତନ୍ତ୍ରମୂର୍ତ୍ତି ଏହାର ସତ୍ୟତା ପ୍ରତିପାଦନ କରିଥାଏ । ବୌଦ୍ଧ ତନ୍ତ୍ରସାଧକଙ୍କ ଦୃଷ୍ଟିରେ ବିରଜା ଥିଲେ ପ୍ରଜ୍ଞା ପାରମିତା । ଉଡ୍‌ଡ଼ୀୟାନ ତନ୍ତ୍ର ବର୍ଣ୍ଣନାନୁସାରେ ଖ୍ରୀଷ୍ଟପୂର୍ବ କାଳରେ ପ୍ରଜ୍ଞାପାରମିତା ସୂତ୍ର ଏହି ପୀଠରେ ରଚନା କରାଯାଇଥିଲା । ୬୯୫ ଖ୍ରୀଷ୍ଟାବ୍ଦରେ ଯାଜପୁରର ଭୌମରାଜା ପ୍ରଥମ ଶୁଭଙ୍କର ଦେବ ବୌଦ୍ଧ ସନ୍ନ୍ୟାସୀ ପ୍ରଜ୍ଞାଙ୍କ ହସ୍ତରେ ''ଗଣ୍ଡବ୍ୟୁହ'' ଚୀନ ଦେଶର ରାଜା ତେସିଙ୍ଗଙ୍କ ନିକଟକୁ ପ୍ରେରଣ କରିଥିଲେ ଏବଂ ପ୍ରଜ୍ଞା ଏହି ଗଣ୍ଡବ୍ୟୁହର ପ୍ରଜ୍ଞାପାରମିତା ସୂତ୍ରକୁ ହାତରେ ଲେଖି ଚୀନ୍ ସମ୍ରାଟ୍‌ଙ୍କୁ ଅର୍ପଣ କରିଥିଲେ । ବିରଜାପୀଠ ଏବଂ ଏହାର ସନ୍ନିକଟ ପୀଠ ସମୂହରେ ସାଧନାର ସିଦ୍ଧି ଲାଭ କରିଥିବା ଅଗଣିତ ତନ୍ତ୍ର ସାଧକ ଭାରତୀୟ ଶାକ୍ତ ତନ୍ତ୍ରକୁ ସମଗ୍ର ବିଶ୍ୱରେ ପ୍ରସାର କରିଥିଲେ ।

ଦେବୀ ବିରଜା ହେଉଛନ୍ତି ଜଗଜ୍ଜନନୀ, ସୃଷ୍ଟି–ସ୍ଥିତି–ପ୍ରଳୟର ଅଧିକାରିଣୀ । ତାଙ୍କର ପ୍ରସିଦ୍ଧି ପାଇଁ ଓଡ଼ିଶାର ଭୌଗଳିକ ଇତିହାସରେ ବିରଜା କ୍ଷେତ୍ର ଏକ ସ୍ୱତନ୍ତ୍ର ମଣ୍ଡଳ (Zone or Circle) ଅର୍ଥାତ୍ ବିରଜା ମଣ୍ଡଳ ରୂପେ ଆଖ୍ୟାତ ହୋଇ ଜଗନ୍ନାଥ ମଣ୍ଡଳର ଊର୍ଦ୍ଧ୍ୱରେ ଥିଲା । ସ୍କନ୍ଦ ପୁରାଣ ( ୨–୨–୧୨, ୭୪) ମତରେ–

''ଦକ୍ଷିଣସ୍ୟୋ ଦଧେସ୍ତୀରେ – ନୀଳାଚଳ ବିଭୂଷତମ୍
ଦଶଯୋଜନ ବିସ୍ତୀର୍ଣ୍ଣଂ ଯାବତ୍ – ବିରଜା ମଣ୍ଡଳମ୍ ।''

ଅର୍ଥାତ୍, ଜଗନ୍ନାଥ ମଣ୍ଡଳ ଓ ବିରଜା ମଣ୍ଡଳ ପରସ୍ପର ସଂଯୁକ୍ତ ଥିଲା । ବିରଜା ମଣ୍ଡଳର ଦକ୍ଷିଣସୀମା ପର୍ଯ୍ୟନ୍ତ ଜଗନ୍ନାଥ ମଣ୍ଡଳ ଦଶଯୋଜନ ବିସ୍ତୃତ ଥିଲା । ବିରଜା ମଣ୍ଡଳର ସୀମା ନିର୍ଦ୍ଧାରଣ କରିବାକୁ ଯାଇ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହନ୍ତି – 'ବିରଜା –ପଞ୍ଜିକା' ପ୍ରଚଳିତ ଅଞ୍ଚଳ ହିଁ ବିରଜା ମଣ୍ଡଳ (ଯେପରି ଜଗନ୍ନାଥ ମଣ୍ଡଳରେ 'ଜଗନ୍ନାଥ– ପଞ୍ଜିକା' ମେଦିନପୁର ସମେତ ବର୍ତ୍ତମାନର ସମଗ୍ର ଯାଜପୁର ଜିଲ୍ଲା, କେନ୍ଦୁଝର, ମୟୂରଭଂଜ ଏବଂ ସିଂହଭୂମି (ବର୍ତ୍ତମାନ ବିହାରରେ) ଜିଲ୍ଲା । ଏହି ମଣ୍ଡଳର ବ୍ୟାପ୍ତି ଉତ୍ତରରେ ହୁଗୁଳୀ (ଆଧୁନିକ ଗଂଗା) ନଦୀଠାରେ ଦକ୍ଷିଣରେ ମହାନଦୀର ଦକ୍ଷିଣ ତୀର ପର୍ଯ୍ୟନ୍ତ ବ୍ୟାପ୍ତଥିଲା ।

କେବଳ ବିରଜା ଦେବୀଙ୍କର ବୈଶିଷ୍ଟ୍ୟ ବ୍ୟାଖ୍ୟାନ କଲେ ଏକ ପୁରାଣ ହେବ । ଏ ସମ୍ବନ୍ଧରେ ଅଧିକ ଜାଣିବାକୁ ହେଲେ ମହାଭାରତ, ବ୍ରହ୍ମପୁରାଣ, ବାୟୁ ପୁରାଣ, ହରିବଂଶ ବିରଜା କ୍ଷେତ୍ର ମାହାତ୍ମ୍ୟ, କପିଳ ସଂହିତା, କୁବ୍‌ଜିକା ତନ୍ତ୍ର,

ମନ୍ତ୍ର ମହାର୍ଣ୍ଣବ ସ୍କନ୍ଦ ପୁରାଣାଦି ଗ୍ରନ୍ଥ ଅଧ୍ୟୟନ କରିବାକୁ ହେବ । ସେ ଯାହା ହେଉନା କାହିଁକି, ନିମ୍ନରେ ସଂକ୍ଷିପ୍ତ ଭାବରେ ଦେବୀଙ୍କୁ ସୋମବଂଶୀ ରାଜାମାନେ ବିଶେଷତଃ ଯଯାତିକେଶରୀ (୧ମ ଓ ୨ୟ ଯଯାତି) ଶ୍ରଦ୍ଧା, ଭକ୍ତି ଓ ସମ୍ମାନର ସହିତ ନିଜର ଇଷ୍ଟଦେବୀ ରୂପେ ଉପାସନା କରୁଥିଲେ ତାହା କତିପୟ ହେତୁ ବା କାରଣ ନିମ୍ନରେ ପ୍ରଦତ୍ତ ହେଲା–

(କ) ବିରଜେ ବିରଜା ମାତା ବ୍ରହ୍ମଣାଂ ସଂପ୍ରତିଷ୍ଠିତା
ଯସ୍ୟାଃ ସଦର୍ଶନାନ୍ ମର୍ତ୍ତ୍ୟଃ ପୁନାତ୍ୟା ସପ୍ତମଂ କୁଳମ୍''
ଏ କୈବାହଂ ଜଗତ୍ୟତ୍ର ଦ୍ୱିତୀୟାକା ମମାପରା
ପଶ୍ୟେତାଂ ଦୃଷ୍ଟମଯ୍ୟେବ ବିଶନ୍ତୋ ମଦ୍‌ବିଭୂତୟଃ ।
କାତ୍ୟାୟନୀଂ– ଜଗନ୍ନାଥଂ ଉଡ୍ରେଶଂ ଚ ପ୍ରପୂଜୟେତ୍''
(ଚଣ୍ଡୀପୁରାଣ)

(ଖ) କପିଳ ସଂହିତା–

କଥୟାମି ମହାପୁଣ୍ୟଂ ବିରଜାଖ୍ୟଂ ସୁନିର୍ମଳମ୍
ଯତ୍‌କ୍ଷେତ୍ରଂ ସୃଷ୍ଟିରକ୍ଷାର୍ଥଂ ବ୍ରହ୍ମଣାଚକୃତଂ ପୁରା ॥
ତତ୍ରଶ୍ରୀ ବିରଜାଦେବୀ ଭୁକ୍ତିମୁକ୍ତି ପ୍ରଦାୟିନୀ
ସାଧକାନାଂ ହିତାର୍ଥାୟ ବିରଜା ଉତ୍କଳେ ସ୍ଥିତ ॥

(ଗ) ନାଭିଗୟାର ମହାତ୍ମ୍ୟ –

ତତ୍ର ଶ୍ରୀ ବିରଜାକ୍ଷେତ୍ରେ ଦେବ୍ୟା ଇଶାନ୍ କୋଣତଃ
ଗୟାନାଭି ମହାପୁଣ୍ୟଃ ପିତୃଣାଂ ମୁକ୍ତିଦାୟକଃ ॥
ତତ୍ର ପିଣ୍ଡଂ ପ୍ରଯଚ୍ଛନ୍ତି ନରାଯେ ବୀତକଲ୍ମଷାଃ
ପିତୃ ନୃଦ୍ଧୃତ୍ୟ ନରକାତ୍ ତେବ୍ରଜନ୍ତି ପଦଂ ହରୋଃ ॥

(ଘ) ବୈତରଣୀ ତୀର୍ଥର ବୈଶିଷ୍ଟ୍ୟାବଳୀ–

ମଧ୍ୟେ ବହତି କଲ୍ୟାଣୀ ଗଂଗା ହର ବରାହୟୋଃ
ବୈତରଣାଖ୍ୟାୟ ଗଂଗା ଯାଭୁବି କୀର୍ତ୍ତ୍ୟତେ ବୁଧୈଃ ॥
ଆସ୍ତ ବୈତରଣୀ ନାମ ନଦୀ ତୈଲୋକ ବିଶ୍ରୁତା
ସାବତୀର୍ଣ୍ଣା ଗୟାକ୍ଷେତ୍ରେ ପିତୃଣାଂ ତାରଣାୟ ବୈ ॥
(ବାୟୁ ପୁରାଣ, ୨ୟ ଭାଗ, ଶ୍ଳୋକ ୪ ଓ ୫)

ତତୋ ବୈତରଣୀଂସର୍ବେ ପାଣ୍ଡବା ଦ୍ରୋପଦୀ ତଥା
ଅବତୀର୍ଯ୍ୟ ମହାଭାଗା ସ୍ତର୍ପୟନ ଚକ୍ରିରେ ପିତୃନ୍ ॥
(ମହାଭାରତ, ବନ ପର୍ବ)

ଆସ୍ତେ ବୈତରଣୀ ତତ୍ର ସର୍ବ ପାପ ହରାନଦୀ
ଯସ୍ୟାଂ ସ୍ନାତ୍ୱା ନରଶ୍ରେଷ୍ଠ ସର୍ବ ପାପୌଃ ପ୍ରମୁଚ୍ୟତେ ॥
(ବ୍ରହ୍ମ ପୁରାଣ)

ଅଭିନବ ଯଯାତି ନଗରରେ ଯଯାତି କେଶରୀ ବିରଜା ମନ୍ଦିରର ପଶ୍ଚାଦ୍‌ଭାଗରେ ଅବସ୍ଥିତ ବ୍ରହ୍ମକୁଣ୍ଡ ନିକଟରେ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ସେଥିପାଇଁ ସମଗ୍ର ଯାଜପୁର କାଳକ୍ରମେ ବିରଜା ନଗର ବା ବିରଜା ନଗରୀ ପରିବର୍ତ୍ତେ ଯଜ୍ଞପୁର ବା ଯାଜପୁର ନାମରେ ଅଭିହିତ ହେଲା । ସୁଖର କଥା, ଅଦ୍ୟାବଧି ଯାଜପୁର ସହରର ନୂଆ ବସ୍‌ଷ୍ଟାଣ୍ଡ ନିକଟରେ ଯାଗେଶ୍ୱରପୁର ନାମରେ ଗ୍ରାମଟିଏ ଅଛି । ଡ଼ଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଥମ ଯଯାତିଙ୍କୁ ଦଶାଶ୍ୱମେଧ ଯଜ୍ଞ ନିମନ୍ତେ କାନ୍ୟକୁବ୍‌ଜରୁ ୧୦ହଜାର ବ୍ରାହ୍ମଣ ଆନୟନ, ଶୁଭସ୍ତମ୍ଭ, ଦଶାଶ୍ୱମେଧ ଘାଟ ଓ ସପ୍ତମାତୃକା ମୂର୍ତ୍ତିର ନିର୍ମାଣ ରୂପେ ଶ୍ରେୟଃ ପ୍ରଦାନ କରିଥିଲେ ମଧ୍ୟ ସେ ପରବର୍ତ୍ତୀ ସମୟରେ ତାଙ୍କର ମତ ପରିବର୍ତ୍ତନ କରି ପ୍ରଥମ ଯଯାତି ସ୍ଥାନରେ (ଦ୍ୱିତୀୟ ଯଯାତି–ଚଣ୍ଡୀହର)ଙ୍କ ସ୍ୱୀକାର/ଗ୍ରହଣ କରିଛନ୍ତି ।

ଡ଼ଃ ହରେକୃଷ୍ଣ ମହତାବ– ଉତ୍କଳରେ ପ୍ରଚଳିତ କିମ୍ବଦନ୍ତୀ, ରାଧାନାଥ ଗ୍ରନ୍ଥାବଳୀ (ଯଯାତି କେଶରୀ) ଓ ସୋମବଂଶୀ ଦ୍ୱିତୀୟ ଯଯାତିଙ୍କ ସୁବର୍ଣ୍ଣପୁର (ଆଧୁନିକ ସୋନପୁର)ରୁ ପ୍ରଦତ୍ତ ମରଞ୍ଜପୁର – ତାମ୍ର ଶାସନକୁ ଅନୁସରଣ କରି ସେଗୁଡ଼ିକର ସମନ୍ୱୟରେ ଏକ ଅଭିନବ ଅଭିମତ ପ୍ରଦାନ କରିଥିଲେ ମଧ୍ୟ ତାହା ସର୍ବାଙ୍ଗ ରୂପେ ଗ୍ରହଣୀୟ ନୁହେଁ ।

ତାମ୍ର ଫଳକ ଓ ଶିଳାଲେଖାରୁ ଯେଉଁ ବଂଶର ନାମ ମିଳେ, ତାହା କେଶରୀ ବଂଶ ବୋଲି ସଂଖ୍ୟାଧିକ ଐତିହାସିକ ସ୍ୱୀକାର କରିଛନ୍ତି । ତେଣୁ ପ୍ରାୟ ସମସ୍ତ ଐତିହାସିକ ସେମାନଙ୍କୁ ସୋମବଂଶୀ କେଶରୀ ବୋଲି

ଗ୍ରହଣ କରିଛନ୍ତି କିନ୍ତୁ ଡ଼ଃ ହରେକୃଷ୍ଣ ମହତାବଙ୍କ ମତରେ ବିରଜାଙ୍କର ପ୍ରିୟ ବାହନ ସିଂହ (କେଶରୀ) ଯଯାତି କେଶରୀଙ୍କୁ ପ୍ରାଣଦଣ୍ଡ ରକ୍ଷା କରିଥିବାରୁ ଉତ୍କଳ ସିଂହାସନ ଆରୋହଣ ପରେ ଯଯାତି (୧ମ) ନିଜକୁ କେଶରୀ ଆଖ୍ୟାରେ ଭୂଷିତ କରିଥିବା ସଂପୂର୍ଣ୍ଣ ଭ୍ରମାତ୍ମକ । କାରଣ ପ୍ରଥମ ଯଯାତି ପୂର୍ବରୁ ସୋମଗୁପ୍ତ ବଂଶରେ ଅନ୍ୟୂନ ୪/୫ ଜଣ କେଶରୀ ଉପାଧିଧାରୀ ରାଜା ଥିଲେ । ସେମାନେ ହେଲେ ଦ୍ୱିତୀୟ ଇନ୍ଦ୍ରବଳ ଓରଫ ଭବଦେବ ରଣ କେଶରୀ ଚିନ୍ତାଦୁର୍ଗ, (୬ଷ୍ଠ ପିଢ଼ି) ହର୍ଷଗୁପ୍ତଙ୍କର ଦ୍ୱିତୀୟ ପୁତ୍ର ରଣ କେଶରୀ(୯ମ ପିଢ଼ି) ଉଦ୍ୟୋତ କେଶରୀ ( ମହାଭବଗୁପ୍ତ) (୧୮ଶ ପିଢ଼ି), ଲଲାଟେନ୍ଦୁ କେଶରୀ (ମହା ଶିବଗୁପ୍ତ) (୧୯ପିଢ଼ି) ପୁରଞ୍ଜୟ କେଶରୀ (୨୦ ପିଢ଼ି) ଓ ପରିଶେଷରେ (୨୧ଶ ପିଢ଼ି)/କର୍ଣ୍ଣଦେବ ଓରଫ କର୍ଣ୍ଣକେଶରୀ ବା ସୁବର୍ଣ୍ଣ କେଶରୀ । ତେଣୁ ମାଦଳାପାଞ୍ଜିରେ ପ୍ରଦତ୍ତ ଅଧିକାଂଶ ସୋମବଂଶୀ ରାଜାଙ୍କୁ ଅମୁକ - କେଶରୀ ବୋଲି ଉଲ୍ଲେଖ କରିବା ଅମୂଳକ ନୁହେଁ ।

କିମ୍ବଦନ୍ତୀ ଅନୁସାରେ (ଦ୍ୱିତୀୟ, ଯଯାତି) ଯଯାତି କେଶରୀ ବିରଜାଙ୍କୁ ନିଜ ବଂଶର ଦେବୀ ରୂପେ ଗ୍ରହଣ କରି ପୂଜା - ଉପାସନା କରୁଥିଲେ ଏବଂ ବୈତରଣୀର ଶାଖା ନଦୀ ମନ୍ଦାକିନୀ ନଦୀ ତୀରରେ (ବିରଜା ମନ୍ଦିରର ଅନ୍ତଃପାତୀ) ଗୋଟିଏ ରାଜପ୍ରାସାଦ ନିର୍ମାଣ କରିଥିଲେ ଯାହାର ସ୍ମୃତି ବହନ କରି ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ ନଅର -ପଦା (Place of Site) ନାମକ ଏକ ସୁ-ଉଚ୍ଚ ମାଟି ମୁଣ୍ଡିଆ (Earthern Mound) ଦୃଷ୍ଟିଗୋଚର ହୁଏ ।

ପ୍ରାକ୍ ଚଣ୍ଡୀହର କାଳୀନ ବିରଜା କ୍ଷେତ୍ରର ସାଂସ୍କୃତିକ ଅବସ୍ଥା - ପ୍ରତାପରୁଦ୍ର ଦେବଙ୍କ ସଭା ପଣ୍ଡିତ କବି ଡ଼ିଂଡ଼ିମ ଜୀବନ ଦୋଚାର୍ଯ୍ୟଙ୍କ ରଚିତ ''ଭକ୍ତି ଭାଗବତ'' ମହାକାବ୍ୟରେ ବର୍ଣ୍ଣିତ ଅଛି ଯେ ଉଦ୍ୟୋତ କେଶରୀଙ୍କ ଗୁରୁ (ଯେ କି ଦ୍ୱିତୀୟ ଯଯାତିଙ୍କର ମଧ୍ୟ ଗୁରୁଥିଲେ) ଭବଦେବ ପୃଥିବୀ (ସମଗ୍ର ଉତ୍କଳ) ତନ୍ତ୍ରସାଗର (ବୌଦ୍ଧତନ୍ତ୍ର)ରେ ନିମଜ୍ଜିତ ଥିଲାବେଳେ ସେ ତାଙ୍କୁ ଉଦ୍ଧାର କରିଥିଲେ, ଯଥା-

ଉଦ୍ୟୋତ କେଶରୀ କୁଳସ୍ୟ ଗୁରୁର୍ବଭୁଜ
ତେଷ୍ଟୁ ପ୍ରସିଦ୍ଧ ମହିମା ଭବଦେବ ନାମ ॥
ସୋମେଶ୍ୱର କୁଳସ୍ୟ ସମର୍ଚନୀୟୋ
ବଂଶ ସତେନ କୃତିନୈବ କୃତ ପ୍ରତିଷ୍ଠା ॥
ଯେନୋଦ୍ଧୃତେ ସକଳ ବିସ୍ତୃତ ଯନ୍ତ୍ରସାରେ
ତନ୍ତ୍ରାର୍ଣ୍ଣବେ ମହତି ମଜ୍ଜତି ସର୍ବ ଲୋକଃ ॥

( J. K. H. R. S. Vol.-1)

ଏ ଶ୍ଳୋକର ତାତ୍ପର୍ଯ୍ୟ ହେଉଛି ଯେ ଭବଦେବ ତନ୍ତ୍ରବାଦକୁ ଲୋପକରି ବୈଦିକ ଧର୍ମର ପୁନଃ ସ୍ଥାପନାର୍ଥେ ଯଯାତିକେଶରୀ(୨ୟ) ତଥା ତାଙ୍କର ଧର୍ମନୀତିରେ ଯେଉଁ ପରଂପରା ପ୍ରତିଷ୍ଠା କରିଥିଲେ ତାହା ଉଦ୍ୟୋତ କେଶରୀ ତାଙ୍କର ଗୁରୁ ଭବଦେବଙ୍କ ସାହାଯ୍ୟରେ ସଂପୂର୍ଣ୍ଣ କରିଥିଲେ ।

ଦ୍ୱିତୀୟ ଯଯାତି ଯାଜପୁର ସିଂହାସନ ଅଧିକାର ପରେ ତା'ର ନାମ ଦେଲେ ଅଭିନବ ଯଯାତି ନଗର । ସେଠାରେ ଚଣ୍ଡୀହର ଯଯାତି ସ୍ଥାପନ କରିଥିବା କୀର୍ତ୍ତି ସକଳ କିମ୍ବଦନ୍ତୀ ଆକାରରେ ଉତ୍କଳର ପୁରପଲ୍ଲୀରେ ସର୍ବତ୍ର ପ୍ରଚଳିତ ଅଛି । ଏହି କିମ୍ବଦନ୍ତୀ ଅନୁସାରେ ସେ ଯାଜପୁର କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞର ଅନୁଷ୍ଠାନ ପାଇଁ କନୌଜ (ପ୍ରାଚୀନ କାନ୍ୟକୁବ୍ଜ)ରୁ ଦଶହଜାର ଶ୍ରୋତ୍ରିୟ ବ୍ରାହ୍ମଣ ଅଣାଇ ଥିଲେ । ଏକଥା ନିମ୍ନୋକ୍ତ ବହୁ ପ୍ରଚଳିତ ଶ୍ଳୋକରୁ ଜଣାପଡ଼େ, ଯଥା-

କନୌଜ ଦେଶାତ୍ ସ୍ୱୟମାହୃତା ଯେ
ଦଶାଶ୍ୱମେଧାୟ ପୁରାବି ଧାତ୍ରା ।
ମର୍ତ୍ତ୍ୟସ୍ଥିତା ସ୍ୱର୍ଗଗତାଶ୍ଚ ବିପ୍ରା
ସ୍ତେଭ୍ୟୋ ଦ୍ୱିଜେଭ୍ୟଃ ପ୍ରଦଦାମି ଚାର୍ଘ୍ୟମ୍ ॥

(ଆଚାର୍ଯ୍ୟ, ପ୍ୟାରୀମୋହନ । ଉତ୍କଳ ଇତିହାସ, ୧୮୭୫)

ଚଣ୍ଡୀହର ଯଯାତିକେଶରୀ ଯଜ୍ଞ ମାଧ୍ୟମରେ ଦେବୀ ବିରଜାଙ୍କୁ ବୌଦ୍ଧ ଧର୍ମ ସଂସ୍କୃତିକ ପରଂପରା (ଭୌମଙ୍କର ଯୁଗୀୟ) କବଳରୁ ମୁକ୍ତକରି ଏକ ପ୍ରସିଦ୍ଧ ଶାକ୍ତ ଦେବତା ରୂପେ ପୁନଃ ପ୍ରତିଷ୍ଠିତ କରାଇଥିବାରୁ ଦେବୀ ବିରଜାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭକ୍ତି ସମ୍ମାନ ବହୁଗୁଣିତ ହେବା ସ୍ୱାଭାବିକ । ଯଯାତି କେଶରୀ ତନ୍ତ୍ରବାଦର ମୂଳୋତ୍ପାଟନ

କରି ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା ପୂର୍ବକ ଅକ୍ଷୟ କୀର୍ତ୍ତି ଅର୍ଜନ କରିଯାଇଛନ୍ତି । କେବଳ ତାଙ୍କର ପ୍ରଚେଷ୍ଟା ଫଳରେ ଆଜି ଦେବୀ ବିରଜା ଏକ ସାତ୍ତ୍ୱିକ ଗୁଣ ସଂପନ୍ନା (ବିରଜା ରଜଃ ରହିତ ଅର୍ଥାତ୍ ନିଷ୍କଳଙ୍କ ଶକ୍ତି ଦେବୀ ରୂପେ ସାବିତ୍ରୀ ମନ୍ତ୍ରରେ ପୂଜା ପାଉଛନ୍ତି ।)

ପୂର୍ବ ପ୍ରଦତ୍ତ କୀର୍ତ୍ତି ତାଲିକାରୁ ଅଧିକାଂଶ ଶାକ୍ତ କୀର୍ତ୍ତିଗୁଡ଼ିକୁ ଚଣ୍ଡୀହର ଯଯାତିଙ୍କ ନାମରେ ଆରୋପ କରାଗଲେ ଅସଂଗତ ହେବନାହିଁ । ଅଠରନଳାର ବାମତୀରସ୍ଥ ଗ୍ରାମ ଚଣ୍ଡେଶ୍ୱର (ଚଣ୍ଡୀଶ୍ୱର) ଓ ଚଣ୍ଡେଶ୍ୱର ମହାଦେବ ତାଙ୍କରି କୀର୍ତ୍ତି । କାରଣ ସେ ଥିଲେ ଉଭୟ ଚଣ୍ଡୀ (ଦୁର୍ଗା) ହର ଶିବ ଅର୍ଥାତ୍ ଅର୍ଦ୍ଧନାରୀଶ୍ୱରଙ୍କର ପରମ ଉପାସକ । ଏକଥା ତାଙ୍କ ନାମ (ଚଣ୍ଡୀହର)ରୁ ସୂଚିତ ହୁଏ । ତାଙ୍କର ମରଞ୍ଜମୁର ଦାନପତ୍ରରେ ଉଲ୍ଲେଖ ଅଛିକି ସେ ସୁବର୍ଣ୍ଣପୁର (ଆଧୁନିକ ସୋନପୁର)ର ଅଧିଷ୍ଠାତ୍ରୀ ଦେବୀ ଭଗବତୀ ପଞ୍ଚାମ୍ବରୀ ଭଦ୍ରାମ୍ବିକାଙ୍କର ପରମ ଭକ୍ତ ଥିଲେ । ଅନ୍ୟାନ୍ୟ ତାମ୍ର ଲେଖାମାନଙ୍କରୁ ଜଣାଯାଏ ଯେ ଚଣ୍ଡୀହର ଜଣେ ପ୍ରଧାନ ଚଣ୍ଡୀ ବା ଦେବୀ ଉପାସକ ଥିଲେ । ତେଣୁ ବିରଜାଙ୍କ ପ୍ରତି ତାଙ୍କର ନିଷ୍ଠା ଓ ଭକ୍ତି ରହିବା ସ୍ୱାଭାବିକ ।

ଉତ୍କଳ ଅଧିକାର ପରେ ଚଣ୍ଡୀହର ସୁବର୍ଣ୍ଣପୁର ପରିହାର କରି ଶାକ୍ତ କ୍ଷେତ୍ର ବିରଜା ନଗରରେ ଅବସ୍ଥାନ କରିବାକୁ ଲାଳାୟିତ ହେଲେ । କାରଣ ମହାଭାରତ ଯୁଗରୁ ଆରମ୍ଭ କରି ତତବଧି ବିରଜା କ୍ଷେତ୍ର ଏକ ବିଶିଷ୍ଟ ଶାକ୍ତ କ୍ଷେତ୍ର ରୂପେ ସମଗ୍ର ଉତ୍କଳ ତଥା ଭାରତରେ ପ୍ରସିଦ୍ଧି ଲାଭ କରିଥିଲା । ଯଜ୍ଞ ମାଧ୍ୟମରେ ଦେବୀ ବିରଜାଙ୍କର ସଂସ୍କାର କରିବା ଥିଲା ମୂଳ ଲକ୍ଷ୍ୟ ।

ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ତନ୍ତ୍ର ସାଧନାର ଉନ୍ମେଷ ଘଟିଲାଣି । ପଶ୍ଚିମ ଓଡ଼ିଶାରେ ଶାବରତନ୍ତ୍ରର ଚର୍ଚ୍ଚା ଓ ପ୍ରୟୋଗ ଚାଲିଥାଏ । ଦକ୍ଷିଣ କୋଶଳ ବା ପାଟଣାଗଡ଼ ତନ୍ତ୍ର ଚର୍ଚ୍ଚାରେ ମୁଖ୍ୟପୀଠ ଥିଲାବେଳେ ପାଟଣେଶ୍ୱରୀ, କୋଶଳେଶ୍ୱରୀ, ସମଲେଶ୍ୱରୀ, ମାଣିକେଶ୍ୱରୀ, ସ୍ତମ୍ଭେଶ୍ୱରୀ ବା ଖମ୍ଭେଶ୍ୱରୀଙ୍କ ପୂଜାର୍ଚ୍ଚନା ଚାଲିଥାଏ । ତନ୍ତ୍ର ବିଶାରଦ ଧନ୍ୱନ୍ତରୀ ଗୁରୁ ରୂପେ ସାଧକ ସାଧିକାମାନଙ୍କୁ ତନ୍ତ୍ର ଶିକ୍ଷା ଦେଉଥାନ୍ତି । ସେହି ସମୟରେ ଓଡ଼ିଶାର ସାତଜଣ ସାଧିକା ଥିଲେ । ଜ୍ଞାନଦେଇ ମାଲୁଣୀ, ନିତେଇ ଧୋବଣୀ, ଲୁହୁକୁଟି ଲୁହୁରାଣୀ, ସୁକୁଟି ଚମାରୁଣୀ, ପତର ସଉରୁଣୀ, ଗଂଗା ଗଉଡୁଣୀ ଓ ଶୁଆ ତେଲୁଣୀ । ଯାଜପୁରର ନିତେଇ ଧୋବଣୀ ବୋଧହୁଏ ସେଠାରେ ଶିକ୍ଷା ପାଇ ଦେବୀ ବିରଜାଙ୍କୁ ସାଧନାରେ ସିଦ୍ଧି କରାଇ ବହୁ ଅଲୌକିକ ସିଦ୍ଧିର ଅଧିକାରିଣୀ ହୋଇଥାନ୍ତି । ପ୍ରବାଦ ଅଛି, କାଉଁରୀ କାମଚଣ୍ଡୀ ଦେଶର କିମିଆ (ଗାରେଡ଼ିବିଦ୍ୟା) ଜାଣିଥିବା ଟିକେଇ ବା ପିତେଇ ପତର ସଉରୁଣୀ ନାମରେ ଜଣେ ସ୍ତ୍ରୀ ଲୋକ ଗୋଟିଏ ବରଗଛରେ ଚଢ଼ି ମନ୍ତ୍ରବଳରେ ଉଡ଼ି ଉଡ଼ି ଆସୁଥାଏ । ତା'ର ଉଦ୍ଦେଶ୍ୟ ତନ୍ତ୍ରର ଦେବତା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବ । ପୁରୀ ନିକଟସ୍ଥ ଚାରିନଳା ଗ୍ରାମ ନିକଟରେ ସେ ବରଗଛ ଉଡ଼ିଯିବା ଯୋଗୁଁ ତା'ର ଛାଇ ପୋଖରୀ ଭିତରେ ପଡ଼ିଲା । ନିତେଇ ଧୋବଣୀ ସେତେବେଳକୁ ଯାଜପୁର ଛାଡ଼ି ସେହି ଗାଁରେ ରହି ଶ୍ରୀଜଗନ୍ନାଥଙ୍କ ଦର୍ଶନ କରୁଥାଏ । ନିଜର କୌଳିକ ବୃତ୍ତି ଅନୁଯାୟୀ ଗାଁର ଲୋକଙ୍କର ଲୁଗାପଟା ଆଣି ସେଇ ପୋଖରୀରେ କାଚୁଥାଏ । ବିରଜାଙ୍କ ଦୟାରୁ ସେ ତନ୍ତ୍ର ବିଦ୍ୟାରେ ପାରଙ୍ଗମ ହୋଇଯାଇଛି । ଛାଇ ଦେଖି କିମିଆଁ ବଳରେ ଉକ୍ତ ଗଛକୁ ବନ୍ଧନ କରିଦେଲା । ଗଛ ସେଇଠି ତଳକୁ ଓହ୍ଲାଇ ଅଟକି ଗଲା । ଲୋକେ ସେହିଦିନୁ ସେହି ଗଛକୁ କାଉଁରୀ ବରଗଛ ବୋଲି କହନ୍ତି । ପିତେଇ ହାରିଯାଇ ନିତେଇର ଶରଣ ନେଇଗଲା । ଦୁହେଁ ସଂଗାତ ବସିଲେ । ପରେ ନିତେଇ ଧୋବଣୀ ସାଥୀରେ ପିତେଇ ଯାଜପୁର ଆସି ବସବାସ କରୁଥିଲା ବୋଲି ଜନଶ୍ରୁତି ଅଛି ।

ମନ୍ତ୍ରୀ ବାସୁଦେବ ସେନାପତି କେଶରୀ ବଂଶର ରାଜାମାନଙ୍କ ପ୍ରତି ବୀତସ୍ପୃହ ହୋଇ ଉଠିଲେ । ଦାକ୍ଷିଣାତ୍ୟରୁ ଚୋଡଗଙ୍ଗଦେବଙ୍କୁ ଓଡ଼ିଶା ଜୟ କରିବା ନିମନ୍ତେ ଡ଼ାକି ଆଣିଲେ । ଚୋଡଗଙ୍ଗଦେବ ଥିଲେ ବୀର ଓ ଉତ୍ସାହୀ ଯୁବକ । ତାଙ୍କର ବିଭିନ୍ନ ଶାସ୍ତ୍ରରେ ପାଣ୍ଡିତ୍ୟ ମଧ୍ୟ ଥିଲା । ତଥାପି ତନ୍ତ୍ରଶାସ୍ତ୍ରରେ ଥିଲା ତାଙ୍କର ବିଶେଷ ଆଗ୍ରହ । ସେ ଓଡ଼ିଶା ଆସିବା ନିମନ୍ତେ ନିଜ ମା'

ରାଜସୁନ୍ଦରୀଙ୍କ ଅନୁମତି ଚାହିଁଲେ । ରାଣୀ ରାଜସୁନ୍ଦରୀଙ୍କର ପୁରୀଠାରେ ନିତେଇ ଧୋବଣୀଙ୍କ ସହିତ ସାକ୍ଷାତ ହୋଇଥିଲା । ପୁରୀରେ ନିତେଇଙ୍କ ତନ୍ତ୍ରବିଦ୍ୟା ସାଧନ ପ୍ରତି ରାଣୀ ରାଜସୁନ୍ଦରୀ ଆକୃଷ୍ଟ ହୋଇଥିଲେ ଓ ଦୁହେଁ ସଂଗାତ ବସିଥିଲେ । ଚୋଡଗଙ୍ଗ ଦେବ ମାତାଙ୍କଠାରୁ ଚିଠି ଧରି ଯାଜପୁରଠାରେ ମନ୍ତ୍ରୀ ବାସୁଦେବଙ୍କ ମାଧ୍ୟମରେ ଉପସ୍ଥିତ ହେଲେ ।

ନିତେଇ ଧୋବଣୀଙ୍କ ସହିତ ଚୋଡଗଙ୍ଗଦେବଙ୍କ ପ୍ରଥମ ସାକ୍ଷାତ କଥା ମାଦଳାପାଞ୍ଜିରେ ବର୍ଣ୍ଣିତ ହୋଇଛି– ଏଥକୁ ସେ ନିତେଇ ଧୋବଣୀକୁ ଦେଖିଲା ସେ ଭାତ ରାନ୍ଧୁଅଛି । ଗୋଡ ଗୋଟାଏ ଜାଳୁଅଛି । ଏହା ଡ଼ାକ ଶୁଣି କୋଡପୁଅକୁ ଚୁଲିରେ ଦେଇ ଏହାକୁ କଥା କହିଲା ।

ଚୋଡଗଙ୍ଗ ଦେବ ଏଭଳି ଅଲୌକିକ ଶକ୍ତି ସମ୍ପନ୍ନା ତାନ୍ତ୍ରିକାକୁ ଆଗରୁ କେବେ ଭେଟି ନଥିଲେ । ସେ ମା' ପଠାଇଥିବା ଚିଠିଟି ଦେଇ ନିଜର ପରିଚୟ ଦେଲେ । ନିତେଇ ସଙ୍ଗାତଙ୍କର ପତ୍ର ପଢ଼ି ଖୁସିହେଲା କହିଲା– ପୁଅ ! ତୁ ନିଶ୍ଚୟ ଓଡ଼ିଶା ଖଣ୍ଡରେ ରାଜ୍ୟ କରିବୁ । କେଶରୀ ବଂଶ ଧ୍ୱଂସ ପାଇବ । ମାତ୍ର ପ୍ରଥମେ ତୁ ବେତାଳ ସାଧନା କର । ମା' ବିରଜାଙ୍କ କୃପାରୁ ତୁ ବେତାଳ ସିଦ୍ଧି ପାଇବୁ । ବେତାଳମାନେ ତୋ ବୋଲରେ ରହିଲେ, କେଶରୀମାନଙ୍କର ସୈନ୍ୟ ସାମନ୍ତ ପରାସ୍ତ ହୋଇଯିବେ । ବେତାଳମାନେ ରାତାରାତି ଶହ ଶହ ସୈନ୍ୟଙ୍କୁ କେଉଁଆଡେ ଉଡ଼ାଇ ନେବେ । ଚୋଡଗଙ୍ଗ ଦେବ ନିତେଇ ଧୋବଣୀଙ୍କୁ ଗୁରୁ ରୂପେ ଗ୍ରହଣ କଲେ । ଶାବର ବିଦ୍ୟା ଶିକ୍ଷା ଓ ପ୍ରୟୋଗ କରିବା ସହିତ ମା' ବିରଜାଙ୍କ କୃପାଲାଭ କରି ବେତାଳ ସାଧି ନିତେଇ ମା' ନଗ୍ରଦେବୀ କିଳତା–ମହାପଶୁ ମନିନ୍ତ କେଶରୀ ବଂଶ ରାଜା । ସିଦ୍ଧ ରାଜାଙ୍କୁ ଉଚ୍ଛନ୍ନ କରାଇ ରାଜା କଲା । ଏ ରାଜା ଶାବର ବିଦ୍ୟାରେ ପରିପୂର୍ଣ୍ଣ । ଏହାଙ୍କୁ ଆଗେ ଚଢ଼ାଇ ଉଡ଼ି ନଯାଇପାରେ ।

ଚୋଡଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ସୁବର୍ଣ୍ଣ କେଶରୀଙ୍କୁ ହରାଇ ଓଡ଼ିଶା ଅଧିକାର କଲେ । ବାସୁଦେବ ବାହିନୀପତି ଚୋଡଗଙ୍ଗ ଦେବଙ୍କୁ ସମସ୍ତ ପ୍ରକାର ରାଜକୀୟ ସାହାଯ୍ୟ ପ୍ରଦାନ କରିଥିଲେ ବୋଲି ଇତିହାସ କହେ । ସୁବର୍ଣ୍ଣ କେଶରୀ ଅପୁତ୍ରିକ ଥିଲେ । ନିଜର ଏକମାତ୍ର କନ୍ୟା ନନ୍ଦିକା ଚୋଡଗଙ୍ଗ ଦେବଙ୍କୁ ପତି ରୂପେ ନ ପାଇ ଆତ୍ମହତ୍ୟା କରିଥିଲେ । ସୁବର୍ଣ୍ଣ କେଶରୀ ଶେଷରେ ତପସ୍ୱୀ ଜୀବନ ଯାପନ କରିଥିଲେ ।

ମାଦଳା ପାଞ୍ଜିରେ ଉଲ୍ଲେଖ ଅଛି – ''ଏ ରାଜା (ଚୋଡଗଙ୍ଗଦେବ) ବହୁତ ମନ୍ତ୍ର ଯନ୍ତ୍ର ଜାଣନ୍ତି । ଚୋଡଗଙ୍ଗ ଦେବ ଯାଜପୁର କଟକରେ ରାଜା ହୋଇ ବାସୁଦେବ ବାହିନୀପତିଙ୍କୁ ମନ୍ତ୍ରୀ କରାଇଥିଲେ ।'' ପରବର୍ତ୍ତୀ ସମୟରେ ନିତେଇ ଧୋବଣୀକୁ ରାଜା ଉଚିତ ମର୍ଯ୍ୟାଦା ପ୍ରଦାନ କରିଥିଲେ । ବିରଜା ମଣ୍ଡଳ ଯାଜପୁର ତଥା ଦେବୀ ବିରଜା ହେଉଛନ୍ତି ଓଡ଼ିଶାର ପ୍ରଥମ ଶାକ୍ତ ଉପାସନାର ପ୍ରତୀକ ।

ବହୁ ପ୍ରାଚୀନ କାଳରୁ ଓଡ଼ିଶା ଦୁଇଟି ସାଂସ୍କୃତିକ ମଣ୍ଡଳରେ ବିଭକ୍ତ ହୋଇଆସିଛି । ଗୋଟିଏ ଜଗନ୍ନାଥ ବା ଶ୍ରୀକ୍ଷେତ୍ର ମଣ୍ଡଳ, ଅନ୍ୟଟି ବିରଜା ମଣ୍ଡଳ ବା ଯାଜପୁର ମଣ୍ଡଳ । ଏହି ଦୁଇଟି ପାଇଁ ଦୁଇଗୋଟି ପଞ୍ଜିକା ପ୍ରଚଳିତ ହୋଇଆସିଛି । ଗୋଟିଏ ହେଲା ଜଗନ୍ନାଥ ପଞ୍ଜିକା ଓ ଅନ୍ୟଟି ବିରଜା ପଞ୍ଜିକା । ମା' ଶ୍ରୀବିରଜା ଓ ବରାହଙ୍କୁ ଆଶ୍ରୟ କରି ପୂଜା ପର୍ବ ପାଳନ ଶ୍ରୀବିରଜା କ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ଅଟେ । ଏତଦ୍‌ବ୍ୟତୀତ ବିବାହ, ଉପନୟନ, ଗୃହପ୍ରତିଷ୍ଠା ଓ ଯଜ୍ଞବିଧାନ ଆଦି ନିର୍ଦ୍ଧାରଣରେ ଉଭୟ ପଞ୍ଜିକା ମଧ୍ୟରେ ମତ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଶ୍ରୀବିରଜା କ୍ଷେତ୍ରରେ ସ୍ନାନଯୋଗ ଗୁରୁତ୍ୱପୂର୍ଣ୍ଣ ଓ ଏହାର ସ୍ୱତନ୍ତ୍ର ଦିବସ ପାଳନ ନିର୍ଦ୍ଧାରିତ ହୋଇଥାଏ । ଗଂଗା, ବୈତରଣୀ ସ୍ନାନଯୋଗରେ ବିରଜା କ୍ଷେତ୍ରରେ ବରାହ ଦେବଙ୍କର ଜନ୍ମ ଓ ଦୋଳ ଆଦି ପର୍ବ ଅଛି, ଯାହାକି ସ୍ୱତନ୍ତ୍ର ଭାବେ ପାଳିତ ହୁଏ । ବିଶେଷତଃ, ବିରଜା କ୍ଷେତ୍ରରେ ପାଳନ କରାଯାଉଥିବା ପର୍ବପର୍ବାଣିର ପ୍ରାଧାନ୍ୟ ରହିଛି । ଯଥା– (୧) ଦେବୀଙ୍କର ଶୟନ– ଭାଦ୍ରବ ଶୁକ୍ଳ ଅଷ୍ଟମୀ (ରାତ୍ରିକାଳ) (୨) ଦେବୀଙ୍କର ପାର୍ଶ୍ୱ ପରିବର୍ତ୍ତନ ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ (ରାତ୍ରିକାଳ) (୩) ଦେବୀଙ୍କର ଷୋଡ଼ଶ ଦିବସୀୟ ପୂଜା– ଆଶ୍ୱିନ କୃଷ୍ଣ ଅଷ୍ଟମୀ (୪) ଦେବୀଙ୍କର ସିଂହଧ୍ୱଜ ଅଧିବାସ–

ମହାଳୟା ଅମାବାସ୍ୟା (୫) ଦେବୀଙ୍କର ରଥଯାତ୍ରା (୯ଦିନ) – ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ୯ଦିନ (୬) ଦେବୀଙ୍କର ପଞ୍ଚମ ହୋମ – ଆଶ୍ୱିନ ଶୁକ୍ଳ ନବମୀ (୭) ମହିଷବଳି – ଆଶ୍ୱିନ ଶୁକ୍ଳ ନବମୀ (୮) ପଟ ବିସର୍ଜନ– ଆଶ୍ୱିନ ଶୁକ୍ଳ ଦଶହରା (୯) ଦେବୀଙ୍କ ରଥ ନିର୍ମାଣ ଶୁଭାରମ୍ଭ– ଭାଦ୍ରବ ଶୁକ୍ଳ ଦ୍ୱାଦଶୀ (୧୦) ଦେବୀଙ୍କର ସ୍ୱନକ୍ଷତ୍ର ଦିବସ – ତ୍ରିବେଣୀ ଅମାବାସ୍ୟା ।

ବିରଜା ହିଁ ପରମ ତତ୍ତ୍ୱମୟୀ ବୈଦିକ ଦେବୀ ସାବିତ୍ରୀ । ବାରମାସରେ ତେର ବ୍ରତ ତାଙ୍କ ପୀଠରେ ପାଳନ ହେଉଥିଲେ ହେଁ ଆଶ୍ୱିନ ମାସରେ ପାଳିତ ଶରତକାଳୀନ ଦୁର୍ଗୋତ୍ସବ ଆଶ୍ୱିନ ମାସରେ ପାଳିତ ଶରତକାଳୀନ ଦୁର୍ଗୋତ୍ସବ ତନ୍ମଧ୍ୟରେ ପ୍ରଧାନ । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ସପ୍ତଶତୀ ଚଣ୍ଡୀ ବର୍ଣ୍ଣିତ ଶାରଦୀୟ ମହୋତ୍ସବ ପ୍ରଥମେ ପୁଣ୍ୟତୋୟା ବୈତରଣୀ ତଟବାସିନୀ ବିରଜାଙ୍କଠାରୁ ଆରମ୍ଭ ହୋଇ ଅନ୍ୟତ୍ର ପ୍ରସାର ଲାଭ କରିଥିଲା । ପୀଠ ବିଶେଷରେ ସ୍ୱତନ୍ତ୍ର ବିଧି ସମ୍ପନ୍ନ ହୋଇ ଶରତକାଳୀନ ଶାକ୍ତ ପର୍ବ ଏକ ଭବ୍ୟ ପରମ୍ପରା ସୃଷ୍ଟି କଲା । ଏଯାବତ୍ ବିରଜାଙ୍କ ପୀଠରେ ସେହି ପରମ୍ପରା ଅବ୍ୟାହତ ରହିଛି । ଶକ୍ତି ପଲ୍ଲବୋକ୍ତ ପଦ୍ଧତିରେ ଆର୍ଦ୍ରାନକ୍ଷତ୍ରଯୁକ୍ତ ମୂଳାଷ୍ଟମୀଠାରୁ ଉତ୍ତରାଷାଢ଼ା ନକ୍ଷତ୍ରଯୁକ୍ତ ମହାନବମୀ ପର୍ଯ୍ୟନ୍ତ ଷୋଡଶ ଦିନାତ୍ମକା ପୂଜା ସମ୍ପନ୍ନ କରାଯାଇ ଶ୍ରବଣା ନକ୍ଷତ୍ର ଯୁକ୍ତ ଶୁକ୍ଳ ଦଶମୀରେ ବିଜୟ ମହୋତ୍ସବ ପାଳନ କରାଯାଏ । ପ୍ରତ୍ୟହ ଶକ୍ତି ପଲ୍ଲବୋକ୍ତ ତନ୍ତ୍ରବିଧିରେ ପୂଜା, ହୋମ, ଚଣ୍ଡୀପାଠ ପ୍ରଭୃତି ପାରମ୍ପରିକ ରୀତିରେ ଦେବୀଙ୍କର ମହାପାର୍ବଣ ଅନୁଷ୍ଠିତ ହୁଏ । ବିରଜାଙ୍କ ଶାକ୍ତ ରଥଯାତ୍ରା ଏହି ମହାପାର୍ବଣର ବିଶେଷ ବିଧି । ଅମାବାସ୍ୟାଠାରୁ ମହାନବମୀ ପର୍ଯ୍ୟନ୍ତ ବିରଜାଙ୍କ ବିଜେ ପ୍ରତିମା ରଥରେ ନଅଥର ମନ୍ଦିର ପ୍ରଦକ୍ଷିଣ କରନ୍ତି । ଏହି ପର୍ବର ମହାହୋମ ଶାକ୍ତ ତନ୍ତ୍ରର ଏକ ଉଚ୍ଚାଙ୍ଗ ଉପାସନା । ମହାନବମୀ ଦିନ ରଥ ଭ୍ରମଣ ପରେ ବିଜେ ପ୍ରତିମା ସୁସଜ୍ଜିତ ବିମାନରେ ଲାଖବିନ୍ଧା ପଡ଼ିଆକୁ ବିଜେ ହୋଇଥାନ୍ତି । ଚାରି ଦିଗକୁ ଶର ନିକ୍ଷେପ କରି ଲାଖବିନ୍ଧା ପାଳନ କରାଯାଏ । ଏହା ପରେ ତନ୍ତ୍ରୋକ୍ତ ବଳି ପ୍ରଦାନ କରାଯାଏ । ବିଜୟା ଦଶମୀରେ ବିଜୟୋତ୍ସବ ପାଳନ କରାଯାଏ । ଶାକ୍ତ ସଂସ୍କୃତିର ଉତ୍ତରଣରେ ଅନ୍ୟାନ୍ୟ ପୀଠ ସମୂହରେ ଏବଂ ବ୍ୟକ୍ତିଗତ, ପାରିବାରିକ ତଥା ସାମାଜିକ ମାଙ୍ଗଲ୍ୟ କାମନାରେ ଏହି ପୀଠ ଅନୁରୂପ ଶରତ କାଳୀନ ମହୋତ୍ସବ ପାଳନ ହୋଇ ଦୁର୍ଗୋତ୍ସବ ଏକ ପାରଂପରିକ ସ୍ୱରୂପ ଗ୍ରହଣ କରିଛି । ଦେବୀ ବିରଜା ହିଁ ମହିଷମର୍ଦ୍ଦିନୀ ଦୁର୍ଗା ପୂଜା ପାର୍ବଣର କେନ୍ଦ୍ର ବିନ୍ଦୁ । ପରବର୍ତ୍ତୀ କାଳରେ ଏହା ତ୍ରିଦିନାତ୍ମକ ନବରାତ୍ର ଓ ଷୋଡ଼ଶ ଦିବସୀୟ ଶରତକାଳୀନ ଦୁର୍ଗୋତ୍ସବ ରୂପେ ବିଶ୍ୱ ପ୍ରସିଦ୍ଧି ଲାଭ କରିଥିଲା । ଏକ ସାର୍ବଜନୀନ ମହୋତ୍ସବ ରୂପେ ଏହା ଜନମାନସକୁ ଉଦ୍‌ବୁଦ୍ଧ କରିଥିଲା । ସଂକ୍ଷେପରେ କହିଲେ, ଶକ୍ତିରୂପୀ ବିରଜାଙ୍କ ପୂଜାର ପ୍ରଭାବରେ ବିଭିନ୍ନ ପୀଠ ଓ ମନ୍ଦିରରେ ବହୁଭୁଜା ମୂର୍ତ୍ତି ଉପସ୍ଥାପିତ ହୋଇ ଶାକ୍ତ ଧର୍ମ ଓ ସଂସ୍କୃତିକୁ ଦ୍ରୁତ ପ୍ରସାର କରିଥିଲା ।

ଭାରତୀୟ ସଂସ୍କୃତିରେ ମୂର୍ତ୍ତି ପୂଜାର ଉନ୍ମେଷ କାଳରୁ ରଥଯାତ୍ରା ସବୁ ପ୍ରବର୍ତ୍ତିତ ହୋଇଛି । ଅନାଦି କାଳରୁ ପ୍ରଚଳିତ ମୂର୍ତ୍ତିପୂଜା ସହିତ ରଥଯାତ୍ରାର ଅୟମାରମ୍ଭ ଯେ ଅଙ୍ଗାଙ୍ଗୀଭାବେ ଜଡ଼ିତ, ଏହା ସ୍ପଷ୍ଟ । ବାସ୍ତବିକ ବୈଦିକ ଯୁଗରୁ ରଥଯାତ୍ରାର ଯେ ଉଦ୍ଭବ ଘଟିଛି, ଏହା ବହୁ ପାଶ୍ଚାତ୍ୟ ଗବେଷକଙ୍କର ମତ ।

ପୁରୀ ବିମଳା ମନ୍ଦିରରେ ଷୋଡ଼ଶ ରାତ୍ରି ପୂଜା ସଦୃଶ କ୍ଷେତ୍ରାଧିଶ୍ୱରୀ ମା'ବିରଜାଦେବୀଙ୍କର ଷୋଡ଼ଶ ରାତ୍ରି ପୂଜା ମୂଳାଷ୍ଟମୀଠାରୁ ଆରମ୍ଭ ହୋଇ ଦଶହରା ପର୍ଯ୍ୟନ୍ତ ସମାରୋହ ସହକାରେ ପାଳନ କରାଯିବା ସଂଗେ ସଂଗେ ଏହି ଅବସରରେ ମା'ବିରଜାଙ୍କର ରଥଯାତ୍ରା ମଧ୍ୟ କରାଯାଏ ।

ଏହି ସର୍ବଶକ୍ତିମୟୀ ବିରଜାଙ୍କର ରଥର ନାମ 'ସିଂହଧ୍ୱଜ' ବା 'ବିଜୟ ରଥ' । ପବିତ୍ର ସୁନିଆଁ ତିଥିରେ ରଥର ଶୁଭାରମ୍ଭ ହୋଇ ଆଶ୍ୱିନ ଅମାବାସ୍ୟାରେ ପୂର୍ଣ୍ଣତା ଲାଭକରେ । ପୁରୀର ଦେବୀ ସୁଭଦ୍ରାଙ୍କ ଦେବଦଳନ ରଥ ସଦୃଶ ଏହି ରଥର ଉଚ୍ଚତା ୪୫ହାତ ୧୨ ଆଙ୍ଗୁଳି । ୧୦୨୮ଖଣ୍ଡ କାଠରେ ନିର୍ମିତ ୩ଗୋଟି କଳସଯୁକ୍ତ ଏହି

ରଥରେ ୧୨ ମାସର ପ୍ରତୀକ ୧୨ଗୋଟି ଚକ ଓ ଚକଗୁଡ଼ିକର ପରିଧି ପ୍ରତ୍ୟେକ ୨୫୨ ଆଙ୍ଗୁଳି । ଏହି ରଥରେ ପାଞ୍ଚ ଗୋଟି ଶ୍ୱେତ ବର୍ଣ୍ଣର ଅଶ୍ୱମୂର୍ତ୍ତି ସଂଯୋଜିତ କରାଯାଏ । ସେମାନଙ୍କର ନାମ ଅସ୍ତି, ଭାତି, ପ୍ରିୟ ନାମ ଓ ରୂପ । ରଥର ଚତୁଃପାର୍ଶ୍ୱରେ ଚବିଶ ପାର୍ଶ୍ୱଦେବତାଙ୍କ ସମାବେଶ । ସେମାନଙ୍କର ନାମ ଅଗ୍ନି ଦେବତା, ପ୍ରଜାପତି, ଦୈବତଚନ୍ଦ୍ର, ଦୈବତ, ଇଶାନ, ଆଦିତ୍ୟ, ଗାର୍ହପତ୍ୟ, ମନ୍ତ୍ର, ଭଗ, ଅର୍ଯ୍ୟମା, ସବିତାଧି ତ୍ୱଷ୍ଟା, ପୁଷ୍ପା, ଇନ୍ଦ୍ରାଗ୍ନି, ବାୟୁ, କାମଦେବ, ମୈତ୍ରତ୍ୟବାରୁଣ, ଭ୍ରାତୃବ୍ୟ,ବିଷ୍ଣୁ ବାସବ, ବିଶ୍ୱଦେବ, ରୁଦ୍ର, କୁବେର, ଅଶ୍ୱିନୀ କୁମାର ଓ ବ୍ରହ୍ମାଧି ଦୈବତ୍ । ରଥ ନିର୍ମାତାଙ୍କ ନାମ ଆଦିବାକ୍ । ରଥର ରକ୍ଷିତା ମହାମାୟା ଦ୍ୱାରପାଳିକା, ମନ୍ଦାକିନୀ, ବୃନ୍ଦା, କୁଶଭଦ୍ରା ଓ ଯମୁନା । ରଥଶକ୍ତି ବ୍ରହ୍ମଚାରିଣୀ । ସାରଥୀ ବେଦର ବ୍ରହ୍ମାରଥ ଦଉଡ଼ିର ନାମ– ସ୍ୱର୍ଣ୍ଣଚୂଡ଼ । ରଥର ଶୀର୍ଷ ଦେବତା ଉଗ୍ର ନୃସିଂହ । ରଥ ଧ୍ୱଜାଧିଷ୍ଠାତ୍ରୀ ମହାତ୍ରିପୁରସୁନ୍ଦରୀ । ଏହି ରଥକୁ ୬ ବର୍ଣ୍ଣ କପଡ଼ାରେ ଆବୃତ କରାଯାଏ ।

ଏବେକାର ରଥର ଉଚ୍ଚତା ୩୪ ହାତ ବା ୫୫ ଫୁଟ୍ । ରଥ ଆବରଣ – କୃଷ୍ଣ– ଲୋହିତ–ପୀତ । ରଥ ରକ୍ଷିକା – ମହା ସରସ୍ୱତୀ, ଉର୍ଦ୍ଧ୍ୱ ଦେଶରେ ମହାନୃସିଂହ । ରଥର ଶକ୍ତି ବ୍ରହ୍ମଚାରିଣୀ । ରଥର ସାରଥି– ଚତୁର୍ମୁଖ– ବ୍ରହ୍ମା । ରଥ ଚକର ପରିଧି – ୨୫୨ ଆଙ୍ଗୁଳି କିନ୍ତୁ ଏବେ ଗୋଲେଇ ୧୨ ଫୁଟ(୪/୪) ରଥ କାଠ ସଂଖ୍ୟା– ୧୦୧୭ ବା ୧୦୨୮ ଖଣ୍ଡ ଯାଏ ଋକ୍ ସଂହିତାର ସମସ୍ତ ସୂକ୍ତ ସହ ତୁଳନୀୟ । ନେତର ନାମ – ଚୈତେନ୍ୟ ସତ୍ତା । ରଥ ନିର୍ମାତା– ଆଦିବାକ୍ । ଏହି ରଥର ବିଭିନ୍ନ ଅଂଶକୁ ୩୨ଭାଗରେ ବିଭକ୍ତ କରାଯାଇଥାଏ କିନ୍ତୁ ଏବେ ଏହା ନୂତନ ଶୈଳୀରେ ନିର୍ମିତ ହେଉଅଛି । ଏହାର ବିଭିନ୍ନ ଅଂଶକୁ ଉଚ୍ଚତା, ନାହିଆ, ହାଣ୍ଡି, ଚକ, ଧାରଣା, ଆଡ଼ ଧାରଣା, ଲମ୍ବାଧାରଣା, ସୁନାଖୁଣ୍ଟ, ଦାଣ୍ଡିଆ ଖୁଣ୍ଟ, ଚୌକି, ଭରତ, ମାଢି, ଥାକ, ମୁଖରଥ, ଚୌକ, ଘର୍ଘର, ଜନକ ମଣ୍ଡଳୀ ଖୁଣ୍ଟ, ଆଡୁଆ, ଅଁଳା, ଛକ, ତଳମୂଳ ଦୁଆଛକ, ଦାଣ୍ଡିଆ ତଳ, ରଥନିୟନ୍ତ୍ରିକା (ବ୍ରେକ) ପରି ବିଭିନ୍ନ ନାମରେ ଭାଗ କରାଯାଇ କରାଯାଉଅଛି ।

ବିରଜା ଦେବୀ ତ୍ରିମହାଶକ୍ତିଯୁକ୍ତା ବର୍ଷ ଭିତରେ ସ୍ୱନକ୍ଷତ୍ର ଦିବସ ଏବଂ ସାବିତ୍ରୀ ଅମାବାସ୍ୟାରେ ସାବିତ୍ରୀ ରୂପରେ, ଶାରଦୀୟ ଦୁର୍ଗୋତ୍ସବରେ ମାହେଶ୍ୱରୀ ରୂପରେ ଓ ଅନ୍ୟ ଦିବସମାନଙ୍କରେ ବୈଷ୍ଣବୀ ରୂପରେ ପୂଜା ପାଇଥାନ୍ତି । ରଥଯାତ୍ରା ସମୟରେ ମହାଦେବୀ ସୁସଜ୍ଜିତରଥ ଉପରେ ବିଜେ କରି ବେଢାକୁ ନଅଥର ପରିକ୍ରମା କରିବା ପୂର୍ବକ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି ।

ଯେ ପଶ୍ୟନ୍ତି ରଥାରୂଢଂ ଭ୍ରମନ୍ତି ମାମ୍ବିକାଂ ପୁନଃ
ତେ ପଞ୍ଚପାତ କୈର୍ମୁକ୍ତା ଯାନ୍ତିତସ୍ୟାଃ ସ୍ୱରୂପତାମ୍ ।

ବ୍ରହ୍ମାଣ୍ଡ ପୁରାଣରେ ଲେଖାଅଛି– ରଥୋପବିଷ୍ଟା ଆଦ୍ୟାଦେବୀ ମା' ବିରଜାଙ୍କୁ ଦର୍ଶନ କଲେ ଭକ୍ତ ତା'ର ପଥସୁନା ପାତକରୁ ମୁକ୍ତହୋଇ ଦେବୀଙ୍କ ସାନ୍ନିଧ ଲାଭ ପୂର୍ବକ ବୈକୁଣ୍ଠ ଲୋକ ପ୍ରାପ୍ତ ହୋଇଥାଏ । ତେଣୁ ପୁନଃ ଜନ୍ମରୁ ମୋକ୍ଷ ହୋଇଥାଏ–

ଦୋଳେଚ ରାଧିକା, ଦେବୀ ଚାପେଚ କୁମାରୀଂ ତଥା
ରଥେତୁ ବିରଜାଂ ଦୃଷ୍ଟବା ପୁନଃ ଜନ୍ମ ନ ବିଦ୍ୟତେ ।

ମହନୀୟତା ହେଉଛି, ଅନ୍ୟ ଶକ୍ତି ପୀଠମାନଙ୍କର ଶାରଦୀୟ ପୂଜା ପଦ୍ଧତିଠାରୁ ବିରଜାଙ୍କର ପୂଜାପଦ୍ଧତି ସଂପୂର୍ଣ୍ଣ ଭିନ୍ନ । ୧୬୦୧ରେ ଦେବୀଙ୍କର ବିଭିନ୍ନ ବେଶ ସହିତ ବିବିଧ ମନ୍ତ୍ରର ପ୍ରୟୋଗ କରାଯାଏ । ମୂଳାଷ୍ଟମୀ ପର୍ଯ୍ୟନ୍ତ ତଥା ଶାରଦୀୟ ପୂଜାକାଳୀନ ଜପ ଓ ହୋମ ପ୍ରଭୃତି ସମୟରେ ବନଦୁର୍ଗା ମନ୍ତ୍ର ବିରଜାଙ୍କର ମୂଳମନ୍ତ୍ର ରୂପେ ବ୍ୟବହୃତ ହୁଏ । କିନ୍ତୁ ମହାଷ୍ଟମୀ ରାତ୍ରିରେ ଦେବୀ ବିରଜାଙ୍କୁ ଉଗ୍ରଚଣ୍ଡୀ ମନ୍ତ୍ରରେ ପୂଜା କରାଯାଏ । ମହାନବମୀ ତିଥିରେ ନିଶାର୍ଦ୍ଧ ପୂଜା ସମୟରେ ମହାମାରୀ ମନ୍ତ୍ରରେ ପୂଜା କରାଯାଏ । ଦଶହରାରେ ଦେବୀଙ୍କୁ ଅପରାଜିତା ମନ୍ତ୍ରରେ ପୂଜା କରାଯାଏ । ଏଠାରେ ସୂଚନାଯୋଗ୍ୟ ଯେ ସାଧାରଣ ଦିବସମାନଙ୍କରେ ସେବକମାନେ ଦେବୀଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରିଥା'ନ୍ତି । କିନ୍ତୁ ବିଶେଷ ପର୍ବମାନଙ୍କରେ ଦେବୀଙ୍କର ପୂଜା ଏକାକ୍ଷର ମନ୍ତ୍ରରେ ହୋଇଥାଏ ।

ଶାରଦୀୟ ପୂଜାର ଶେଷ ଦିବସ ଦଶମୀ ତିଥିରେ ଦେବୀଙ୍କର ଦଶହରା ଉତ୍ସବ ଅନୁଷ୍ଠିତ ହୁଏ । ସେହିଦିନ

ଘଟ ବିସର୍ଜନ କରାଯାଏ । ତାହାପରେ ଦେବୀଙ୍କ ପ୍ରତିମାକୁ ଦକ୍ଷିଣାଭିମୁଖୀ କରାଇ ପୂଜକ ସହସ୍ରାକ୍ଷ ମନ୍ତ୍ରରେ ମହାସ୍ନାନ ପୂର୍ବକ ପଞ୍ଚୋପଚାରରେ ପୂଜା କରିଥାନ୍ତି । ତାହାପରେ ବିସର୍ଜନ କର୍ମ ଆରମ୍ଭ ହୁଏ । ଅପରାଜିତା ସ୍ତୋତ୍ରପାଠ ପରେ ଘଟପୂଜିତ ଦେବତାମାନଙ୍କର ବିସର୍ଜନ କରାଯାଏ । ତାହାପରେ ଆଚାର୍ଯ୍ୟ ପୁରୋହିତ ସେବକମାନଙ୍କର ମଙ୍ଗଳା ରୋପଣ କରି ଶାରଦୀୟ ପୂଜାର ପରିସମାପ୍ତି କରନ୍ତି । ପ୍ରଚଳିତ ପ୍ରଥାନୁସାରେ ବ୍ରାହ୍ମଣମାନେ ଦେବୀଙ୍କ ପାଦ ପଦ୍ମରେ ଯବାଙ୍କୁର ଓ ଶମୀପତ୍ର ଅର୍ପଣ କରି ଜଗତର ମଙ୍ଗଳ ପାଇଁ ପ୍ରାର୍ଥନା କରନ୍ତି ।

ଶାକ୍ତ ଧର୍ମଧାରା ବୌଦ୍ଧ ଓ ଜୈନଙ୍କ ଉପରେ ପ୍ରଭାବ ବିସ୍ତାର କରିଥିଲା । ନିରୀଶ୍ୱରବାଦୀ ଜୈନମାନେ ବିରଜା ଉପାସନାରେ ଆକୃଷ୍ଟ ହୋଇ ଚକ୍ରେଶ୍ୱରୀ ସରସ୍ୱତୀ, କାଳିକା, ଶ୍ୟାମାଚଣ୍ଡୀ, ବିରଜା, ଧାରିଣୀ ପ୍ରଭୃତି ଦେବୀଙ୍କର ଉପାସନା କରିଥିଲେ । ଶାକ୍ତ ଧର୍ମର ସାରସ୍ୱତ କଳ୍ପ ପ୍ରଭାବରେ ସେମାନେ ଦେବୀ ବିରଜାଙ୍କୁ ମହାସରସ୍ୱତୀ ଜ୍ଞାନ କରିଥିଲେ । ବୌଦ୍ଧମାନେ ମଧ୍ୟ ଶକ୍ତି ଉପାସନାକୁ ଆପଣାର କରିନେଇଥିଲେ । ବୌଦ୍ଧ ତନ୍ତ୍ରର ଉନ୍ମେଷ ଘଟି ବଜ୍ରଯାନ, କାଳଚକ୍ରଯାନ ଓ ସହଜଯାନ ପ୍ରଭୃତି ତାନ୍ତ୍ରିକ ପଦ୍ଧତି ଜନ୍ମଲାଭ କରିଥିଲା ।

ଶାକ୍ତ ଦର୍ଶନରେ ମା' ବିରଜା ବିଷ୍ଣୁମୟୀ ବୈଷ୍ଣବୀ, ଶିବ ଶକ୍ତିମୟୀ ଶିବାନୀ, ବ୍ରହ୍ମଶକ୍ତିମୟୀ ବ୍ରହ୍ମାଣୀ, ଦିବ୍ୟାନନ୍ଦରୂପା ପରମ ଶକ୍ତି, ସୌନ୍ଦର୍ଯ୍ୟ, ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟ ଔତ୍ସୁକ୍ୟ ଏବଂ ଆହ୍ଲାଦ ପ୍ରଭୃତି ଅଲୌକିକ ଗୁଣ ସଂପନ୍ନା । ସେ ଦୟା ଓ କରୁଣାର ଅବତାର । ସେ ଗାୟତ୍ରୀ, ସାବିତ୍ରୀ ଓ ସରସ୍ୱତୀ । ସେ ସନାତନୀ, ମହାଦେବୀ, ସୁଧାମୟୀ ତଥା ବିଶ୍ୱ କଲ୍ୟାଣକାରିଣୀ । ସେ ଅଦ୍ୱୈତବାଦର ପ୍ରତିପାଦକ ତତ୍ତ୍ୱ ।ତିଦା , ସଚ୍ଚିଦାନନ୍ଦା । ସେ ହିଁ ଭାରତୀୟ ଶକ୍ତି ଧର୍ମର ସଂସ୍କୃତି ଓ ଦର୍ଶନର କେନ୍ଦ୍ରବିନ୍ଦୁ । ତାଙ୍କରି ପୀଠରେ ସକଳ ପ୍ରକାର ଚେତନାରେ ଶାକ୍ତ ଚେତନାର ମଧୁର ସମନ୍ୱୟ ସଙ୍ଗଠିତ ହୋଇ ସାର୍ବଜନୀନ ଶାକ୍ତ ଉପାସନାର ମହନୀୟତା ପ୍ରକଟିତ ହୋଇଥିଲା । ତାଙ୍କ ପୀଠରେ ବୈଦିକ, ଅବୈଦିକ, ଶୈବ, ଶାକ୍ତ, ଜୈନ, ବୌଦ୍ଧ, ସଭିଏଁ ସମାନ । ଦେବୀ ବିରଜାଙ୍କ ରୂପ, ଧାମ, ଲୀଳା, ତତ୍ତ୍ୱ, ଦୈନନ୍ଦିନ ନୈମିତ୍ତିକ ନୀତିନିଯୋଗ ତଥା ପର୍ବପର୍ବାଣିରେ ଶାକ୍ତ ଧର୍ମ ସଂସ୍କୃତି ଓ ଦର୍ଶନର ଧାରା ପ୍ରବାହିତ । ଗୋଟିଏ ବାକ୍ୟରେ କହିଲେ ଭାରତୀୟ ଶାକ୍ତ ଧର୍ମର ସଂସ୍କୃତି ଓ ଦର୍ଶନରେ ଆଦ୍ୟାଶକ୍ତି ବିରଜା ଅନନ୍ୟା ଓ ଅନବଦ୍ୟା ।

ରାମକୃଷ୍ଣ ପରମହଂସଙ୍କ ଭାଷାରେ–

''ଆମାର ମା' ତ୍ୱଂହିତାରା,
ତୁମି ତ୍ରିଗୁଣ ଧରା ପରାତ୍ପରା
ତୋରେ ଜାନିମାଦେନ ଦୟାମୟୀ,
ତୁମି ଦୁର୍ଗମେତେ–
ତୁମ ଜଲେ ତୁମି ସ୍ଥଲେ,
ତୁମି ଇ ଆଦ୍ୟା ମୂଳେ ଗୋ ମା'
ଆଛ ସର୍ବଘଟେ ଅକ୍ଷପୁଟେ
ସାକାର ଆକାର ନିରାକାରା ।
ତୁମି ସନ୍ଧ୍ୟା, ତୁମି ଗାୟତ୍ରୀ,
ତୁମି ଇ ଜଗଦ୍ଧାତ୍ରୀ ଗୋ ମା''
ତୁମି ଆକୁଲେର ତ୍ରାଣକର୍ତ୍ତା
ସଦାଶିବେର ମନୋହାରା ।''

**ସହାୟକ ଗ୍ରନ୍ଥସୂଚୀ**

(୧) ମିଶ୍ର, ଅନ୍ତର୍ଯ୍ୟାମୀ । ଭାରତୀୟ ଧର୍ମ ଓ ସଂସ୍କୃତି । ପୃ ୪୩–୫୨

(୨) ପତି, ଜ୍ଞାନ ରଂଜନ । ଶକ୍ତି ପରଂପରାରେ ଶ୍ରୀ ବିରଜା । ଯାଗଦୀପ, ୨୦୧୦ । ପୃ ୨୫–୨୯

(୩) ପଟ୍ଟନାୟକ, ତ୍ରିନାଥ । ତନ୍ତ୍ରଦେବୀ ବିରଜା : ଯାଗଦୀପ । ୨୦୧୦ । ପୃ ୩୦–୩୨

(୪) ମିଶ୍ର, ଭୂପତି । ସ୍ମୃତିଲିପି । ଅକ୍ଟୋବର – ଡ଼ିସେମ୍ବର ୨୦୦୮ । ପୃ ୩

(୫) ଜେନା, ସିଦ୍ଧେଶ୍ୱର । ଦେବୀ ବିରଜା ଏକ ପୌରାଣିକ ସର୍ବେକ୍ଷଣମ୍ । ଯଜ୍ଞପ୍ରଭା । ୨୦୦୬ । ପୃ ୭୬

(୬) ପାଢୀ, ଏକାଦଶୀ । ଶୈବକ୍ଷେତ୍ର ଯାଜପୁରରେ ଦେବୀ ବିରଜାଙ୍କ ପ୍ରଭାବ ଓ ପ୍ରତିଷ୍ଠା । ଯଜ୍ଞପ୍ରଭା । ୨୦୧୫ । ପୃ ୩୬–୪୪ ।

(୭) ଦାସ, ଜୟକୃଷ୍ଣ । ଦିଗଜ । ଯାଜପୁର, ୨୦୦୬ । ପୃ. ୨୧–୨୨

(୮) ଦାସ, ବୈଷ୍ଣବ ଚରଣ । ବିରଜା କ୍ଷେତ୍ର ପରିକ୍ରମା । ପୃ. ୭୭

(୯) ବେହେରା, ଦୁଃଖୀଶ୍ୟାମ । ଶ୍ରୀଜଗନ୍ନାଥ । ଭୁବନେଶ୍ୱର, ପୂଜା ବିଶେଷାଙ୍କ , ୧୯୯୮ ପୃ- ୨୫–୨୭

(୧୦) ବେହୁରିଆ, ରବୀନ୍ଦ୍ର କୁମାର । ନୂଆ ଯୁଗର ନୂଆ ସକାଳ । ଜୁନ୍ ୨୦୧୨ । ପୃ ୬–୯

(୧୧) ରଥ, ଜୟନ୍ତୀ । ଓଡ଼ିଶାର କଳା ଓ ସଂସ୍କୃତି । ପୃ –୯୧

(୧୨) ସ୍ୱାଇଁ, ଗିରିଧାରୀ । ଦିଗତ । ଯାଜପୁର ୨୦୦୬ । ପୃ ୮୭–୮୮

(୧୩) ମିଶ୍ର, ସୁରେନ୍ଦ୍ର କୁମାର । ଯଜ୍ଞପ୍ରଭା । ୨୦୧୫ । ପୃ ୧–୧୭

(୧୪) Rajguru S.N. Inscriptions of Orissa. Vol-1, Part - II, P. 81

(୧୫) Chand, RP. Memory of Archaeological survey of India. No 44, P.4

(୧୬) Sircar, D.C. the sakta Pithas P. 12

(୧୭) Mishra, B. Orissa under the Bhoumking. P.26

(୧୮) Sakti cult and Tara P. 4

(୧୯) ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର । ଇତିହାସ ଓ କିମ୍ବଦନ୍ତୀ । ପୃ ୬

(୨୦) ପଣ୍ଡା, ଭଗବାନ । ଓଡ଼ିଶାର ଶାକ୍ତ ସଂସ୍କୃତି । ପୃ ୬୧

(୨୧) ମହତାବ, ହରେକୃଷ୍ଣ । ଓଡ଼ିଶାର ଇତିହାସ ପ୍ରଥମ ଖଣ୍ଡ , ପୃ ୫୪

(୨୨) ଋକ୍ ବେଦ, ୧୦ମ ମଣ୍ଡଳ, ୧୦ମ ଅନୁବାଦ, ୧୨୫ ସୂକ୍ତ

(୨୩) ମହାଭାରତ, ବନପର୍ବ, ୮୩ ଅଧ୍ୟାୟ ଶ୍ଳୋକ ୬/୭

(୨୪) ବ୍ରହ୍ମପୁରାଣ, ୪୨ ଅଧ୍ୟାୟ

(୨୫) ପ୍ରପଞ୍ଚସାରତନ୍ତ୍ର ୩/୪୫

(୨୬) ଅଥର୍ବ ବେଦ ୮/୧୦

(୨୭) କାଳିକା ପୁରାଣ, ୬୪ ଅଧ୍ୟାୟ

(୨୮) ବ୍ରହ୍ମଯାମଳ, ଆଦ୍ୟସ୍ତୋତ୍ର- ୯

(୨୯) ଶ୍ରୀ ଶ୍ରୀ ଚଣ୍ଡୀ, ପ୍ରାଧାନିକ ରହସ୍ୟ । ୫ମ ଶ୍ଳୋକ ।

(୩୦) J.B.O.R.S., Vol - 11, P. 419-27

---

ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ
ଚାନ୍ଦବାଲି, ଭଦ୍ରକ, ପିନ୍–୭୫୬୧୩୩



# ବିଦ୍ରୋହର ବହ୍ନିଶିଖା : ବୀର ସୁରେନ୍ଦ୍ର ସାଏ

ନୃସିଂହ ଚରଣ ସାହୁ

ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଅଧିକାର । କିନ୍ତୁ ଅନେକ ସମୟରେ ସହଜରେ ସ୍ୱାଧୀନତା ମିଳି ନ ଥାଏ । ସେଥିପାଇଁ ସମୟେ ସମୟେ ସଶସ୍ତ୍ର ସଂଗ୍ରାମ କରିବାକୁ ପଡ଼ିଥାଏ । ମାତ୍ର ସୁରେନ୍ଦ୍ର ସାଏ ହେଉଛନ୍ତି ଇତିହାସରେ ଏଭଳି ଜଣେ ବିରଳ ବ୍ୟକ୍ତିତ୍ୱ ଯିଏ ଜୀବନସାରା ସଂଗ୍ରାମ କରି କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । କିନ୍ତୁ ନିଜର ସ୍ୱାଧିକାରରୁ ବଂଚିତ କରିଥିବା ବ୍ରିଟିଶ ସରକାରଙ୍କ ଅନ୍ୟାୟ ଅନୀତି ଆଗରେ ମୁଣ୍ଡ ନୁଆଁଇ ନ ଥିଲେ ।



ବିପ୍ଳବୀ ସୁରେନ୍ଦ୍ର ସାଏଙ୍କ ଜନ୍ମ ସମ୍ବଲପୁର ଅଞ୍ଚଳର ଏକ ରାଜପରିବାରରେ ୧୮୦୯ ମସିହା ଜାନୁଆରୀ ୨୩ ତାରିଖରେ । ପିଲାଟି ଦିନରୁ ସେ ସାହସୀ ଓ ବୀର ସ୍ୱଭାବର ଥିଲେ । ସିପାହି ବିଦ୍ରୋହ ଆରମ୍ଭ ହେବାର ପ୍ରାୟ ୩୦ ବର୍ଷ ପୂର୍ବରୁ ତାଙ୍କର ଇଂରେଜମାନଙ୍କ ସହ ବିବାଦ ଆରମ୍ଭ ହୋଇଯାଇଥିଲା । ୧୮୨୭ ମସିହାରେ ସମ୍ବଲପୁରର ରାଜା ମହାରାଜା ସାଏ ଅପୁତ୍ରିକ ଅବସ୍ଥାରେ ପ୍ରାଣତ୍ୟାଗ କଲେ । ସୁରେନ୍ଦ୍ରଙ୍କ ପିତା ଧରମ ସିଂହ ଥିଲେ ସମ୍ବଲପୁର ଚୌହାନ ରାଜବଂଶର ପଞ୍ଚମ ମହାରାଜା, ବଳିଆର ସିଂହଙ୍କର ଉତ୍ତରାଧିକାରୀ । ତାଙ୍କର ଥିଲେ ସାତ ପୁଅ ଓ ଗୋଟିଏ ଝିଅ । ସୁରେନ୍ଦ୍ର ସାଏ ଥିଲେ ତାଙ୍କର ଜ୍ୟେଷ୍ଠ ପୁତ୍ର । ତେଣୁ ରାଜା ମହାରାଜା ସାଏଙ୍କ ଦେହାନ୍ତ ପରେ ନୈତିକତା ଦୃଷ୍ଟିରୁ ରାଜଗାଦି ସୁରେନ୍ଦ୍ରଙ୍କର ପ୍ରାପ୍ୟ । ମାତ୍ର ଇଂରେଜମାନେ ତାଙ୍କୁ ରାଜଗାଦିରୁ ବଞ୍ଚିତ କରି ମହାରାଜା ସାଏଙ୍କ ପତ୍ନୀ ରାଣୀ ମୋହନ କୁମାରୀଙ୍କୁ ଶାସନ ଦାୟିତ୍ୱ ଅର୍ପଣ କଲେ । ରାଜକାର୍ଯ୍ୟ ନିର୍ବାହ ନିମନ୍ତେ ରାଣୀଙ୍କର ଦକ୍ଷତା ନ ଥିଲା । ସେ ଥିଲେ ପର୍ଦ୍ଦାନସୀନ । ତାଙ୍କର କର୍ମଚାରୀମାନେ ତାଙ୍କ ଅଜ୍ଞତାର ସୁଯୋଗ ନେଇ ବ୍ରାହ୍ମଣ, ଗଣ୍ଡ ଓ ବିଂଝାଲମାନଙ୍କ ଉପରେ ନିର୍ଯାତନା କଲେ । ତେଣୁ ସେମାନଙ୍କ ମଧ୍ୟରେ ଜନଅସନ୍ତୋଷ ସୃଷ୍ଟି ହେଲା । ସେମାନେ ସୁରେନ୍ଦ୍ର ସାଏଙ୍କୁ ରାଜା କରାଇବା ନିମନ୍ତେ ବିଦ୍ରୋହ ଆରମ୍ଭ କଲେ ।

୧୮୨୭ ମସିହାରେ ଇଂରେଜମାନଙ୍କ ଅନ୍ୟାୟ ବିରୋଧରେ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଭୟାବହ ରୂପ ଧାରଣ କଲା । ମାତ୍ର ୧୮ ବର୍ଷ ବୟସରେ ସେ ବିଦ୍ରୋହର ନେତୃତ୍ୱ ନେଇ ଆଦିବାସୀମାନଙ୍କୁ ଆପଣାର କରି ସଙ୍ଗଠିତ କଲେ ଏବଂ ଇଂରେଜ ସରକାରଙ୍କ ଅନ୍ୟାୟ ଅନୀତି ବିରୋଧରେ ଯୁଦ୍ଧ ଡାକରା ଦେଲେ । ବିଦ୍ରୋହ ଦମନ ନିମନ୍ତେ ହଜାରିବାଗରୁ କ୍ୟାପ୍‌ଟେନ ଉଇଲ୍‌କିନ୍‌ସନ୍ ବିରାଟ ସୈନ୍ୟବାହିନୀ ଧରି ସମ୍ବଲପୁରରେ ପହଞ୍ଚି ଅବସ୍ଥା ଅନୁଧ୍ୟାନ କଲେ ଏବଂ

୧୮୩୩ ମସିହାରେ ରାଣୀଙ୍କଠାରୁ ଶାସନ କ୍ଷମତା ପ୍ରତ୍ୟାହାର ନିମନ୍ତେ ନିଷ୍ପତ୍ତି ନେଲେ । ମାତ୍ର ଇଂରେଜମାନେ ରାଣୀଙ୍କ ପରିବର୍ତ୍ତେ ସୁରେନ୍ଦ୍ର ସାଏଙ୍କୁ ରାଜଗାଦି ନ ଦେଇ ନାରାୟଣ ସିଂହ ନାମକ ଆଉ ଜଣେ ଅଯୋଗ୍ୟ ତଥା ବୃଦ୍ଧ ବ୍ୟକ୍ତିଙ୍କୁ ଶାସନ ଦାୟିତ୍ୱ ଦେଲେ । ସେଦିନ ଥିଲା ୧୮୩୩ ମସିହା ଅକ୍ଟୋବର ୧୧ ତାରିଖ । ସେଇଦିନଠାରୁ ସମଗ୍ର ରାଜ୍ୟରେ ପୁଣି ଅସନ୍ତୋଷ ବ୍ୟାପିଗଲା ।

ନାରାୟଣ ସିଂଙ୍କ ଦୁର୍ବଳ ଓ ମନମୁଖୀ ଶାସନରେ ଅତିଷ୍ଠ ହୋଇ ଜନସାଧାରଣ ବିଦ୍ରୋହକୁ ଆଗେଇ ନେଲେ । ସୁରେନ୍ଦ୍ର ସାଏଙ୍କ ସହ ତାଙ୍କର କକା ବଳରାମ ସାଏ ବିଦ୍ରୋହର ପୁରୋଭାଗରେ ରହିଲେ । ବଳରାମ ସାଏ ଗଣ୍ଡ ଜମିଦାରମାନଙ୍କ ମଧ୍ୟରେ ନୂତନ ଚେତନା ଓ ଜାଗରଣ ସୃଷ୍ଟି କଲେ । ଇଂରେଜଙ୍କ ମନମୁଖୀ ଉତ୍ତରାଧିକାର ଚୟନ ବିରୋଧରେ ସେମାନଙ୍କୁ ଉତ୍ତେଜିତ କରି ନାରାୟଣ ସିଂହଙ୍କ ପରିବର୍ତ୍ତେ ସୁରେନ୍ଦ୍ରଙ୍କୁ ସମ୍ବଲପୁର ରାଜସିଂହାସନରେ ବସାଇବା ପାଇଁ ସମର୍ଥନ ଓ ସାହାଯ୍ୟ ନିବେଦନ କଲେ ।

ଏଥିରେ ବ୍ୟତିବ୍ୟସ୍ତ ହୋଇ ରାଜା ନାରାୟଣ ସିଂହ ନିଜର ସମର୍ଥକମାନଙ୍କୁ ସୁରେନ୍ଦ୍ର ସାଏଙ୍କୁ କଳେବଳେ ଧରିବା ନିମନ୍ତେ ମତେଇ ଦେଲେ । ଯେଉଁ କେତେକ ସ୍ୱାର୍ଥାନ୍ଧ ଜମିଦାର ରାଜା ନାରାୟଣ ସିଂହଙ୍କୁ ଅର୍ଥ, ସୈନ୍ୟସାମନ୍ତ ଓ ଗୁପ୍ତ ତଥ୍ୟ ଯୋଗାଇ ସାହାଯ୍ୟ କରୁଥିଲେ, ସେମାନଙ୍କ ମଧ୍ୟରେ ରାମପୁର ଜମିଦାର ଦୁର୍ଜୟ ସିଂହ ପ୍ରଧାନ ଥିଲେ । ତେଣୁ କ୍ରୋଧାନ୍ୱିତ ହୋଇ ସୁରେନ୍ଦ୍ର ଏବଂ ଉଦନ୍ତ ଦୁଇଭାଇ ୧୮୩୮ମସିହା ସେପ୍ଟେମ୍ବର ମାସରେ ରାମପୁର ଆକ୍ରମଣ କଲେ ।

ସେମାନେ ରାମପୁର ଦୁର୍ଗକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ । ଗାଁଗଣ୍ଡା ଜାଳି ଦେଲେ । ଜମିଦାର ଦୁର୍ଜୟ ସିଂହଙ୍କ ବାପା ଓ ପୁଅ ନିହତ ହେଲେ କିନ୍ତୁ ଦୁର୍ଜୟ ସିଂହ ହିମଗିରି ଜଙ୍ଗଲକୁ ପଳାଇଥିଲେ । ଏହାପରେ ଇଂରେଜ ସୈନ୍ୟମାନେ ଆସି ପାଲଟା ଆକ୍ରମଣ କଲେ । ସୁରେନ୍ଦ୍ର ଏବଂ ଲଖନ୍‌ପୁର ଜମିଦାର ବଳଭଦ୍ର ଦାଓ ମଧ୍ୟାହ୍ନ ଭୋଜନ ସାରି ବିଶ୍ରାମ ନେଉଥିବା ବେଳେ ହଠାତ୍ ଏଭଳି ଅତର୍କିତ ଆକ୍ରମଣ ହେଲା । ଏଥିରେ ଜମିଦାର ବଳଭଦ୍ର ଦାଓ ନିହତ ହେଲେ । କିନ୍ତୁ ଉପସ୍ଥିତ ବୁଦ୍ଧି ପ୍ରୟୋଗ କରି ସୁରେନ୍ଦ୍ର ଖସି ପଳେଇ ଗଲେ ।

ରାମପୁର ଆକ୍ରମଣ ପରେ ସୁରେନ୍ଦ୍ରଙ୍କ ପ୍ରତାପ ବୃଦ୍ଧି ପାଇଲା । ସେ ବିଜୟ ଉଲ୍ଲାସରେ ଭାଇ ଉଦନ୍ତ, ଛବିଳ ଓ କାକା ବଳରାମଙ୍କ ସହ ସଦଳବଳେ ସାହାଯ୍ୟ ଲାଭ ପାଇଁ ପାଟଣା ଯାତ୍ରା କଲେ । ମାତ୍ର ସେମାନଙ୍କ ଗତିବିଧି ସମ୍ପର୍କରେ ଗୋପନରେ ତଥ୍ୟ ସଂଗ୍ରହ କରି ଆସିଷ୍ଟାଣ୍ଟ କମିଶନର ମେଜର ଓସ୍‌ଲେ ବହୁ ସୈନ୍ୟସାମନ୍ତ ଧରି ବୁଢ଼ାରଜା–ଦେହେରିପାଲ୍ଲୀରେ ସେମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇଲେ । ତୋପ, ବନ୍ଧୁକ, ଗୁଳିଗୋଳା ଆଗରେ ସୁରେନ୍ଦ୍ର ବାହିନୀ ତିଷ୍ଠି ପାରିଲେ ନାହିଁ । ସେମାନେ ଛିନ୍ନଛତ୍ର ହୋଇଗଲେ । ୧୮୪୦ ମସିହାରେ ସୁରେନ୍ଦ୍ର, ଉଦନ୍ତ ଓ ସେମାନଙ୍କ କାକା ବଳରାମ ସିଂହଙ୍କୁ ଇଂରେଜ ସୈନ୍ୟମାନେ ବନ୍ଦୀ କଲେ ଓ ହଜାରିବାଗ ଜେଲ୍‌ରେ ରଖିଲେ । ରାମପୁର ଜମିଦାରଙ୍କୁ ହତ୍ୟା ଅଭିଯୋଗରେ ବିଚାର କରାଯାଇ ସେମାନଙ୍କୁ ଆଜୀବନ କାରାଦଣ୍ଡ ଆଦେଶ ହୋଇଥିଲା ।

ନେତୃତ୍ୱ ଅଭାବରେ ବିଦ୍ରୋହର ଅବସାନ ହେଲା । ସମ୍ବଲପୁରରେ ବିଦ୍ରୋହୀମାନଙ୍କ ଉପରେ ଇଂରେଜମାନଙ୍କ ନିର୍ମମ ଅତ୍ୟାଚାର ଯୋଗୁଁ ଭୟରେ ଶାନ୍ତି ଅବସ୍ଥା ଫେରିଆସିଲା । ୧୮୪୯ ମସିହାରେ ବୃଦ୍ଧ ରାଜା ନାରାୟଣ ସିଂହ ଅପୁତ୍ରିକ ଅବସ୍ଥାରେ ପ୍ରାଣତ୍ୟାଗ କଲେ । କିଛି ଦିନ ଧରି ଇଂରେଜମାନେ ରାଣୀଙ୍କ ନାମରେ ଶାସନ ଚଳାଇଲେ । ଶେଷରେ ରାଜସ୍ୱତ୍ୱ ଲୋପ ନୀତି ଅନୁସାରେ ସମ୍ବଲପୁରକୁ ବ୍ରିଟିଶ ଶାସକମାନେ ନିଜ ଅଧୀନକୁ ନେଇ ଶାସନ କଲେ । ସଂଗେ ସଂଗେ ସାଧାରଣ ଲୋକଙ୍କ ଉପରେ ଖଜଣା ପରିମାଣ ବହୁଗୁଣ ବଢ଼ାଇଦେଲେ । ଜାଗିରି ଓ ନିଷ୍କର ଜମି ଉପରେ ଖଜଣା ଧାର୍ଯ୍ୟ କଲେ । ୧୮୪୯ ପୂର୍ବରୁ ସମ୍ବଲପୁର ରାଜକୋଷକୁ ଜମିଦାର ଓ ଗଉଁତିଆମାନେ ମୋଟ୍ ୮୮୦୦ ଟଙ୍କା ରାଜସ୍ୱ ଦେଉଥିଲେ । କିନ୍ତୁ ୧୮୫୪ ମସିହା ବେଳକୁ ଏହା ୮ଗୁଣରୁ ଅଧିକ ହୋଇ ୭୪ ହଜାର ଟଙ୍କାକୁ ବୃଦ୍ଧି ପାଇଲା । ଜମି ଉପଭୋକ୍ତାମାନେ ଏତେ ଅଧିକ ପରିମାଣ ଖଜଣା

ଦେଇପାରିବେ କି ନାହିଁ ତାହାର ବିଚାର କରାଗଲା ନାହିଁ । ଫଳରେ କୃଷକ ତଥା ଜମିଦାରମାନେ ଅତିଷ୍ଠ ହୋଇ ପଡ଼ିଲେ । ମାତ୍ର ନେତୃତ୍ୱ ଅଭାବରୁ ସେମାନେ ନିରୁପାୟ ହୋଇ ରହିଲେ ।

ଇଂରେଜମାନଙ୍କ ନିର୍ଯ୍ୟାତନା ଭୋଗି ଭୋଗି ସୁରେନ୍ଦ୍ର ସାଏ ହୁଏତ ହଜାରିବାଗ ଜେଲ୍‌ରେ ପ୍ରାଣତ୍ୟାଗ କରିଥାନ୍ତେ । ମାତ୍ର ୧୭ ବର୍ଷ କାଳ କାରାଦଣ୍ଡ ଭୋଗିବା ପରେ ଉତ୍ତର ଭାରତରେ ଆରମ୍ଭ ହେଲା ସିପାହି ବିଦ୍ରୋହ । ୧୮୫୭ ମସିହା ଜୁଲାଇ ୩୦ ତାରିଖ ହଜାରିବାଗରେ ଥିବା ଅଷ୍ଟମ ବଙ୍ଗୀୟ ପଦାତିକ ବାହିନୀର ଦୁଇଟି ଦଳ ବିଦ୍ରୋହ ଘୋଷଣା କଲେ ଓ ହଜାରିବାଗ ଜେଲ୍ ଭାଙ୍ଗି ଦେଲେ । ୧୮୫୭ ମସିହା ଜୁଲାଇ ୩୧ ତାରିଖରେ ସୁରେନ୍ଦ୍ର ଓ ଉଦନ୍ତ ଦୁଇ ଭାଇ ଜେଲରୁ ଖସି କେନ୍ଦୁଝରର ଅରଣ୍ୟାବୃତ୍ତ ପଥ ଦେଇ ଜନ୍ମଭୂମି ସମ୍ବଲପୁରକୁ ପଳାଇ ଆସିଲେ । ସେହି ଐତିହାସିକ ଦିନ ଥିଲା ୧୮୫୭ ମସିହା ସେପ୍ଟେମ୍ବର ମାସ ୭ ତାରିଖ । ଆଗମନ ଖବର ପାଇ ବହୁ ଜମିଦାର, ଗଉଁନ୍ତିଆ ଓ ଜନସାଧାରଣ ସମବେତ ହୋଇ ଶାସନଠାରେ ସୁରେନ୍ଦ୍ରଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇ ତାଙ୍କର ମନୋବଳ ଦୃଢ଼ କଲେ ।

ସମ୍ବଲପୁରରେ ସେତେବେଳକୁ ଅବସ୍ଥା ସାଂଘାତିକ । ଏଣେ କର ଭାର ବଢ଼ି ବଢ଼ି ଚାଲିଥାଏ । ଲୋକଙ୍କ ଦୁର୍ଦ୍ଦଶା ଓ ଅସନ୍ତୋଷ କହିଲେ ନ ସରେ । ସୁରେନ୍ଦ୍ର ସାଏ ଏହି ଅବସ୍ଥା ଅନୁଧ୍ୟାନ କରି କାଳ ବିଳମ୍ବ ନ କରି ସମ୍ବଲପୁରରେ ପହଞ୍ଚିଲେ ୧୮୫୭ ମସିହା ଅକ୍ଟୋବର ମାସ ୭ ତାରିଖ ଦିନ । ତାଙ୍କ ସମ୍ବଲପୁର ଆଗମନ ବାର୍ତ୍ତା ସ୍ଥାନୀୟ ଲୋକଙ୍କ ମନରେ ଅପୂର୍ବ ଉନ୍ମାଦନା ଖେଳାଇ ଦେଇଥାଏ । ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ପାଇଁ ୧୪୦୦ରୁ ୧୬୦୦ ଜଣ ଅନୁଗତ ବ୍ୟକ୍ତି ସମବେତ ହୋଇଥାଆନ୍ତି ।

ସୁରେନ୍ଦ୍ର ସାଏ ଫେରିଆସିବା ବେଳକୁ ଘେଁସ ଅଞ୍ଚଳରେ ବିଦ୍ରୋହର ଅଗ୍ନି ଜଳୁଥାଏ । ସ୍ୱାଧୀନଚେତା ତଥା ପ୍ରଜାବତ୍ସଳ ଘେଁସ ଜମିଦାର ମାଧୋ ସିଂହ ବ୍ରିଟିଶମାନଙ୍କର ଅତ୍ୟଧିକ ଖଜଣା ବୃଦ୍ଧିର ତୀବ୍ର ବିରୋଧୀ ଥିଲେ । ସେମାନଙ୍କର ଷଡ଼ଯନ୍ତ୍ର ଓ ସମ୍ପତ୍ତିଲିପ୍ସା ପ୍ରତି ତାଙ୍କର ଚରମ ଘୃଣା ଥିଲା । କିନ୍ତୁ ସେ ସୁଯୋଗ ଅପେକ୍ଷାରେ ଥିଲେ । ସୋନାଖାନ ଜମିଦାର ନାରାୟଣ ସିଂ ମଧ୍ୟ ଇଂରେଜମାନଙ୍କ ଅନ୍ୟାୟ ଶାସନର ବିରୋଧ କରି ବିଦ୍ରୋହ କରିବା ପାଇଁ ହାତ ଟେକି ବସିଥିଲେ । ସେମାନେ ସୁରେନ୍ଦ୍ରଙ୍କ ଆସିବା ଖବର ପାଇ ୧୮୫୭ ମସିହା ବିଜୟା ଦଶମୀ ଦିନ ମାଧୋ ସିଂ ନିଜର ପୁଅ ହାତୀ ସିଂ, କୁଞ୍ଜଲ୍ ସିଂ ଓ ବୈରି ସିଂଙ୍କ ସଙ୍ଗେ ଦଳେ ସଶସ୍ତ୍ର ଯୁବକଙ୍କୁ ସୁରେନ୍ଦ୍ରଙ୍କ ସମ୍ବର୍ଦ୍ଧନା ପାଇଁ ପଠାଇଥିଲେ । ସେଦିନ ସମ୍ବଲପୁରର ବ୍ରହ୍ମପୁରା ମନ୍ଦିରରେ ସମସ୍ତ ମୁଖ୍ୟ ବିଦ୍ରୋହୀ ପ୍ରଦୀପ ଜାଳି ଦେଶରୁ ଇଂରେଜମାନଙ୍କୁ ତଡ଼ିବା ପାଇଁ ଓ ସୁରେନ୍ଦ୍ର ସାଏଙ୍କୁ ସମ୍ବଲପୁର ରାଜଗାଦିରେ ବସାଇବା ପାଇଁ ଅଗ୍ନି ଶପଥ ନେଇଥିଲେ ।

ଦୀର୍ଘ ୧୭ ବର୍ଷ କାଳ କାରାଗାରରେ ବନ୍ଦୀ ଜୀବନ କଟାଇବା ଫଳରେ ସୁରେନ୍ଦ୍ରଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଥାଏ । ସେ ସେହି ମୁହୂର୍ତ୍ତରେ ସଶସ୍ତ୍ର ସଂଗ୍ରାମ ନିମନ୍ତେ ପ୍ରସ୍ତୁତ ନଥାନ୍ତି । ସେ ବିଶ୍ରାମ ଚାହୁଁଥାଆନ୍ତି । ତେଣୁ ସମ୍ବଲପୁରର ସହକାରୀ କମିଶନର ଲି'ଙ୍କୁ ୧୮୫୭ ମସିହା ଅକ୍ଟୋବର ୧୩ ତାରିଖ ଦିନ ସାକ୍ଷାତ୍ କରି ତାଙ୍କ ଉପରୁ ଏବଂ ତାଙ୍କ ଭାଇ ଉଦନ୍ତଙ୍କ ଉପରୁ ଦଣ୍ଡାଦେଶ ପ୍ରତ୍ୟାହାର କରିବାକୁ ଏବଂ ତାଙ୍କୁ ସମ୍ବଲପୁରର ରାଜପଦ ପ୍ରଦାନ କରିବାକୁ ଅନୁରୋଧ ଜଣାଇଲେ । କ୍ୟାପ୍‌ଟେନ୍ ଲି' ତାଙ୍କୁ ଅନ୍ୟ ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ସମ୍ବଲପୁରରେ ନଜରବନ୍ଦୀରେ ରଖିଲେ । କିନ୍ତୁ ସୁରେନ୍ଦ୍ର ସାଏ ବିପଦ ଆଶଙ୍କା କରି ସମ୍ବଲପୁରରୁ ଖସି ନିଜ ଗାଁ ଖିଣ୍ଡାକୁ ପଳାଇଗଲେ । ସେଦିନ ଥିଲା ୧୮୫୭ ମସିହା ଅକ୍ଟୋବର ମାସ ୩୧ ତାରିଖ ରାତି । ଖିଣ୍ଡାରେ ତାଙ୍କ ଭାଇମାନେ ୧୪୦୦ ଅନୁଗତ ବିଦ୍ରୋହୀଙ୍କୁ ରଖାଇଥିଲେ । ସେମାନଙ୍କୁ ନେଇ ସେ ଏକ ଛୋଟ ପାହାଡ଼ ଉପରେ ଅବସ୍ଥିତ କୁଡୋପଲ୍ଲୀକୁ ନିଜର ସାମରିକ ଘାଟିରେ ପରିଣତ କଲେ ।

ଏହାପରେ ସୁରେନ୍ଦ୍ରଙ୍କ ନେତୃତ୍ୱରେ ଇଂରେଜ ସରକାର ବିରୋଧରେ ପ୍ରକାଶ୍ୟ ବିଦ୍ରୋହ ଦେଖାଦେଲା । ଘେଁସ, ଭେଡ଼େନ୍, କୋଲାବିରା, ପାହାଡ଼ ସିରିଗିଡ଼ି ଓ କୋଡ଼ାବିଗାର ଗଣ୍ଡ ଜମିଦାରମାନେ ସ୍ୱାଧୀନତା

ଆନ୍ଦୋଳନରେ ଯୋଗଦେଲେ । ଡିସେମ୍ବର ମାସ ବେଳକୁ ବିଦ୍ରୋହ ଅଧିକ ଭୟାବହ ହେଲା । ଅବସ୍ଥା ଗୁରୁତର ହେବାରୁ ସମ୍ବଲପୁରକୁ ଛୋଟନାଗପୁର କମିଶନରଙ୍କ ଅଧୀନରୁ ପ୍ରତ୍ୟାହାର କରି କଟକ କମିଶନରଙ୍କ ଅଧୀନରେ ରଖାଗଲା । ତେଣୁ କଟକର କମିଶନର କକବର୍ଣ୍ଣ ସାହେବ ଡିସେମ୍ବର ୧୯ ତାରିଖରେ ସମ୍ବଲପୁର ଯାଇ ଦାୟିତ୍ୱ ଗ୍ରହଣ କଲେ । ସେ ନାଗପୁରରୁ କେତେକ ଅଶ୍ୱାରୋହୀ ସୈନ୍ୟ ମଗାଇ କ୍ୟାପ୍‌ଟେନ୍ ଉଡ୍‌ଙ୍କ ଅଧିନାୟକତ୍ୱରେ ଡିସେମ୍ବର ୨୯ ତାରିଖରେ କୁଡ଼ୋପଲ୍ଲୀ ସାମରିକ ଘାଟି ଉପରେ ଅତର୍କିତ ଆକ୍ରମଣ କରି ସୁରେନ୍ଦ୍ରଙ୍କ ସାନଭାଇ ଛବିଳ ସାଏଙ୍କୁ ହତ୍ୟା କଲେ ।

ଏହି ଯୁଦ୍ଧ ପରେ ଇଂରେଜମାନେ ଆହୁରି କଠୋର ହୋଇଉଠିଲେ । ସେମାନେ ରାୟପୁର–ସମ୍ବଲପୁର ରାସ୍ତା ସଫା କରିବାକୁ ଉଦ୍ୟମ କଲେ । କାରଣ ବଣପାହାଡ଼ଘେରା ସିଙ୍ଗଡ଼ା ଘାଟିରେ ବିଦ୍ରୋହୀମାନେ ଲୁଚି ରାସ୍ତାରେ ଯାଉଥିବା ଇଂରେଜମାନଙ୍କୁ ହତ୍ୟା କରୁଥିଲେ । ସେହି ଘାଟିରେ ଘେଁସର ବିଦ୍ରୋହୀ ଜମିଦାର ମାଧୋ ସିଂହ ଓ ତାଙ୍କର ପୁଅମାନେ ଜଗିରହି ଗରିଲା ଯୁଦ୍ଧ କରୁଥିଲେ । ସିଙ୍ଗିଡ଼ା ଜମିଦାର ଜନାର୍ଦ୍ଦନ ସିଂହ ଇଂରେଜ ସେନାପତି ଉଡ୍‌ବ୍ରିଜଙ୍କ ମୁଣ୍ଡ କାଟି ପକାଇଲେ । ବିଦ୍ରୋହୀମାନେ କଟାମୁଣ୍ଡକୁ ଗୋଟିଏ ଗଛରେ ଟାଙ୍ଗି ଦେଲେ । ଏହାଦ୍ୱାରା ଛବିଳ ସାଏଙ୍କ ହତ୍ୟାର ପ୍ରତିଶୋଧ ନିଆଗଲା ।

୧୮୫୭ ମସିହା ନଭେମ୍ବର ମାସରୁ ସୁରେନ୍ଦ୍ର ବାହିନୀରେ ଯୋଗ ଦେଇଥିଲେ ଓଡ଼ିଶାର ଆଦିବାସୀ ଓ ଜନଜାତି ସମ୍ପ୍ରଦାୟର କୃଷକ ଓ ସେମାନଙ୍କ ମୁଖିଆ ଗଉଁନ୍ତିଆମାନେ । ଘେଁସ, ପାହାଡ଼ ସିରଗୀଡ଼, କୋଲାବିରା, ମଛିଦା, ଲଇଡ଼ା, କୋଦବଗା, ଲଖନ୍‌ପୁର, ଲୁଇସିଙ୍ଗା, ପାଟକୁଲଣ୍ଡା ଓ ଭେଡେନ୍‌ର ଜମିଦାରମାନେ ବିଦ୍ରୋହରେ ଅଂଶଗ୍ରହଣ କରିଥିଲେ । ବିଦ୍ରୋହୀମାନେ ପ୍ରଧାନତଃ କୃଷକ ଶ୍ରେଣୀର ଥିଲେ । ବ୍ରିଟିଶ ସରକାରଙ୍କର ସୁଶିକ୍ଷିତ ସୈନ୍ୟମାନଙ୍କ ତୋପ ବନ୍ଧୁକ ଓ ଗୁଳିଗୋଳା ଆଗରେ ତିଷ୍ଠି ରହି ଦୀର୍ଘଦିନ ବିଦ୍ରୋହ ଚଳାଇବା ସେମାନଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର ଥିଲା । କିନ୍ତୁ ସେମାନଙ୍କ ମନରେ ଏକମାତ୍ର ଆଶା ଓ ଆଶ୍ୱାସନା ଥିଲା ଯେ, ସୁରେନ୍ଦ୍ର ସାଏ ରାଜା ହେଲେ ସେମାନଙ୍କର ସବୁ ଅସୁବିଧା ଦୂର ହୋଇଯିବ ।

ସୁରେନ୍ଦ୍ର ସାଏ ମଧ୍ୟ ଅସାଧାରଣ ବୀରତ୍ୱ, ସାମରିକ କୌଶଳ, ବିଚାର ବୁଦ୍ଧି ଓ ଅଧ୍ୟବସାୟ ସହିତ ବିଦ୍ରୋହ ପରିଚାଳନା କରୁଥିଲେ । ଅଶ୍ୱଚାଳନାରେ ତାଙ୍କ ପଟୁତା ଅନନ୍ୟ ଥିଲା । ଅପୂର୍ବ ବୀରତ୍ୱ ଓ ଆତ୍ମବିଶ୍ୱାସ ତାଙ୍କ ବ୍ୟକ୍ତିତ୍ୱର ପ୍ରଧାନ ଆକର୍ଷଣ ଥିଲା । ସମ୍ବଲପୁରର ରାସ୍ତାଘାଟ, ଘାଟୀ ଓ ଜଙ୍ଗଲ ସହ ସେ ପିଲାଦିନୁ ସୁପରିଚିତ ଥିଲେ । ତେଣୁ କେଉଁଠାରେ ସେନା ମୁତୟନ କଲେ ବ୍ରିଟଶ ସୈନ୍ୟଙ୍କୁ ଛିନ୍ନଛତ୍ର କରାଯାଇପାରିବ ତାହା ସେ ଭଲ ଭାବେ ଜାଣିଥିଲେ । ଗରିଲା ଯୁଦ୍ଧରେ ପାରଙ୍ଗମ ଥିବାରୁ ସେ ବହୁ କ୍ଷେତ୍ରରେ ବ୍ରିଟିଶ ସୈନ୍ୟଙ୍କୁ ଅସୁବିଧାରେ ପକାଇ ପାରିଥିଲେ ।

ଅସ୍ୱାସ୍ଥ୍ୟକର ଜଳବାୟୁ ଓ ଘନ ଜଙ୍ଗଲରେ ରହି ସୁରେନ୍ଦ୍ର ବାହିନୀ ସହ ଯୁଦ୍ଧ କରି କେତେକ ବ୍ରିଟିଶ ସୈନ୍ୟ ରୋଗାକ୍ରାନ୍ତ ହୋଇ ପଡ଼ିଲେ । ସେମାନଙ୍କ ଚିକିତ୍ସା ନିମନ୍ତେ ସମ୍ବଲପୁରରୁ ଦୁଇଜଣ ଇଂରେଜ ଡାକ୍ତର ଆସିଥିଲେ । କିନ୍ତୁ ଯୁଜୁମରାଠାରେ ବିଦ୍ରୋହୀମାନେ ଡାକ୍ତର ମୁର୍‌ଙ୍କୁ ହତ୍ୟା କଲେ ଓ ଡାକ୍ତର ହାମ୍‌ସ କୌଣସିମତେ ଖସି ପଳାଇଗଲେ ।

ଏହାପରେ ଇଂରେଜ ସୈନ୍ୟମାନେ ଆତଙ୍କିତ ହୋଇଉଠିଲେ । ବିଦ୍ରୋହ ଦମନ ନିମନ୍ତେ କର୍ଣ୍ଣେଲ ଓ ଫାଷ୍ଟରଙ୍କୁ କମିଶନରଙ୍କ କ୍ଷମତା ଦିଆଯାଇ ସମ୍ବଲପୁର ପଠାଗଲା । କଟକରୁ ବହୁ ସୈନ୍ୟସାମନ୍ତ ଓ ଅସ୍ତ୍ରଶସ୍ତ୍ର ଅଣାଗଲା । ସେ ୧୮୫୮ ମସିହା ମାର୍ଚ୍ଚ ୨୯ତାରିଖରେ ସମ୍ବଲପୁରରେ ପହଞ୍ଚି ଦାୟିତ୍ୱ ଗ୍ରହଣ କଲେ ଏବଂ ପାର୍ଶ୍ୱବର୍ତ୍ତୀ ଜମିଦାରମାନଙ୍କୁ ସୁରେନ୍ଦ୍ରଙ୍କୁ ସାହାଯ୍ୟ ନ କରିବାକୁ କଡ଼ା ଧମକ ଦେଲେ । ବିଦ୍ରୋହର ଅବସାନ ପାଇଁ କଠୋର ଦମନମୂଳକ ନୀତି ଅବଲମ୍ବନ କଲେ । ବହୁ ସଂଖ୍ୟାରେ ବିଦ୍ରୋହୀମାନଙ୍କୁ ଆଖିବୁଜା ଧରି ଜେଲ୍ ପଠାଇ ଦେଲେ । ସମ୍ବଲପୁର ଜେଲ୍‌ରେ ୮୦ଜଣଙ୍କ ପାଇଁ ସ୍ଥାନ ଥିବା ସତ୍ତ୍ୱେ ସେଠାରେ ଇଂରେଜମାନେ ୩୦୦ ବିଦ୍ରୋହୀଙ୍କୁ ନେଇ ବନ୍ଦୀ କରି ରଖିଲେ । ଉଜ୍ଜ୍ୱଳ ସାଏଙ୍କୁ ୧୮୫୮ ଜୁନ୍ ମାସରେ

ଫାଶୀଦଣ୍ଡ ଦେଲେ । ଏହିସବୁ କଠୋର ପଦକ୍ଷେପ ଫଳରେ ବିଦ୍ରୋହ ଦବିଗଲା, କିନ୍ତୁ ଇଂରେଜମାନେ ସୁରେନ୍ଦ୍ର ସାଏଙ୍କୁ ଧରିପାରିଲେ ନାହିଁ ।

୧୮୫୭–୫୮ ମସିହାରେ ସମ୍ବଲପୁର ବିଦ୍ରୋହରେ ସୁରେନ୍ଦ୍ର ସାଏ ତାଙ୍କ ପରିବାର, ଘେଁସ ଜମିଦାର ମାଧୋ ସିଂହ, ତାଙ୍କ ପରିବାର ତଥା ତାଙ୍କ ସାଥୀ ବିଦ୍ରୋହୀମାନେ ଅଭୂତପୂର୍ବ ଦେଶପ୍ରେମର ପରିଚୟ ଦେଇଥିଲେ । ସୀମିତ ଅସ୍ତ୍ର, ସୀମିତ ସମ୍ବଳ, ଅଳ୍ପ ପରିମାଣର ପୁରୁଣାକାଳିଆ ଅସ୍ତ୍ରଶସ୍ତ୍ର ସତ୍ତ୍ୱେ ସେମାନେ ଯେଉଁ ବୀରତ୍ୱ ପ୍ରଦର୍ଶନ କରିଥିଲେ, ତାହା ଅତୁଳନୀୟ । ସମ୍ମୁଖ ଯୁଦ୍ଧରେ ଇଂରେଜମାନଙ୍କୁ ପାରିବା କଷ୍ଟକର ମନେକରି ସେମାନେ ଗରିଲା ଯୁଦ୍ଧ ଚଳାଇଲେ ।

ସୁରେନ୍ଦ୍ର ଲୁଚିଛପି ରାୟପୁର ଓରେଓ୍ୱା ଅଞ୍ଚଳରେ ଆନ୍ଦୋଳନ ଚଳାଇ ରଖିଲେ । ୧୮୬୦ ମସିହା ସେପ୍ଟେମ୍ବର ମାସ ବେଳକୁ ସେ ଓ ତାଙ୍କର ଅନୁଚରମାନେ ଖଡ଼ିଆଳ ରାଜ୍ୟର ମାଣିକଗଡ଼ ପାହାଡ଼ ଅଭିମୁଖେ ଯାତ୍ରା କଲେ । ବାଟରେ ଇଂରେଜଙ୍କ ସହ ଯୁଦ୍ଧ ହେଲା କିନ୍ତୁ ସୁରେନ୍ଦ୍ରଙ୍କ ବିରୋଧରେ ଇଂରେଜଙ୍କ ଅଭିଯାନ ଚାଲୁ ରହିଲା । ସେମାନେ ବହୁ ଗ୍ରାମ ଜାଳିପୋଡ଼ି ଛାରଖାର୍ କରିଦେଲେ । ବିଦ୍ରୋହୀ ଜମିଦାରମାନଙ୍କ ଧନସମ୍ପତ୍ତି ଲୁଣ୍ଠନ କଲେ । ସେମାନଙ୍କ ପ୍ରତିଶୋଧର ବହ୍ନି ପ୍ରଜ୍ୱଳିତ ହେବାରୁ ନିରୀହ ଲୋକେ ବଣଜଙ୍ଗଲକୁ ଜୀବନରକ୍ଷା ନିମନ୍ତେ ପଳାଇଗଲେ ।

୧୮୬୧ ମସିହା ଏପ୍ରିଲ ମାସରେ ମେଜର ଇମ୍ପେ ସମ୍ବଲପୁରର ଡେପୁଟି କମିଶନର ନିଯୁକ୍ତ ହେଲେ । ତାଙ୍କ ନୀତି, ଦୟା, କ୍ଷମା ଓ ସହାନୁଭୂତି ଉପରେ ଆଧାରିତ ଥିଲା । ସେ ଉଦାରପନ୍ଥା ଅବଲମ୍ବନ କରି ରାଜକ୍ଷମା ଘୋଷଣା କଲେ । ସେହିବର୍ଷ ସେପ୍ଟେମ୍ବର ମାସ ୨୪ ତାରିଖ ଓ ଅକ୍ଟୋବର ୧୧ ତାରିଖରେ ସେ ପ୍ରଚାର କଲେ ଯେ ଆତ୍ମସମର୍ପଣ କଲେ ବିଦ୍ରୋହୀମାନଙ୍କୁ କ୍ଷମା କରାଯିବ ଏବଂ ସେମାନଙ୍କ ସମ୍ପତ୍ତି ଫେରାଇ ଦିଆଯିବ । ସୁରେନ୍ଦ୍ରଙ୍କ ପରିବାରକୁ ବାର୍ଷିକ ୫୬୦୦ଟଙ୍କା ପେନ୍‌ସନ୍ ଦେବାକୁ ସେ କଟକ କମିଶନରଙ୍କୁ ସୁପାରିସ କରି ପଠାଇଥିଲେ । ବିଦ୍ରୋହୀମାନେ ମେଜର ଇମ୍ପେଙ୍କ ଉଦାର ନୀତି ଦ୍ୱାରା ପ୍ରଭାବିତ ହୋଇ ଆତ୍ମସମର୍ପଣ କଲେ । ସେମାନଙ୍କୁ କ୍ଷମା ପ୍ରଦାନ ସହ ସେମାନଙ୍କ ବାଜ୍ୟାପ୍ତ ସମ୍ପତ୍ତି ଫେରାଇ ଦିଆଗଲା । କିଛି କିଛି ଆର୍ଥିକ ପୁରସ୍କାର ମଧ୍ୟ ଦିଆଗଲା । ଅନେକ ଅସନ୍ତୁଷ୍ଟ ବିଦ୍ରୋହୀ ଆଶ୍ୱସ୍ତ ହେଲେ । ଏପରିକି ସୁରେନ୍ଦ୍ରଙ୍କ ଭାଇ ଉଦନ୍ତ, ଧ୍ରୁବ ଓ ପୁତ୍ର ମିତ୍ରଭାନୁ ମଧ୍ୟ ୧୮୬୨ ମସିହା ଜାନୁଆରୀ ୭ ତାରିଖ ଦିନ ଆତ୍ମସମର୍ପଣ କରିଥିଲେ । ମାଧୋ ସିଂହଙ୍କ ପୁତ୍ର ହାଥୀ ସିଂହ ଆତ୍ମସମର୍ପଣ କରିବାରୁ ତାଙ୍କୁ ଘେଁସ ଜମିଦାରୀ ଫେରାଇ ଦିଆଗଲା ।

କିନ୍ତୁ ସୁରେନ୍ଦ୍ର ଅନମନୀୟ ତଥା ନିଜ ପ୍ରତିଜ୍ଞାରେ ଅଟଳ ରହିଲେ । ସେ ଘୋଷଣା କଲେ– ସେ ବ୍ରିଟିଶ ସରକାରଙ୍କ ପାଖରେ କ୍ଷମା ପ୍ରାର୍ଥନା କରିବାକୁ ଚାହାନ୍ତି ନାହିଁ । ସମ୍ବଲପୁର ମାଟି ମା'ର ସ୍ୱାଧୀନତା ତଥା ରାଜସିଂହାସନ ଲାଭ ନିମନ୍ତେ ସେ ପ୍ରାଣପାତ ସଂଗ୍ରାମ ଚଳାଇବେ । ମେଜର ଇମ୍ପେଙ୍କ ଅନୁରୋଧ ବ୍ୟର୍ଥ ହେଲା ।

କ୍ରମଶଃ ସମଗ୍ର ଭାରତବର୍ଷରୁ ବିଦ୍ରୋହର ଅଗ୍ନି ଲିଭିଗଲା । ସୁରେନ୍ଦ୍ର ଶ୍ରାନ୍ତ ଓ କ୍ଳାନ୍ତ । ଲୋକନାଥ ପଣ୍ଡା ଓ ମୃତ୍ୟୁଞ୍ଜୟ ପାଣିଗ୍ରାହୀ ନାମକ ଦୁଇଜଣ ବିଦ୍ରୋହୀ ନେତା ସୁରେନ୍ଦ୍ରଙ୍କୁ ବହୁତ ବୁଝେଇଲେ । ଉଦନ୍ତ ଥିଲେ ସୁରେନ୍ଦ୍ର ବାହିନୀର ସେନାପତି । ତାଙ୍କ ଆତ୍ମସମର୍ପଣ ସୁରେନ୍ଦ୍ରଙ୍କ ମନରେ ଆଘାତ ଦେଲା । ତଥାପି ସୁରେନ୍ଦ୍ର ଓ ଲଖନପୁର ଜମିଦାର କମଳ ସିଂହ ଆତ୍ମସମର୍ପଣ କଲେ ନାହିଁ ।

ଶେଷରେ ମେଜର ଇମ୍ପେ ଶେଷ ଚେଷ୍ଟା ଭାବେ ଉଦନ୍ତଙ୍କୁ ପଠାଇଲେ ସୁରେନ୍ଦ୍ରଙ୍କୁ ବୁଝେଇ ଶୁଝେଇ ଆତ୍ମସମର୍ପଣ ନିମନ୍ତେ ରାଜି କରାଇବାକୁ । ଉଦନ୍ତଙ୍କ ସହ ଆଲୋଚନା ପରେ ସୁରେନ୍ଦ୍ର ସର୍ତ୍ତ ଦେଲେ, ସମ୍ବଲପୁରର ନିରୀହ ପ୍ରଜାମାନଙ୍କୁ ବିଦ୍ରୋହ ଅଭିଯୋଗରେ ଯେପରି ନିର୍ଯାତନା ଦିଆଯାଉଛି, ତାହା ବନ୍ଦ କରାଯାଉ । ତାଙ୍କୁ ସମ୍ବଲପୁର ରାଜସିଂହାସନ ଫେରାଇ ଦେବାପାଇଁ ଚେଷ୍ଟା କରାଯାଉ ଏବଂ ତାଙ୍କ ସହ ଯେଉଁ କେତେଜଣ ବିଦ୍ରୋହୀ ଆତ୍ମଗୋପନ କରି ଅତି ଦୁଃଖ କଷ୍ଟରେ ରହିଛନ୍ତି, ସେମାନଙ୍କୁ କିଛି ଆର୍ଥିକ ସାହାଯ୍ୟ ଦିଆଯାଉ ।

ମେଜର ଇମ୍ପେ ତାହା ସମ୍ମାନର ସହ ଗ୍ରହଣ କଲେ । ତାଙ୍କ ସହଯୋଗୀମାନଙ୍କ ପାଇଁ କିଛି ଆର୍ଥିକ ସାହାଯ୍ୟ ପଠାଇଲେ । ୧୮୬୨ ମସିହା ମେ ୧୬ ତାରିଖ ଦିନ ନିଜ ଜୀବନ ସୁରକ୍ଷା, ମୁକ୍ତି ଓ କ୍ଷମାଦାନର ପ୍ରତିଶ୍ରୁତି ପାଇ ସୁରେନ୍ଦ୍ର ଆତ୍ମସମର୍ପଣ କଲେ । ମେଜର ଇମ୍ପେ ତାଙ୍କୁ ଓ ତାଙ୍କର ଭାଇ ଉଦନ୍ତ ଓ ଧ୍ରୁବଙ୍କୁ ନିଜ ଗ୍ରାମ ଖିଣ୍ଡାରେ ନିର୍ଭୟରେ ବାସ କରିବାକୁ ଅନୁମତି ଦେଲେ । ତାଙ୍କ ପାଇଁ ବାର୍ଷିକ ୧୨୦୦ଟଙ୍କା ଏବଂ ଅନ୍ୟମାନଙ୍କ ଚଳିବା ପାଇଁ ପେନ୍‌ସନ୍ ବ୍ୟବସ୍ଥା ମଧ୍ୟ କଲେ । କେବଳ କମଳ ସିଂହ ଓ କୁଞ୍ଜଲ ସିଂହ ଆତ୍ମସମର୍ପଣ ନ କରି ବିଦ୍ରୋହ ଚଳାଇ ରଖିଲେ ।

ମାତ୍ର ଅଳ୍ପ ଦିନ ପରେ ସମ୍ବଲପୁରରେ ୧୮୬୩ ମସିହା ଡିସେମ୍ବର ମାସରେ ଉଦାରଚେତା ପ୍ରଶାସକ ମେଜର ଇମ୍ପେଙ୍କର ପରଲୋକ ହେଲା । ତାଙ୍କ ପରେ ଦାୟିତ୍ୱ ଗ୍ରହଣ କଲେ ମେଜର କେମ୍ବରଲେନ୍ । ସେ କିନ୍ତୁ କଠୋରପନ୍ଥୀ ଥିଲେ । ସୁରେନ୍ଦ୍ର ନିଜ ଗ୍ରାମରେ ଥିଲେ ମଧ୍ୟ ଅନ୍ୟଆଡ଼େ ଚାଲିଥିବା ବିଦ୍ରୋହ ତାଙ୍କ ପ୍ରରୋଚନାରେ ହେଉଛି ବୋଲି ସେ ଅନୁମାନ କଲେ । ତେଣୁ ସୁରେନ୍ଦ୍ରଙ୍କୁ ବନ୍ଦୀ କରିବା ପାଇଁ ଗୁପ୍ତ ଯୋଜନା କଲେ ।

୧୮୬୪ ମସିହା ଜାନୁଆରୀ ୨୩ ତାରିଖ, ସେଦିନ ପୁଷ ପୂର୍ଣ୍ଣମୀ । ଅର୍ଦ୍ଧ ରାତ୍ରିରେ ସୁରେନ୍ଦ୍ର ସାଏଙ୍କୁ ଗିରଫ କରିବା ପାଇଁ ସେ ଏକ ଷଡ଼ଯନ୍ତ୍ର ରଚନା କଲେ । ଷଡଯନ୍ତ୍ରର ମାଧ୍ୟମ ହେଲେ ସମ୍ବଲପୁରର ନିଶାଦ୍ରବ୍ୟ ବିକ୍ରେତା ବିଶ୍ୱାସଘାତକ ଦୟାନିଧି ମେହେର । ଦେବୀଙ୍କ ପ୍ରସାଦ ନାମରେ ସେ ସୁରେନ୍ଦ୍ର ଏବଂ ତାଙ୍କର ଆତ୍ମୀୟମାନଙ୍କୁ ନିଶାଦ୍ରବ୍ୟ ମିଶ୍ରିତ ଖାଦ୍ୟ ଖୁଆଇ ଦେଲେ । ଫଳରେ ସେମାନଙ୍କୁ ଅଚେତନ ଅବସ୍ଥାରେ ଗିରଫ କରାଗଲା । ରାତାରାତି ସୁରେନ୍ଦ୍ର, ଉଦନ୍ତ, ଧ୍ରୁବ, ମିତ୍ରଭାନୁ ଏବଂ ଧ୍ରୁବଙ୍କ ଚାରିପୁତ୍ରଙ୍କୁ ଗିରଫ କରି ସମ୍ବଲପୁର ଜେଲ୍‌କୁ ପଠାଇ ଦିଆଗଲା । ସେମାନଙ୍କ ପରେ ହଟେ ସିଂହ, କମଳ ସିଂହ, ଖଗେଶ୍ୱର ସିଂହ, ନୀଳାମ୍ବର ସିଂହ, ଲୋକନାଥ ଗଡ଼ତିଆ, ମୃତ୍ୟୁଞ୍ଜୟ ପାଣିଗ୍ରାହୀ, ପଦ୍ମନାଭ ଗୁରୁ, ଜଗବନ୍ଧୁ ହୋତା ଓ ପ୍ରଭାକର ମିଶ୍ର ପ୍ରମୁଖ ଗିରଫ ହେଲେ । ସମସ୍ତଙ୍କୁ ରାୟପୁର ଜେଲ୍‌କୁ ପଠେଇ ଦିଆଗଲା ।

ବିଚାରରେ ଦଶଜଣଙ୍କୁ ଯାବତ୍‌ଜୀବନ କାରାଦଣ୍ଡ ଓ ଚାରିଜଣଙ୍କୁ ସାତବର୍ଷ ଲେଖାଏଁ ଜେଲ୍ ଦଣ୍ଡାଦେଶ ହେଲା । ୧୮୬୫ ମସିହାରେ ବିଦ୍ରୋହୀ ବନ୍ଦୀମାନଙ୍କୁ ଅସିରଗଡ଼ ଜେଲ୍‌କୁ ପଠାଗଲା । ଏଠାରେ ପ୍ରଥମେ ଉଦନ୍ତ ସାଏ, ଲୋକନାଥ ଗଡ଼ତିଆ, ମୃତ୍ୟୁଞ୍ଜୟ ପାଣୀଗ୍ରାହୀଙ୍କର ମୃତ୍ୟୁ ହେଲା ।

ସୁରେନ୍ଦ୍ରଙ୍କ ବିରୋଧରେ ମଧ୍ୟ ମିଥ୍ୟାରେ ସାମ୍ରାଜ୍ଞୀଙ୍କ ବିରୋଧରେ ପୁଣି ବିଦ୍ରୋହ ଆୟୋଜନ ଅଭିଯୋଗ ଆଣି ତାଙ୍କ ପ୍ରତି ଆଜୀବନ କାରାଦଣ୍ଡ ଆଦେଶ ହୋଇଥିଲା । ତାଙ୍କୁ ବନ୍ଦୀ କରି ମଧ୍ୟପ୍ରଦେଶ ରାୟପୁର ଜିଲ୍ଲାର ଅସିରଗଡ଼ ଦୁର୍ଗରେ ରଖିଲେ । ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରି ଦିଆଗଲା । ଜେଲ୍‌ରେ ନିର୍ଯାତନା ଭୋଗି ଭୋଗି ସେ ଅନ୍ଧ ହୋଇଗଲେ ଏବଂ ୧୮୮୪ ମସିହା ଫେବୃଆରୀ ମାସ ୨୮ ତାରିଖ ଗୋଟାଏ ବେଳେ ୭୫ବର୍ଷ ବୟସରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଜନ୍ମଭୂମିର ଗୌରବ ରଖିବା ପାଇଁ ସେ ଜାଣିଶୁଣି ଶହୀଦତ୍ୱ ବରଣ କରିନେଲେ ସତ ମାତ୍ର ଇଂରେଜମାନଙ୍କ କ୍ରୀଡନକ ହେବାକୁ ପସନ୍ଦ କରି ନ ଥିଲେ କି ନିଜର ସ୍ୱାଭିମାନ ବଳିଦେଇ ନ ଥିଲେ ।

ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ସୁରେନ୍ଦ୍ର ସାଏଙ୍କର ସଂଗ୍ରାମ ଦୀର୍ଘତମ ସଂଗ୍ରାମ । ଏହା ଦୀର୍ଘ ୪୫ବର୍ଷ ଧରି ବହ୍ନିମାନ ହୋଇଥିଲା । କୌଣସି ସଂଗ୍ରାମୀ ଅନ୍ୟାୟ ବିରୋଧରେ ଏତେ ଦୀର୍ଘ ସମୟ ଧରି ସଂଗ୍ରାମ କରିବା କେବଳ ବୀରପ୍ରସବିନୀ ଓଡ଼ିଶା ମାଟିରେ ହିଁ ସମ୍ଭବ ହୋଇଥିଲା । ସୁରେନ୍ଦ୍ରଙ୍କ ମୃତ୍ୟୁରେ ପ୍ରଥମ ଭାରତୀୟ ସ୍ୱତନ୍ତ୍ରତା ସଂଗ୍ରାମର ଶେଷ ବହ୍ନିଶିଖା ନିର୍ବାପିତ ହୋଇଯାଇଥିଲା । କିନ୍ତୁ ସୁରେନ୍ଦ୍ର ରହିଗଲେ କୋଟି କୋଟି ଲୋକଙ୍କ ହୃଦୟରେ ସ୍ୱାଭିମାନ ରକ୍ଷା ପାଇଁ ପ୍ରେରଣାର ଉତ୍ସ ରୂପେ ଅମର, ଅବିସ୍ମରଣୀୟ ।

ସଂପାଦକ, 'ଆମେ ଓଡ଼ିଆ'
ପାଣ୍ଡବ ନଗର, ଭୁବନେଶ୍ୱର

## ୫୮ତମ ପ୍ରତିଷ୍ଠା ଦିବସ ପାଳନ ଅବସରରେ

# ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠାର ଅଭୁଲା ସ୍ମୃତି

ବସନ୍ତ କୁମାର ନାୟକ

ପାରାଦ୍ୱୀପ ବନ୍ଦର ୧୯୬୨ ମସିହା ଜାନୁଆରୀ ୩ ତାରିଖରେ ପ୍ରତିଷ୍ଠା ହେଲା । ହେଲେ ଏହା ପୂର୍ବରୁ ପାରାଦ୍ୱୀପକୁ ବହୁ ବାଧା ପ୍ରତିବନ୍ଧକର ସାମ୍ନା କରିବାକୁ ପଡିଥିଲା । ପ୍ରାୟ ଏକ ଦଶନ୍ଧି ଧରି ବହୁ ପରୀକ୍ଷାନିରୀକ୍ଷା ଓ ପ୍ରଶାସନିକ କସରତ ପରେ ଏହା ସ୍ୱାଧୀନୋତ୍ତର ପ୍ରଥମ ଓ ଦେଶର ୮ମ ବୃହତ୍ ବନ୍ଦର ଭାବେ ଆତ୍ମପ୍ରକାଶ କଲା । ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଜଳପଥରେ ଏହି ଦ୍ୱୀପକୁ ଆସି ବନ୍ଦରର ଭିତ୍ତିସ୍ଥାପନ କରିଥିଲେ ।

ଦେଶର ତୃତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ପାରାଦ୍ୱୀପ କିମ୍ବା ଓଡିଶାର ଅନ୍ୟ କୌଣସି ସ୍ଥାନରେ ବନ୍ଦର ପ୍ରତିଷ୍ଠାର ନାମଗନ୍ଧ ନଥିଲା । କିନ୍ତୁ ସମୃଦ୍ଧିଶାଳୀ ଓଡିଶା ନିର୍ମାଣ ନିମନ୍ତେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ପାରାଦ୍ୱୀପକୁ ବୃହତ ବନ୍ଦର କରି ତା'ସହ କେନ୍ଦୁଝର ଓ କଟକ ଜିଲ୍ଲାର ସୁକିନ୍ଦା ଖଣି ଅଂଚଳକୁ ସଂଯୁକ୍ତ କରିବା ପାଇଁ ଏକ୍ସପ୍ରେସ ୱେ ନିର୍ମାଣ ପ୍ରସ୍ତାବ ଯୋଜନା କମିଶନଙ୍କୁ ପଠାଇଲେ । ଏକ ପକ୍ଷରେ ପାରାଦ୍ୱୀପକୁ ପରିବହନ ସୁବିଧା ପାଇଁ ରେଳରାସ୍ତା ନ ଥିବାରୁ ବଡ ବନ୍ଦର ପାଇଁ ଦାବି ଗ୍ରହଣଯୋଗ୍ୟ ହେଉ ନ ଥାଏ । ତେଣେ ରେଳରାସ୍ତା ପାଇଁ କହିଲେ ବନ୍ଦର ହେବାର ବ୍ୟବସ୍ଥା ନ ଥିବାରୁ ରେଳରାସ୍ତା କଥା କେହି ଶୁଣୁ ନ ଥିଲେ । ଯୋଜନା କମିଶନ ଏହାକୁ ଅନୁମୋଦନ କଲେ ନାହିଁ କିମ୍ବା ଏଥିପାଇଁ ବଜେଟରେ ଅର୍ଥ ବ୍ୟବସ୍ଥା କଲେ ନାହିଁ, ବରଂ ଏହି ପ୍ରସ୍ତାବକୁ ଏକ ଅବାସ୍ତବ ପରିକଳ୍ପନା ବୋଲି କହିଥିଲେ । ମାତ୍ର ବିଜୁବାବୁଙ୍କ ଦୁଃସାହସିକ ପଦକ୍ଷେପ ଯୋଗୁଁ ପାରାଦ୍ୱୀପ ସେତେବେଳେ ବୋଧହୁଏ ପୃଥିବୀର ରେଳ ସଂଯୋଗ ନ ଥିବା ପ୍ରଥମ ବନ୍ଦର ଭାବେ ପ୍ରତିଷ୍ଠା ଲାଭ କଲା ।

ବିଜୁବାବୁ ରାଜ୍ୟ ରାଜକୋଷରୁ ଅର୍ଥ ବ୍ୟବସ୍ଥା କରି ବନ୍ଦର ଓ ଏକ୍ସପ୍ରେସ ୱେ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏହି ଦୁଇ ପ୍ରକଳ୍ପ ଅତ୍ୟନ୍ତ ବ୍ୟୟ ବହୁଳ ଥିଲା । କାରଣ ସେତେବେଳେ ରାଜ୍ୟର (୧୯୬୧-୬୨) ମୋଟ ରାଜସ୍ୱ ମାତ୍ର ୫୫ କୋଟି ୨୦ ଲକ୍ଷ ଥିଲା ଏବଂ ଏହି ଦୁଇ ପ୍ରକଳ୍ପ ବାବଦରେ ବନ୍ଦର ପାଇଁ ୧୬ କୋଟି ୨୦ ଲକ୍ଷ ଓ ଏକ୍ସପ୍ରେସ ୱେ ପାଇଁ ୭ କୋଟି ଅର୍ଥ ବ୍ୟୟ ବରାଦ କରାଯାଇଥିଲା । ବିଜୁବାବୁଙ୍କ ବିଶ୍ୱାସ ଥିଲା ବନ୍ଦର ଓ ଏକ୍ସପ୍ରେସ ୱେ ନିର୍ମାଣ ଶେଷ ହେଲେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ପ୍ରଭାବିତ କରି ତାକୁ କେନ୍ଦ୍ରୀୟ ପ୍ରକଳ୍ପ କରାଇ ଦେବେ । ପାରଦ୍ୱୀପ ବନ୍ଦରର ଶୁଭ ଦେବା ପାଇଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଆମନ୍ତ୍ରଣ କରାଗଲା ଏବଂ ପ୍ରଧାନମନ୍ତ୍ରୀ ସମ୍ମତି ମଧ୍ୟ ଦେଲେ । ୧୯୬୨ ମସିହା ଜାନୁଆରୀ ୩ ତାରିଖ ପୌଷ ଶୁକ୍ଳ ଦି୨୦ନ ୧୩୬୯ ସାଲରେ ଶୁଭଦାନ ପାଇଁ ଦିନ ସ୍ଥିର ହେଲା । ପାରାଦ୍ୱୀପକୁ ସେତେବେଳେ ରାସ୍ତାଘାଟ ନ ଥିଲା । ବିଦ୍ୟୁତ୍ ଶକ୍ତି ନ ଥିଲା । ଘରଦ୍ୱାର କିଛି ନ ଥିଲା । ପଣ୍ଡିତ ନେହେରୁଙ୍କ ଆସିବା ବେଳକୁ ଅଳ୍ପ ସମୟ ମଧ୍ୟରେ ପ୍ରଧାନମନ୍ତ୍ରୀଙ୍କ ବାସୋପଯୋଗୀ ଏକ ଅତିଥି ଭବନ ନିର୍ମାଣ ସାଂଗକୁ କେତୋଟି ବଡ ବଡ ଟିଣ ସେଡ୍

ତିଆରି ହୋଇଥିଲା । ଅତିଥି ଭବନର ନାମ ରଖାଯାଇଥିଲା 'ନେହେରୁ ନିବାସ'। କେତୋଟି ଚଳନୀୟ ପକ୍କାରାସ୍ତା ନିର୍ମାଣ ସହିତ ଟେଲିଫୋନ ଓ ବିଦ୍ୟୁତ୍ ସଂଯୋଗ କରାଯାଇଥିଲା । ଏପରିକି ହେନ୍ତାଳ ଜଙ୍ଗଲର ସ୍ଥାନେ ସ୍ଥାନେ ବିଦ୍ୟୁତ ଆଲୋକ ଖଞ୍ଜାଯାଇ ଗଢ଼ିଉଠୁଥିବା ଏକ ସହରର ଭ୍ରମ ସୃଷ୍ଟି କରାଯାଇଥିଲା । ଏ ସମସ୍ତ ନିର୍ମାଣମୂଳକ କାର୍ଯ୍ୟ ଆଖିପିଛୁଳାକେ ହେଉଥିବା ପରି ଜଣାଯାଉଥିଲା । ଭୁବନେଶ୍ୱରରୁ ପାରାଦ୍ୱୀପକୁ ଯିବାବେଳେ ରଘୁନାଥପୁର, ତିର୍ତୋଲ ଓ କୁଜଙ୍ଗଠାରେ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଯାଇଥିଲା । ବିପୁଳ ଜନସମାଗମ ଯୋଗୁଁ କାର୍ଯ୍ୟକ୍ରମରେ ବିଳମ୍ବ ଘଟିଥିଲା । ପ୍ରଧାନମନ୍ତ୍ରୀ କୁଜଙ୍ଗର ଅନନ୍ତପୁର ଲକ୍‌ଠାରୁ ମହାନଦୀର ଜଳପଥରେ ଯାଇ 'ନେହେରୁ ନିବାସ'ରେ ରାତ୍ରିଯାପନ କଲେ ।

ପରଦିନ ଜାନୁଆରୀ ୩ ତାରିଖ ସକାଳ ୮ଟାରେ ଶୁଭଦାନ ସମୟ ସ୍ଥିର ହୋଇଥାଏ । ସଭାରେ ଲୋକ ଗହଳି ପାଇଁ ସେଦିନ ରାଜ୍ୟ ସରକାର ଅଘୋଷିତ ଛୁଟି ପ୍ରଦାନ ସହିତ ପାରାଦ୍ୱୀପ ଯିବାପାଇଁ କଟକ ଓ ଭୁବନେଶ୍ୱରରୁ ମାଗଣାରେ ବସ୍ ସେବା ଯୋଗାଇ ଦେଇଥିଲେ । କଟକର କଲେଜ ଛକ ଓ ଭୁବନେଶ୍ୱର ଦୁଇ ନମ୍ବର ୟୁନିଟ୍ ପେଟ୍ରୋଲ ପମ୍ପ କଡରେ ଥିବା ବସ୍‌ଷ୍ଟାଣ୍ଡ ନିକଟରେ ବସ୍‌ଗୁଡିକୁ ରଖାଯାଇ ଡାକବାଜି ଯନ୍ତ୍ରଯୋଗେ ଜଣାଇ ଦିଆଯାଉଥିଲା । ଅନ୍ୟପକ୍ଷରେ କୁଜଙ୍ଗ ଅଞ୍ଚଳର ଚେୟାରମ୍ୟାନ୍ ଶ୍ରୀ ନାରାୟଣ ବୀରବର ସାମନ୍ତ ଓ ସ୍ଥାନୀୟ ବିଧାୟିକା ଶ୍ରୀମତୀ ରତ୍ନମାଳୀ ଜେମାଙ୍କ ଆହ୍ୱାନରେ ଢିଙ୍କିଆ, ନୂଆଗାଁ ଓ କୁଜଙ୍ଗ ଅଂଚଳର ଶହଶହ ଲୋକ ଶୀତ ରାତିକୁ ଖାତିର ନକରି ଡଙ୍ଗାରେ ଯାଇ ସଭାସ୍ଥଳରେ ପହଞ୍ଚିଥିଲେ । ନେହେରୁ ନିବାସର ଦକ୍ଷିଣକୁ ୧ କି.ମି. ଦୂର ହେଟାମୁଣ୍ଡିଆ ବଙ୍ଗୋପସାଗର କୂଳ ସଭାମଞ୍ଚ ପାଖରେ ସୂର୍ଯୋଦୟ ପୂର୍ବରୁ ବିରାଟ ଜନସମାଗମ ହେବା ଏକ ବିସ୍ମୟକର ଘଟଣା ଥିଲା । ନିର୍ଦ୍ଦିଷ୍ଟ ସମୟରେ ଶୁଭଦାନ ଉତ୍ସବ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ସମ୍ପାଦିତ ହୋଇଥିଲା । ଏହି ଅବସରରେ ପ୍ରଧାନମନ୍ତ୍ରୀ ସରଳ ହିନ୍ଦୀ ଭାଷାରେ ଏକ ସଂକ୍ଷିପ୍ତ ସ୍ମରଣୀୟ ଭାଷଣ ଦେଇ ରାଜ୍ୟ ସରକାରଙ୍କ ସାହସିକ ପଦକ୍ଷେପକୁ ପ୍ରସଂସା କରିବା ସଂଗେ ସଂଗେ ଭବିଷ୍ୟତରେ ଏହି ବନ୍ଦର ଜାତି ଓ ଦେଶର ଅଗ୍ରଗତିରେ ନିଶ୍ଚୟ ଏକ ମାଇଲ୍ ଖୁଣ୍ଟ ସଦୃଶ ପ୍ରତୀୟମାନ ହେବ ବୋଲି ଆଶା ପ୍ରକାଶ କରିଥିଲେ । ଭାଷଣରେ ଆଉ ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଥିଲା ତାହା ପାରାଦ୍ୱୀପ ବନ୍ଦରର ଆଦିଖସଡା ପ୍ରସ୍ତୁତ କରିଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ଆତ୍ମଜୀବନୀ 'ଜୀବନ ଓ ସ୍ମୃତି' ପୁସ୍ତକରେ ଏହିପରି ଲିପିବଦ୍ଧ ହୋଇଛି ।

**'ଭାରତବର୍ଷ ପରି ଏକ ବିରାଟ ଦେଶ ବ୍ୟତୀତ ପୃଥିବୀପୃଷ୍ଠସ୍ଥ ଦେଶମାନଙ୍କ ମଧ୍ୟରେ ଏପରି କୌଣସି ଗୋଟିଏ ଦେଶ ନାହିଁ ଯେଉଁ ଦେଶ କି ନାନାବିଧ ଖଣିଜ ସମ୍ପଦରେ ପରିପୂର୍ଣ୍ଣ ଆମ ଓଡିଶା ସହିତ ସମକକ୍ଷ ହୋଇପାରିବ । ତେଣୁ ମୁଁ କହିଲି ନାହିଁ 'ତମ ଦେଶ' ବୋଲି– ଆମ ଦେଶ କହିଲି । ଭାରତବର୍ଷର ସବୁ ରାଜ୍ୟ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏ ରାଜ୍ୟର ବିଭବ ଦ୍ୱାରା ଉପକୃତ ହେବେ । ବହିର୍ବାଣିଜ୍ୟ ମାଧ୍ୟମରେ ଆଶାନୁରୂପେ ନୁହେଁ – ଆଶାତୀତ ଭାବେ ବୈଦେଶିକ ମୁଦ୍ରା ହାସଲ କରିବାକୁ ସକ୍ଷମ ହେବେ। ଆଜି ସେହି ଦ୍ୱାର ଉନ୍ମୋଚନର ଯେଉଁ ବିରାଟ ନିର୍ମାଣମୂଳକ କାମ ଚାଲିବ, ତାହାର ଶୁଭାରମ୍ଭ ମୋ ଦ୍ୱାରା ଅନୁଷ୍ଠିତ ହେଉଛି ବୋଲି ମୁଁ ଭାରତର ପ୍ରଧାନମନ୍ତ୍ରୀ ଭାବେ କେବଳ ଧନ୍ୟ ନୁହେଁ, ଜବାହରଲାଲ ଭାବେ ମଧ୍ୟ ଧନ୍ୟ । କାରଣ ମନ୍ଦିର ମାଳିନୀ ଏ ଦେଶର ଧର୍ମ ସମ୍ପର୍କୀୟ ନୈତିକ ଚେତନା ସହିତ ସାମୁଦ୍ରିକ ଅକଳନ୍ତା ବିଭବ ସହ ଖଣିଜ ସମ୍ପଦର ପରିପୂର୍ଣ୍ଣତା ଜଣେ ସମୁଦ୍ର ସଂପର୍କରୁ ବଞ୍ଚିତ ଉତ୍ତରପ୍ରଦେଶ ଜନ୍ମା ଜବାହରଲାଲ ପକ୍ଷରେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ଅନିର୍ବଚନୀୟ ଅଟେ । ରାଜ୍ୟର ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ପରି ଜଣେ ଦୁଃସାହସିକ କର୍ମୀଙ୍କଠାରେ ମୁଁ ଜୀବନବ୍ୟାପି ଋଣୀ, ଯେହେତୁ ସେ ସୁମାତ୍ରା ଜାଭା ସମନ୍ୱିତ ଇଣ୍ଡୋନେସିଆ ପ୍ରଧାନମନ୍ତ୍ରୀଙ୍କୁ ବୈଦେଶିକ ଶକ୍ତି ହାତରୁ ଉଦ୍ଧାର କରି ଆଣିଥିଲେ ମୋ ପ୍ରେରଣାରେ । ଆଜି ତାଙ୍କ ରାଜ୍ୟରେ ଏକ ସୁବୃହତ୍ ପୋତାଶ୍ରୟ ନିର୍ମାଣର ଶୁଭଦେବା**

**ଭଳି ଶତଶତ ଅନୁଷ୍ଠାନରେ ପୌରହିତ୍ୟ କରି ମଧ ମୁଁ ସେ ଋଣରୁ ମୁକ୍ତ ହୋଇପାରିବି ନାହିଁ' ।**

ଏହି ମର୍ମରେ ମହୋତ୍କୃଷ୍ଟ ଭାଷଣଦ୍ୱାରା ବିରାଟ ଜନସମାଗମଙ୍କୁ ମନ୍ତ୍ରମୁଗ୍ଧ କଲାପରେ ପ୍ରଧାନମନ୍ତ୍ରୀ ଶିଳାନ୍ୟାସ କର୍ତ୍ତବ୍ୟ ଦିଗରେ ଅଗ୍ରସର ହେଲେ। ଶଙ୍ଖ, ହୁଳହୁଳି, ହରିବୋଲ ଜୟଧ୍ୱନୀ ମଧ୍ୟରେ ପ୍ରଧାନମନ୍ତ୍ରୀ ଯୁକ୍ତହସ୍ତରେ ଲୋକମାନଙ୍କୁ ପ୍ରଣାମ ଜଣାଇ ବହୁ ପ୍ରତୀକ୍ଷିତ ପାରାଦ୍ୱୀପ ବନ୍ଦର ଭିତ୍ତିପ୍ରସ୍ତର ଫଳକ ଉନ୍ମୋଚିତ କଲେ । ପାଖରେ ଥିଲେ ଓଡିଶାର ରାଜ୍ୟପାଳ ଶ୍ରୀ ୟେଶ୍ୱନ ନାରାୟଣ ସୁଖଥାନ୍କର, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓ ବନ୍ଦର ବିଭାଗ ମନ୍ତ୍ରୀ ଶ୍ରୀ ନୀଳମଣି ରାଉତରାୟ । ସାଧାରଣତଃ କୌଣସି ପ୍ରକଳ୍ପର ଶୁଭଦେବାବେଳେ ଯେପରି ପାରମ୍ପରିକ ରୀତିରେ ମାର୍ବଲ ପ୍ରସ୍ତରରେ ଲେଖାଯାଏ, ସେପରି ରୀତିରେ ପାରାଦ୍ୱୀପ ବନ୍ଦରର ଭିତ୍ତି ସ୍ଥାପନ ହୋଇ ନଥିଲା । ପ୍ରସ୍ତର ଫଳକରେ ପଣ୍ଡିତ ନେହେରୁଙ୍କ ଦସ୍ତଖତ ସହ ଲେଖାଥିଲା ଏକ ହୃଦୟସ୍ପର୍ଶୀ ବାଣୀ ।

'ଏହାହିଁ ମହାଜାତିର ନିର୍ଦ୍ଦେଶ, ପୁଣି ଏକ ବିରାଟ ଅଭିଯାନ ପଥରେ ମୋର ଏ ଆହ୍ୱାନ' ।

ପାରାଦ୍ୱୀପ ଇତିହାସର ଅଲିଭା ପ୍ରତିଲିପି, ଏହି ଫଳକଟି ଅଦ୍ୟାପି ନେହେରୁ ନିବାସ ସାମ୍ନାରେ ଶୋଭା ପାଉଛି ।

ସେତେବେଳେ ପ୍ରଚଳିତ କାର୍ଯ୍ୟପ୍ରଣାଳୀରେ ସୀମିତ ବିଧି ବ୍ୟବସ୍ଥା ଯୋଗୁଁ ପ୍ରକଳ୍ପଟି ବ୍ୟୟବହୁଳ ଓ ସମୟ ସାପେକ୍ଷ ହୋଇଥିଲା । ଏଣୁ ଏହାକୁ ରାଜ୍ୟ ଭିତରୁ ଓ ବାହାରୁ ବହୁ ବିରୋଧ କରାଯାଇଥିଲା । ମାତ୍ର ଟାଇମ୍ସ ଅଫ୍ ଇଣ୍ଡିଆରେ ଏହାର ମୁଖ୍ୟ ସମ୍ପାଦକ ନିଷ୍ଠାବାନ, ଦେଶପ୍ରେମୀ ସାମ୍ବାଦିକ ବି.ଜି. ଭର୍ଗିଜ ପାରାଦ୍ୱୀପ ବନ୍ଦରକୁ ଓଡିଶା ବିକାଶର ଗହଣା ଭିତରେ ନିମକାଠି ସଦୃଶ ଅଭିହିତ କରି ୧୯୬୫ ମସିହା ଜୁନ୍ ୯ ତାରିଖରେ ଏକ ଚମତ୍କାର ସମ୍ପାଦକୀୟ ଲେଖିଥିଲେ । ସେ ଲେଖିଥିବା ସମ୍ପାଦକୀୟର ମୁଖ୍ୟଅଂଶ ଓଡିଆରେ ଏହିପରି ଥିଲା । 'ପାରାଦ୍ୱୀପ ବହୁ ବାଦ ବିବାଦ ଓ ସମାଲୋଚନାର ଆହ୍ୱାନକୁ ମୁକାବିଲା କରି ଆତ୍ମପ୍ରକାଶ କରିଛି । କିନ୍ତୁ ଏହା ନିଃସନ୍ଦେହ ଯେ, ଆସନ୍ତା ୧୦ ବର୍ଷ ମଧ୍ୟରେ ପାରାଦ୍ୱୀପ ଦେଶର ତୃତୀୟ ଯୋଜନାର ଅନ୍ୟତମ ମର୍ଯ୍ୟାଦାପୂର୍ଣ୍ଣ କୀର୍ତ୍ତିଭାବେ ଉଭାହେବ । ବିକାଶ ପ୍ରକ୍ରିୟାରେ ମନ୍ଥର ଗତି ସୃଷ୍ଟି କରୁଥିବା ପୁରୁଣା ଢାଞ୍ଚାଗତ ପଦ୍ଧତିରେ ପରିବର୍ତ୍ତନ ଆଣି ଏକ ଫଳପ୍ରଦ ପ୍ରକଳ୍ପ ଭାବେ ଦେଶ ଓ ଜାତି ପାଇଁ ଉଦାହରଣୀୟ ହୋଇ ରହିବ । ଏହିପରି ଏକ ଜାତୀୟ ପ୍ରଗତିଶୀଳ ପ୍ରକଳ୍ପରେ ସୃଷ୍ଟି ହୋଇଥିବା ପ୍ରଶାସନିକ ଅଂସଗତି ଓ ଦୁର୍ନାମକାରୀ ଗୁଜବ ଗ୍ରହଣୀୟ ହୋଇ ନପାରେ' ।

ଇତିମଧ୍ୟରେ ପାରାଦ୍ୱୀପ ବନ୍ଦରକୁ ୫୮ ବର୍ଷ ଛୁଇଁଛି । ୧୯୬୬-୬୭ ବର୍ଷରେ ମାତ୍ର ୬୭,୦୮୦ ମେଟ୍ରିକ୍ଟନ ପଣ୍ୟ କାରବାର ଆରମ୍ଭ କରିଥିବା ବେଳେ ୨୦୧୮-୧୯ ଆର୍ଥିକ ବର୍ଷରେ ୧୦୯.୨୭ ନିୟୁତ ମେଟ୍ରିକ୍ଟନ ପଣ୍ୟ କାରବାର କରି ଦେଶର ଦ୍ୱିତୀୟ ବୃହତ୍ତମ ବନ୍ଦର ମାନ୍ୟତା ହାସଲ କରିଛି । ଏଥି ସହ ୨୪ ଘଣ୍ଟାରେ ୩୦ଟି ଜାହାଜ ପରିଚାଳନା କରି ପୁଣି ଏକ ସର୍ବକାଳୀନ ରେକର୍ଡ ଅର୍ଜନ କରିଛି । ଅପରପକ୍ଷେ ହେନ୍ତାଳ ଜଙ୍ଗଲ ପରିପୂର୍ଣ୍ଣ ପାରାଦ୍ୱୀପ ଶିଳ୍ପ ସମୃଦ୍ଧ ସହରରେ ପରିଣତ ହୋଇଛି । ରାସ୍ତାଘାଟରୁ ଆରମ୍ଭକରି ଗମନାଗମନ ବ୍ୟବସ୍ଥା, ସ୍ୱାସ୍ଥ୍ୟରୁ ଆରମ୍ଭ କରି ଶିକ୍ଷା ବ୍ୟବସ୍ଥା ସହିତ ଜୀବନଶୈଳୀ ଇତ୍ୟାଦି ଭିତ୍ତିଭୂମିରେ ବ୍ୟାପକ ପରିବର୍ତ୍ତନ ହୋଇଛି । ଭବିଷ୍ୟତରେ ପାରାଦ୍ୱୀପକୁ ସ୍ମାର୍ଟ ଶିଳ୍ପ ବନ୍ଦର ସହରରେ ପରିଣତ କରାଯାଇ ସାଗରମାଳା ପରିଯୋଜନାରେ ଯୋଡାଯିବାର ପ୍ରସ୍ତାବ ରହିଛି । ଏହା କାର୍ଯ୍ୟକାରୀ ହେଲେ ଏଠାରେ ଅଧିକ ସଂଖ୍ୟକ ପଣ୍ୟାଗାର ପ୍ରତିଷ୍ଠା, ମାରିଟାଇମ ଜୋନ, ପର୍ଯ୍ୟଟନର ବିକାଶ, ଉପକୂଳ ସୁରକ୍ଷା ସହିତ ସାମୁଦ୍ରିକ ଉତ୍ପାଦନ ବିପ୍ଳଣନ କ୍ଷେତ୍ରରେ ଅଭିବୃଦ୍ଧି ଘଟି ଦେଶ ଓ ରାଜ୍ୟର ଅର୍ଥନୀତିକୁ ସୁଦୃଢ଼ କରିବ ।

ଅବସରପ୍ରାପ୍ତ ଯୋଗାଯୋଗ ଅଧିକାରୀ
ପାରାଦ୍ୱୀପ ବନ୍ଦର

# ଓଡ଼ିଶାର ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ ମୌଲବୀ ଲତିଫୁର ରହେମାନ

ସତ୍ୟବାଦୀ ବଳିଆରସିଂହ

ବିପୁଳାଚ ପୃଥୀ ଅନନ୍ତ ସମୟ । ସମୟର ପ୍ରବାହମାନରେ ଅନେକ ଘଟଣା ଘଟି ଘଟି ଯାଉଛି । ସ୍ମୃତି ପଟଳରେ କିଛି ଅଭୁଲା ହୋଇ ରହିଯାଇଛି ତ କେତେକ ଲିଭି ଲିଭି ଗଲାଣି । ଏହାତ ସ୍ୱାଭାବିକ ପ୍ରକ୍ରିୟା । ପ୍ରତ୍ୟେକ ମନୁଷ୍ୟ ଜୀବନରେ ଏଭଳି ଘଟିଥାଏ । ମୋର ପ୍ରସଙ୍ଗଟି ହେଲା ଓଡ଼ିଶାର ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ ମୌଲବୀ ଲତିଫୁର ରହେମାନ । ଏହି ନାଁ ଅନେକ ଶୁଣି ନଥିବେ ବା ଜାଣି ନଥିବେ । କେହି କେହି ଓଡ଼ିଶାର ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ କହିଲେ ରଣପୁର ରାଜମାତା ବସନ୍ତ ମଂଜରୀ ଦେବୀଙ୍କ ନାଁ କହିଥାନ୍ତି । ଏପରିକି ଓଡ଼ିଶାର ପ୍ରଥମ ମହିଳା ମନ୍ତ୍ରୀଭାବେ ବସନ୍ତ ମଂଜରୀ ଦେବୀଙ୍କୁ ଚିହ୍ନିତ କରିଥାନ୍ତି । ଏ ସମସ୍ତ ପ୍ରଶ୍ନର ଉତ୍ତର ଠିକ୍ ହେଲେ ହେଁ ସେଥିରେ ସାମାନ୍ୟ ପ୍ରଭେଦ ରହିଛି । ମୌଲବୀ ଲତିଫୁର ରହେମାନ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଦ୍ୱାରା ଗଠିତ ବ୍ରିଟିଶ ଶାସିତ ଓଡ଼ିଶା ମନ୍ତ୍ରିମଣ୍ଡଳରେ ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ । ସେ ମଧ୍ୟ ସହରାଞ୍ଚଳ ଓ ପୂର୍ତ୍ତ ବିଭାଗ ଦାୟିତ୍ୱରେ ଥିଲେ । କିନ୍ତୁ ବସନ୍ତ ମଂଜରୀ ଦେବୀ ସ୍ୱାଧୀନତା ପରେ ଓଡ଼ିଶାର ପ୍ରଥମ ମନ୍ତ୍ରିମଣ୍ଡଳରେ ସ୍ୱାସ୍ଥ୍ୟ ବିଭାଗ ଦାୟିତ୍ୱ ପାଇଥିଲେ । ପ୍ରଭେଦ ଏହି ଯେ ଜଣେ ସ୍ୱାଧୀନତା ପୂର୍ବର ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ ଓ ଅନ୍ୟ ଜଣେ ସ୍ୱାଧୀନତା ପରେ ଗଠିତ ମନ୍ତ୍ରିମଣ୍ଡଳରେ ପ୍ରଥମ ସ୍ୱାସ୍ଥ୍ୟମନ୍ତ୍ରୀ । ବସନ୍ତ ମଂଜରୀ ଦେବୀ ମଧ୍ୟ ଓଡ଼ିଶାର ପ୍ରଥମ ମହିଳା ମନ୍ତ୍ରୀ । ମୋର ସୌଭାଗ୍ୟ ଯେ ମୁଁ ଉଭୟ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛି । ମୋ ଜନ୍ମସ୍ଥାନ ରଣପୁର ନିର୍ବାଚନ ମଣ୍ଡଳୀ ମଧ୍ୟରେ ଥିବାରୁ ବସନ୍ତ ମଂଜରୀଙ୍କ ସହ କଥା ହେବାର ସୁଯୋଗ ପାଇଛି । ଠିକ୍ ସେହିପରି ମୌଲବୀ ଲତିଫୁର ରହେମାନ୍ ପୁରୀ ଏସ.ସି.ଏସ୍. କଲେଜ ପଶ୍ଚିମ ଦ୍ୱାର ନିକଟରେ ଥିବା ତାଙ୍କ ଘରେ ଥିବାବେଳେ ଅନେକବାର ତାଙ୍କ ସହ ଆଲୋଚନା କରିବାର ସୁଯୋଗ ପାଇଛି ।

ମୌଲବୀ ଲତିଫୁରଙ୍କ ଜନ୍ମ ଖୋର୍ଦ୍ଧା ନିକଟବର୍ତ୍ତୀ ଶରଧାପୁର ଗ୍ରାମରେ । ୧୯୦୦ ମସିହା ଜୁଲାଇ ୨୨ ତାରିଖ ଦିନ ପିତା ମହମ୍ମଦ ମଜହର ଓ ମାତା ସନ୍ତିରନ୍ ଦିଦିଙ୍କ କୋଳମଣ୍ଡନ କରିଥିଲେ । ସେ ଗ୍ରାମ ବିଦ୍ୟାଳୟରୁ ନି.ପ୍ରା. ଖୋର୍ଦ୍ଧା ପ୍ରାକ୍ଟିସିଂ ବିଦ୍ୟାଳୟରୁ ଉ.ପ୍ରା. ଏବଂ ଖୋର୍ଦ୍ଧା ହାଇ ଇଂଲିସ ସ୍କୁଲରୁ (ପରେ ବି.ଜେ.ବି ହାଇସ୍କୁଲ) ୧୯୧୭ ମସିହାରେ ଏଣ୍ଟ୍ରାନ୍ସ ମାଟ୍ରିକୁଲେସନ ପ୍ରଥମ ଶ୍ରେଣୀରେ ପାଶ୍ କଲେ । ତାଙ୍କର ସହପାଠୀ ଥିଲେ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ଓ ପ୍ରଖ୍ୟାତ ଶିକ୍ଷାବିତ୍ ଦିବ୍ୟସିଂହ ପଟ୍ଟନାୟକ । ଲତିଫୁର ଜଣେ ମେଧାବୀ ଛାତ୍ରଥିଲେ । ମାଟ୍ରିକ୍ ପାଶ୍ ପରେ ସେ କଟକ ରେଭେନ୍ସା କଲେଜରୁ ଗ୍ରାଜୁଏସନ ଏବଂ କଲିକତା ବିଶ୍ୱବିଦ୍ୟାଳୟରୁ ଏଲ.ଏଲ.ବି. ପାଶ୍ କଲେ । ଶିକ୍ଷା ସମାପ୍ତ ପରେ ମାତ୍ର ୨୪ ବର୍ଷ ବୟସରେ କଟକରେ ଓକିଲାତି ପେଶାରେ ନିୟୋଜିତ ରହିଲେ । ସେ ଓଡ଼ିଶା ହାଇକୋର୍ଟର ପ୍ରଥମ ଓଡ଼ିଆ ମୁଖ୍ୟ ବିଚାରପତି ବୀରକିଶୋର ରାୟଙ୍କର ଜୁନିଅର ଓକିଲ ଥିଲେ । ସେ ୩୬ ବର୍ଷ ବୟସରେ ଓଡ଼ିଶା ରାଜ୍ୟ ଗଠନର ଅନ୍ୟତମ ନିର୍ମାତା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ

ଦେବଙ୍କର ଘନିଷ୍ଠ ସମ୍ପର୍କରେ ଆସି ତାଙ୍କ ନ୍ୟାସନାଲ ପାର୍ଟିରେ ଯୋଗଦେଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେଥିପାଇଁ ସ୍ୱାଧୀନତା ପୂର୍ବରୁ ସେ ଦୁଇଥର ବିଧାୟକ ହୋଇପାରିଥିଲେ ।

୧୯୩୬ ଏପ୍ରିଲ ୧ ତାରିଖରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ହେଲା । ବର୍ତ୍ତମାନର ଓଡ଼ିଶା ରାଜ୍ୟ ବୋଲି ଆମେ ଯାହା ଦେଖୁଛେ ତାହା ତଦାନୀନ୍ତନ ଇଂରେଜ ଶାସନ କାଳରେ ୧୯୩୫ ମସିହା ଭାରତୀୟ ଶାସନ ଖସଡ଼ାର ୨୮୯ ଧାରା ଅନୁସାରେ ଭାରତ ସରକାରଙ୍କ ୧୯୩୬ ମସିହା ଓଡ଼ିଶା ଗଠନ ଆଦେଶର ଚତୁର୍ଥ ପରିଚ୍ଛଦର ପ୍ରଥମ ଅନୁଚ୍ଛେଦରେ ଘୋଷିତ ହେଲା । ୧୯୩୫ ଶାସନ ଖସଡ଼ା ଅନୁଯାୟୀ କିଛି ସୀମିତ ଅଧିକାର ଓ ନିର୍ଦ୍ଦିଷ୍ଟ ଲୋକଙ୍କର ଭୋଟ ଦେବାର କ୍ଷମତା ଥିବାରୁ ୧୯୩୭ ମସିହା ଜାନୁଆରୀ ୧୮ରୁ ୨୩ ତାରିଖ ପର୍ଯ୍ୟନ୍ତ ହୋଇଥିବା ନିର୍ବାଚନରେ ନିର୍ବାଚିତ ଓ ମନୋନୀତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିବା ବିଧାନସଭାର ପ୍ରଥମ ବୈଠକ ୧୯୩୭ ମସିହା ଜୁଲାଇ ୨୮ ତାରିଖରେ ଅନୁଷ୍ଠିତ ହୋଇଥିଲା । ଚାରିଜଣ ମନୋନୀତ ସଭ୍ୟଙ୍କୁ ମିଶାଇ ଏହି ବିଧାନସଭାର ମୋଟ୍ ସଭ୍ୟ ସଂଖ୍ୟା ଷାଠିଏ ଥିଲା । କଂଗ୍ରେସ ଦଳ ନିର୍ବାଚନରେ ୩୬ଟି, ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଜାତୀୟ ଦଳ ୧୩ ଓ ଓଡ଼ିଶା ମିଳିତ ଦଳ ୬ଗୋଟି ସ୍ଥାନରୁ ନିର୍ବାଚିତ ହୋଇଥିଲେ । କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠ ହୋଇଥିବାରୁ ଶାସନ କ୍ଷମତାକୁ ଆସିବା କଥା । କିନ୍ତୁ ଦଳର ଉଚ୍ଚ କର୍ତ୍ତୃପକ୍ଷର ନିର୍ଦ୍ଦେଶ ଥିଲା ପ୍ରଥମ ଲାଟ୍‌ସାହେବ (ରାଜ୍ୟପାଳ) ତାଙ୍କ ସ୍ୱତନ୍ତ୍ର କ୍ଷମତା ବଳରେ ଶାସନ କାର୍ଯ୍ୟରେ ହସ୍ତକ୍ଷେପ କରିବେ ନାହିଁ । ଏ ନେଇ ପ୍ରତିଶ୍ରୁତି ନ ମିଳିବାରୁ କଂଗ୍ରେସ ଦଳ ସରକାର ଗଢ଼ିଲା ନାହିଁ । ଏଣୁ ପାରଳା ମହାରାଜାଙ୍କ ଜାତୀୟ ଦଳ ସରକାର ଗଢ଼ିଲା । ଏହି ଦଳର ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଓ ଅନ୍ୟ ଦୁଇ କ୍ୟାବିନେଟ୍ ମନ୍ତ୍ରୀ ହେଲେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ମୌଲବୀ ଲତିଫୁର ରହେମାନ୍ । ସେତେବେଳେ ଓଡ଼ିଶାର ପ୍ରଥମ ଲାଟ୍‌ସାହେବ ବା ରାଜ୍ୟପାଳ ଥିଲେ ସାର୍ ଜନ୍ ଅଷ୍ଟିନ୍ ହବାକ୍ । ଏହି ସରକାର ଅଧିକ କାଳ ଶାସନରେ ରହିପାରିନଥିଲା । କାରଣ ତତ୍କାଳୀନ ବଡ଼ଲାଟ୍ ଓ ଲାଟମାନେ ସେମାନଙ୍କର ସ୍ୱତନ୍ତ୍ର କ୍ଷମତା ବଳରେ ଲୋକ ପ୍ରତିନିଧି ଶାସନରେ ହସ୍ତକ୍ଷେପ ନ କରିବାକୁ ପ୍ରତିଶ୍ରୁତି ଦେବାରୁ, କଂଗ୍ରେସ ଦଳର ଉଚ୍ଚ କର୍ତ୍ତୃପକ୍ଷ ବିଭିନ୍ନ ରାଜ୍ୟରେ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ଶାସନ ଦାୟିତ୍ୱ ଗ୍ରହଣ କରିବାକୁ ଆଗଭର ହେଲେ । ଫଳରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଗଠିତ ପ୍ରଥମ ମନ୍ତ୍ରିମଣ୍ଡଳର ପତନ ଘଟିଲା ଓ ପରେ ପରେ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

ମୌଲବୀ ଲତିଫୁର ରହେମାନ ପ୍ରଥମ ମନ୍ତ୍ରିମଣ୍ଡଳରେ ସ୍ୱାସ୍ଥ୍ୟ, ପୌରାଞ୍ଚଳ ବିକାଶ ଓ ପୂର୍ତ୍ତମନ୍ତ୍ରୀ ଥିଲେ । ସେ ଥିଲେ ଜଣେ ସାଧୁ, ସଚ୍ଚରିତ୍ର ବ୍ୟକ୍ତି । ତାଙ୍କ ସମ୍ପର୍କରେ ତାଙ୍କ ନିଜ ଗ୍ରାମ ଶରଧାପୁରର ଲକ୍ଷ୍ମୀଧର ବଡ଼ଜେନା ଖୋରଧା ଐତିହାସିକ ସମାଜର ମୁଖପତ୍ର ଅନ୍ୱେଷାରେ ବିଶଦ୍ ବର୍ଣ୍ଣନା କରିଛନ୍ତି । କିନ୍ତୁ ମୁଁ ଏଠାରେ ତାଙ୍କର ଭାବମୂର୍ତ୍ତି କିଭଳି ସ୍ୱଚ୍ଛ ଓ ମଣିଷପଣିଆର ନିଦର୍ଶନ ପ୍ରକଟିତ ହୋଇଥିଲା ତାଙ୍କ ସହ ମୋର ପ୍ରତ୍ୟକ୍ଷ ଅନୁଭୂତିରୁ ବର୍ଣ୍ଣନା କରୁଛି । ୧୯୬୭ ମସିହାରେ ଗଡ଼ବାଣୀକିଲ ହାଇସ୍କୁଲରୁ ମାଟ୍ରିକ ପାଶ୍‌କରି ଦୁଇ ସହପାଠୀ ଡାକ୍ତର ଲିଆକତ୍ ଅଲ୍ଲୀ ଖାଁ ଓ ବାଇଧର ପ୍ରଧାନଙ୍କ ସହ ମୋର ପୁରୀ ଏସ.ସି.ଏସ୍. କଲେଜରେ ନାମ ଲେଖା ହୋଇଥିଲା । ବାଇଧର ପ୍ରଧାନ ହେଉଛନ୍ତି ଯୁକ୍ତ ୨ ଉଚ୍ଚତର ଶିକ୍ଷା ପରିଷଦର ଅବସରପ୍ରାପ୍ତ ସଂପାଦକ ଓ ଡା. ଲିଆକତ୍ ଅଲ୍ଲୀ ଖାଁ ହେଉଛନ୍ତି ନୟାଗଡ଼ର ଖ୍ୟାତନାମା ହୋମିଓ ଚିକିତ୍ସକ । ଡା. ଲିଆକତ୍ ଅଲ୍ଲୀ କଲେଜ ପଢ଼ିବା ସମୟରେ ତାଙ୍କର ସମ୍ପର୍କୀୟ ମାମୁ ଲତିଫୁର ରହେମାନଙ୍କ ଘରେ ରହୁଥିଲେ । ଲତିଫୁର ରହେମାନଙ୍କ ବଡ଼ ଭଉଣୀ ବିବାହ କରିଥିଲେ ଆମ ଗାଁ ଗଡ଼ବାଣୀକିଲରେ । ଏଣୁ ସେ ଆମ ଗ୍ରାମର ବହୁ ଲୋକଙ୍କୁ ଜାଣିଥିଲେ । ମୁଁ କଲେଜ ପାଠ ଶେଷକରି ଅଧିକାଂଶ ସମୟରେ ମୌଲବୀ ଲତିଫୁର ରହେମାନଙ୍କ ଘରକୁ ଯାଏ, ସେଠାରେ ରହୁଥିବା ମୋର

ସହପାଠୀ ଲିଆକତ୍ ଅଲ୍ଲୀ ବାବୁଙ୍କୁ ସାକ୍ଷାତ୍ କରେ । ଅନେକ ସମୟରେ ଲତିଫୁର ରହେମାନ ମହୋଦୟଙ୍କ ସହ ସାକ୍ଷାତ ଓ ଆଲୋଚନା ହୁଏ । ଆମ ଗାଁର ବହୁ ଲୋକଙ୍କୁ ଜାଣିଥିବାରୁ ସେମାନଙ୍କ ସମ୍ବନ୍ଧରେ ପଚାରି ବୁଝନ୍ତି ।

ମୋର ସ୍ପଷ୍ଟଭାବେ ମନେ ଅଛି ୪/୫ ଜଣ ମୁସଲମାନ ବାଳକ ସେମାନଙ୍କର ଆର୍ଥିକ ସ୍ଥିତି ଦୁର୍ବଳ ଥିବାରୁ ସେମାନଙ୍କ ମାସିକ ମେସ୍ ଖର୍ଚ୍ଚ ସେ ଦେଉଥିଲେ । ଏହା ବ୍ୟତୀତ ଗରିବ ମୁସଲମାନ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରୁଥିଲେ । କଥା ପ୍ରସଙ୍ଗରେ ସେ କହିଥିଲେ, ''ଆମ ଧର୍ମରେ ନିଜ ଅର୍ଜିତ ଧନରୁ କିଛି ଅଂଶ ଗରିବମାନଙ୍କୁ ପ୍ରଦାନ କରିବାର ନିୟମ ରହିଛି । ମୁଁ ସେ ନିୟମ ପାଳନ କରୁଛି । କିନ୍ତୁ ଏ ସାହାଯ୍ୟ ଅପାତ୍ରରେ ଯେଭଳି ନ ଯାଏ ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।'' ଏହି ସାହାଯ୍ୟରେ ଜଣେ ଯଦି କୁପଥଗାମୀ ହୁଏ ତେବେ ସାହାଯ୍ୟକାରୀ ବ୍ୟକ୍ତି ପୁଣ୍ୟ ପରିବର୍ତ୍ତେ ପାପ ଅର୍ଜନ କରେ ବୋଲି ତାଙ୍କର ମତ ଥିଲା । ସେ କେବଳ ମୁସଲମାନ ନୁହେଁ ହିନ୍ଦୁ ଲୋକମାନଙ୍କୁ ମଧ୍ୟ ସାହାଯ୍ୟ କରୁଥିଲେ । ଲତିଫୁର ରହେମାନ ଉର୍ଦ୍ଧ୍ୱକାଳ ପୁରୀ ସହରରେ ଅବସ୍ଥାନ କରିଥିଲେ । ଏହି ସମୟ ମଧ୍ୟରେ ସେ ସହରର ସବୁବର୍ଗର ଲୋକମାନଙ୍କ ସହିତ ଚଳି ବିଶେଷ ଜନପ୍ରିୟତା ଅର୍ଜନ କରିଥିଲେ । ପୁରୀକୁ ନିଜ କର୍ମକ୍ଷେତ୍ର ଭାବରେ ଆଦରି ନେଇ ସେଠି ଓକିଲାତି ପେଶା ଓ ରାଜନୀତି କ୍ଷେତ୍ରରେ ନିଜକୁ ସାମିଲ କରିଥିଲେ । ଜଣେ ଉଦାରବାଦୀ କର୍ତ୍ତବ୍ୟ ପରାୟଣ ବ୍ୟକ୍ତି ରୂପେ ପୁରୀ ସହରର ବାସିନ୍ଦା ଭାବରେ ସାହି ମୁରବୀମାନଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିଥିଲେ ।

ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ବର୍ଷ ତମାମ ବହୁ ସଂଖ୍ୟାରେ ତୀର୍ଥଯାତ୍ରୀ ପ୍ରସିଦ୍ଧ ପୁରୀ ଧାମକୁ ଆସିଥାନ୍ତି । ସେଭଳି ଶହ ଶହ ବର୍ଷ ଧରି ନାଗା ସନ୍ନ୍ୟାସୀମାନେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଆସିଥାନ୍ତି । ୧୯୫୪ ମସିହା ନବକଳେବର ରଥ ଉପରେ ଦର୍ଶନ କରିବା ପାଇଁ ସେବକମାନଙ୍କର ଅନୁମତି ଲୋଡ଼ିଲେ, ମାତ୍ର ନାଗା ସାଧୁମାନଙ୍କୁ ଅନୁମତି ମିଳିଲା ନାହିଁ । ଫଳରେ ଗଣ୍ଡଗୋଳର ସୂତ୍ରପାତ ହେଲା । ଏହି ଗଣ୍ଡଗୋଳରେ ବହୁ ସଂଖ୍ୟାରେ ନାଗାସାଧୁ କ୍ଷତବିକ୍ଷତ ହୋଇ ଚିକିତ୍ସାପାଇଁ ଡ଼ାକ୍ତରଖାନାରେ ଭର୍ତ୍ତି ହେଲେ । ତହିଁରୁ ଅନେକ ଆହତ ହୋଇ ଜେଲ୍ ଗଲେ । ସେଥିପାଇଁ ଶ୍ରୀଜଗନ୍ନାଥ ସଂସ୍କୃତିର ଧାର୍ମିକ ଇତିହାସରେ ଏପରି ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି ହୋଇଥିଲା । ଏହି ଦୁଃଖଦ ଘଟଣାରେ ନାଗାସାଧୁମାନଙ୍କ ପକ୍ଷରୁ ଆଡଭୋକେଟ୍ ଲତିଫୁର ରହେମାନ ମୋକଦ୍ଦମା ଲଢ଼ି ଏକ ବିବାଦୀୟ ବିଷୟର ଅନ୍ତଘଟାଇ ଆଇନର ଲକ୍ଷ୍ମଣରେଖା ସମସ୍ତଙ୍କ ପାଇଁ ସମାନ ବୋଲି ସ୍ଥିର କରାଇ ଦେଇଥିଲେ ।

ଲତିଫୁର ରହେମାନ ପରବର୍ତ୍ତୀ ରାଜନୈତିକ ଜୀବନରେ ସମାଜବାଦ ତଥା ବାମପନ୍ଥୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇ ସାଧାରଣ ଜନତାଙ୍କ ପାଇଁ କାର୍ଯ୍ୟ କରିଥିଲେ । ନିଜ ଗ୍ରାମ ଶରଧାପୁରରେ ଥିବା ଶ୍ରୀବାଲୁଙ୍କେଶ୍ୱର ଦେବଙ୍କ ପୀଠରେ ପ୍ରତ୍ୟେକ ବର୍ଷ ୧୪ ଦୋଳ ମେଳଣ ଅନୁଷ୍ଠିତ ହୁଏ । ଏହି ଉତ୍ସବ ପାଇଁ ଗ୍ରାମର ହିନ୍ଦୁ ମୁସଲମାନ ଓ ଆଦିବାସୀମାନେ ଚାନ୍ଦା ଭେଦା ଦେଇ ସହଯୋଗ କରିଥାନ୍ତି, ଯାହା ମାଣିକାଗୋଡ଼ା ଓ ଗଡ଼ବାଣୀକିଲ ଭଳି ହିନ୍ଦୁ ମୁସଲମାନଙ୍କ ସଂପ୍ରୀତିର ଏକ ଅନନ୍ୟ ପରମ୍ପରା । ଲତିଫୁର ରହେମାନ ପ୍ରତ୍ୟେକ ବର୍ଷ ଏହି ୧୪ ଦୋଳ ମେଳଣ ପାଇଁ ଚାନ୍ଦା ଦେଇ ଉତ୍ସାହିତ କରି ଆସୁଥିଲେ । ଏହି ମେଳଣ ଯାତ୍ରାରେ ଗ୍ରାମର ମୁସଲମାନମାନେ ଦର୍ଶକ ଭାବେ ଯୋଗଦେଇ ଉତ୍ସାହିତ କରିଥାନ୍ତି ।

ଓଡ଼ିଶାର ପ୍ରଥମ ସ୍ୱାସ୍ଥ୍ୟ, ପୂର୍ତ୍ତ ଓ ପୌରାଞ୍ଚଳ ବିକାଶ ମନ୍ତ୍ରୀ ମୌଲବୀ ଲତିଫୁର ରହେମାନଙ୍କର ପୁରୀ କଲେଜ ନିକଟସ୍ଥ ବାସଭବନରେ ତା.୧୦.୦୭.୧୯୮୪ରେ ୮୪ ବର୍ଷ ବୟସରେ ପରଲୋକ ହୋଇଥିଲା । ଏହି ବିୟୋଗ ଜନିତ ସମ୍ବାଦ ସମାଜ, ପ୍ରଜାତନ୍ତ୍ର ପ୍ରଭୃତି ଦୈନିକ ଖବର କାଗଜରେ ଜୁଲାଇ ୧୧ ତାରିଖ ରବିବାର ଦିନ ପ୍ରଥମ ପୃଷ୍ଠାରେ ବଡ଼ ବଡ଼ ଅକ୍ଷରରେ ସ୍ଥାନ ପାଇଥିଲା । ପୁରୀର ପ୍ରଜା ସୋସିଆଲିଷ୍ଟ ପାର୍ଟି ନେତା ପୂର୍ବତନ

ଉପବାଚସ୍ପତି ହରିହର ବାହିନୀ ପତିଙ୍କ ନେତୃତ୍ୱରେ ଏକ ଶୋକସଭା କରାଯାଇ ଓଡ଼ିଶାର ବହୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଦ୍ୱାରା ତାଙ୍କର ବହୁବିଧ ଗୁଣାବଳୀ ବର୍ଣ୍ଣନା କରାଯାଇଥିଲା । ସେ ପୃଥିବୀ ବକ୍ଷରୁ ଚାଲିଯାଇଥିଲେ ମଧ୍ୟ ତାଙ୍କର ସ୍ମୃତି ଚିରକାଳ ଉଜ୍ଜୀବିତ ହୋଇରହିଛି । ସେଥିପାଇଁ କୁହାଯାଇଛି "Born never to be born again, Die never to die again". ମୃତ୍ୟୁ ବିହୀନ ମୃତ୍ୟୁ ଆବଶ୍ୟକ । ଯୋଗଜନ୍ମା ଲତିଫୁର ରହେମାନ ସଦାସର୍ବଦା ଜନସାଧାରଣଙ୍କ ସ୍ମୃତି ପଟଳରେ ରହିଥାନ୍ତି ।

ବିଶ୍ୱାତ୍ମା, ଏମ୍–୨୩, ଖୋର୍ଦ୍ଧା ବିଡିଏ କଲୋନୀ
ବକ୍ସି ଜଗବଂଧୁ ନଗର, ଖୋର୍ଦ୍ଧା
ପିନ୍–୭୫୨୦୫୫

# ଶ୍ରଦ୍ଧାଞ୍ଜଳି ଦେବା ଏ ପୁଣ୍ୟ ତିଥିରେ

ଇଂ. ରଘୁନାଥ ପାତ୍ର

ସାଧାରଣତନ୍ତ୍ର ପବିତ୍ର ଦିବସେ
ଶୁଭେଚ୍ଛା ଜଣାଏ ସଭିଙ୍କୁ କବି
ଏ ଜାତିର ପିତା ମହାତ୍ମା ଗାନ୍ଧୀ ଓ
ଦେଶଭକ୍ତି ବରପୁତ୍ରଙ୍କୁ ଭାବି ।
ଜୟୀ ରାଜଗୁରୁ ବକ୍ସି ଜଗବନ୍ଧୁ
ବାଜି ରାଉତ ଓ ସୁରେନ୍ଦ୍ର ସାଏ
ଲକ୍ଷ୍ମଣ ନାଏକ ଦେଶଭକ୍ତି କଥା
ବଳିଦାନ କଥା ଏ ଦେଶ ଗାଏ ।
ନେହେରୁ ନେତାଜୀ ଆଜାଦ୍ ପ୍ରସାଦ
ଗୋପବନ୍ଧୁ ଦାସ ମଧୁସୂଦନ
ଆମ୍ବେଦକରଜୀ ଲାଲାଜୀ ତିଳକଜୀ
ମହତାବ ବିଜୁବାବୁ ବରେଣ୍ୟ ।
ମା'ରମାଦେବୀ ମାଳତୀ ଚୌଧୁରୀ
ତ୍ୟାଗ ଦେଶଭକ୍ତି ପ୍ରେରଣା ଦାତ୍ରୀ
ସୁରକ୍ଷା ଏକତା ପାଇଁ ବଳିଦାନ
ଦେଇଥିବା ଯେତେ ଶହୀଦ ପ୍ରତି ।
ଊନବିଂଶ ପଚାଶ ଜାନୁଆରୀ ମାସ
ଛବିଶି ତାରିଖ ଗୁରୁତ୍ୱପୂର୍ଣ୍ଣ
ଧର୍ମନିରପେକ୍ଷ ଗଣତନ୍ତ୍ରର
କାର୍ଯ୍ୟକାରୀ ହେଲା ''ସମ୍ବିଧାନ''।
ଭାଷା ଜାତି ଧର୍ମ ବିବିଧତା ସତ୍ତ୍ୱେ
ଆଦର୍ଶ ଶାସନ ଚାଲେ ଏ ଦେଶେ
ଭାରତବାସୀଙ୍କ ସପନ ସାକାର
କରିବାକୁ ପଥ ଉଜ୍ଜ୍ୱଳ ଦିଶେ ।
ଅବହେଳିତ ଓ ଦୁର୍ବଳ ଶ୍ରେଣୀକୁ
ନ୍ୟାୟ ଓ ସୁଯୋଗ ମିଳେ ସର୍ବତ୍ର
ବିକାଶ ପଥରେ ଚାଲିଛୁ ଆଗେଇ
ସମାନ ଭାବରେ ଦେଇ ଗୁରୁତ୍ୱ ।
ବହୁ ପ୍ରାକୃତିକ ସମ୍ବଳରେ ପୂର୍ଣ୍ଣ
ଓଡ଼ିଶାକୁ ନେବା ଆଗେଇ ସର୍ବେ
ଅହିଂସା ପ୍ରଶାନ୍ତି ବିଶ୍ୱ ଭ୍ରାତୃତ୍ୱର
ବାର୍ତ୍ତା ପ୍ରଚାରି ବିଶାଳ ଭବେ ।
ଜାତୀୟ ପତାକା ଜାତୀୟ ସଂଗୀତ
ମହାନ୍ ରାଷ୍ଟ୍ରର ଆତ୍ମସମ୍ମାନ
ଯଶ ଗୁଣବତ୍ତା ନୈତିକତା ବୋଧ
ବଜାୟ ରଖିଲେ ଜୀବନ ଧନ୍ୟ ।
ବରପୁତ୍ରଙ୍କର ତ୍ୟାଗ ଓ ସଂଗ୍ରାମ
ଦେଶ ଭକ୍ତି ଭାବି ସକଳ ମିଶି
ଶ୍ରଦ୍ଧାଞ୍ଜଳି ଦେବା ଏ ପୁଣ୍ୟ ତିଥିରେ
କବି ରଘୁ ଭାଷେ ଦିବସ ନିଶି ।

ବୃନ୍ଦାବନ ଧାମ
ଲୋକନାଥ ରୋଡ଼, ପାଟଣାହାଟ ସାହି ଛକ
ପୁରୀ–୭୫୨୦୦୧

# ପ୍ରାଚୀ ଉପତ୍ୟକାର ପ୍ରାଚୀନ ସଂସ୍କୃତି ଓ ସଭ୍ୟତା

ପୂର୍ଣ୍ଣଚନ୍ଦ୍ର ଦାସ

ପ୍ରାଚୀ, କେବଳ ଗୋଟିଏ ନଦୀର ନାମ ନୁହେଁ, ଏହା ପରିବର୍ତ୍ତନଶୀଳ ସମୟର କଷଟି ପଥରରେ କଷି ହୋଇ ବର୍ତ୍ତମାନ ସଭ୍ୟ ବୋଲାଉଥିବା ମଣିଷମାନଙ୍କ ଜୀବନ ଇତିହାସର ଏକ ଅମର ଗାଥା ଅଟେ । ନଦୀ ତ ସଭ୍ୟତାକୁ ଜନ୍ମ ଦିଏ, ପରିପୁଷ୍ଟ କରେ ମାନବ ଜୀବନକୁ, ସେଥିପାଇଁ ମଣିଷ ଅତିକ୍ରମ କରିଥିବା ପ୍ରସ୍ତର ଯୁଗ (ପୁରାତନ ପ୍ରସ୍ତର ଯୁଗ, ମଧ୍ୟପ୍ରସ୍ତର ଯୁଗ, ନୂତନ ପ୍ରସ୍ତର ଯୁଗ)ର ସମାପ୍ତି ପରେ ତାମ୍ର ପ୍ରସ୍ତର ଯୁଗ ଆରମ୍ଭ ହୋଇଥିଲା । ଏହି ଯୁଗରେ ମଣିଷ ତା'ର ଶିକାରୀ, ଖାଦ୍ୟ ସଂଗ୍ରହକାରୀର ବାରବୁଲା ଯାଯାବର ଜୀବନକୁ ପରିସମାପ୍ତି ଘଟାଇ ନଦୀ ଉପତ୍ୟକାଗୁଡିକରେ ବସବାସ କରିବା ଆରମ୍ଭ କରି ଦେଇଥିଲା । ସେଥିପାଇଁ ତାମ୍ରଯୁଗ ନଦୀ ଉପତ୍ୟକାର ସଭ୍ୟତାଗୁଡିକୁ ଜନ୍ମ ଦେଇଥିଲା ଯଥା– ନୀଳନଦୀ ଉପତ୍ୟକାର ପ୍ରାଚୀନ ଇଜିପ୍ଟ ସଭ୍ୟତା, ସିନ୍ଧୁନଦୀ ଉପତ୍ୟକା ହରପ୍ପା ସଭ୍ୟତା, ହୋୟାଂହୋ ଏବଂ ୟାଙ୍ଗ–ସି–କିଆଙ୍ଗ ନଦୀ ଉପତ୍ୟକାରେ ପ୍ରାଚୀନ ଚୀନ୍ ସଭ୍ୟତା ଗଢି ଉଠିଥିଲା । ସେଥିପାଇଁ କୁହାଯାଏ ନଦୀ ହିଁ ମାନବ ସଭ୍ୟତାର ଜନ୍ମଦାତ୍ରୀ ଅଟେ । ମାନବ ସଭ୍ୟତାକୁ ନଦୀର ଗୁରୁତ୍ୱପୂର୍ଣ୍ଣ ଅବଦାନ ପାଇଁ ଇତିହାସର ଜନକ ହେରୋଡୋଟସ୍ ଦିନେ କହିଥିଲେ, 'ମିଶର ହେଉଛି ନୀଳ ନଦୀର ଦାନ' ।

ନଦୀ ବିନା ମଣିଷ ଜାତିର ଇତିହାସ କେବେହେଲେ ଲେଖାଯାଇ ନପାରେ ଏବଂ ଇତିହାସ ବିନା କୌଣସି ଜାତି ବିଶ୍ୱ ବିଜୟୀର ମୁକୁଟ ପିନ୍ଧି ପାରିବ ନାହିଁ, ଏ କଥା ସତ୍ୟ ଏବଂ ପ୍ରମାଣିତ ବି ! ତେଣୁ ପ୍ରତ୍ୟେକ ସଭ୍ୟ ମଣିଷର ଏହା ପବିତ୍ର କର୍ତ୍ତବ୍ୟ ଅଟେ ଯେ ନିଜ ଦେଶ, ଜାତି ଓ ଅଞ୍ଚଳର ଗରିମାମୟ ଇତିହାସକୁ ଜାଣିବା ଓ ଏହାର ପ୍ରଚାର, ପ୍ରସାର କରାଇବା ସହିତ ନିଜର ଉତ୍ତର ପିଢିର ମଣିଷମାନଙ୍କ ପାଇଁ ଏକ ବିସ୍ତୃତ ମାର୍ଗ ପ୍ରସ୍ତୁତ କରିବା ।

ପ୍ରାଚୀ, ଉପକୂଳବର୍ତ୍ତୀ ଓଡିଶାର ଗଙ୍ଗା ଅଟେ । ଏହାର ତୀର୍ଥ ଜଳ ଅତ୍ୟନ୍ତ ପବିତ୍ର ଓ ମୋକ୍ଷ ଦାୟିନୀ ବୋଲି ବିଭିନ୍ନ ଧର୍ମଶାସ୍ତ୍ରମାନଙ୍କରେ ମହିମାମଣ୍ଡିତ ହୋଇଅଛି । ଏପରିକି ଏହାର ପୁରାତନ ଐତିହ୍ୟ, ପ୍ରାଚୀନ କୀର୍ତ୍ତିରାଜି, ମନ୍ଦିର ଶିଳ୍ପ, ଐତିହାସିକ ପର୍ଯ୍ୟଟନ ସ୍ଥଳ, ବିଭିନ୍ନ ଧର୍ମ ଦର୍ଶନ ଓ ସାଂସ୍କୃତିକ ବିଭବତା ପାଇଁ କେବଳ ଓଡିଶା କାହିଁକି ସମଗ୍ର ଭାରତବର୍ଷରେ ମଧ୍ୟ ବେଶ୍ ପରିଚିତ । ଦିନ ଥିଲା ପ୍ରାଚୀନ ନଦୀ ଦୀର୍ଘ ବିସ୍ତାର ଥିଲା । ମହାନଦୀରୁ ବାହାରି ନରାଜ ଓ ବାରଙ୍ଗ ମଧ୍ୟଦେଇ ଫୁଲନଖରା, ବନମାଳୀପୁର, ନିଆଳୀ, ମାଧବ ବାଟେ ଯାଇ ଚନ୍ଦ୍ରଭାଗା ନିକଟରେ ସମୁଦ୍ରରେ ମିଶି ଥିଲା । ଏହାର ନୀଳ ଜଳରାଶି ଉପରେ କଳିଙ୍ଗର ଅର୍ଣ୍ଣବ ପୋତଗୁଡିକ ଢଳି ଢଳି ଦରିଆ ପାରି ବହିଃବାଣିଜ୍ୟ କରିବା ପାଇଁ କଳିଙ୍ଗ ସାଗର ବା ବର୍ତ୍ତମାନର ବଙ୍ଗୋପସାଗରକୁ ଯାତ୍ରା କରୁଥିଲେ । ଇତିହାସରୁ ଜଣାଯାଏ ଗ୍ରୀକ୍ ଲେଖକ ଟଲେମୀ ତାଙ୍କ 'ପୃଥିବୀ ଭୂଗୋଳ' ଗ୍ରନ୍ଥ ପ୍ରଥମ ଶତାବ୍ଦୀର ରଚନା କରିଥିଲେ । ସେଥିରୁ ଜଣାପଡେ କୋଣାଗାର ବର୍ତ୍ତମାନ କୋଣାର୍କ ସେସମୟରେ ଏକ ବନ୍ଦର ଥିଲା । ପ୍ରଥମ ଶତାବ୍ଦୀ ବେଳକୁ ପ୍ରାଚୀ ନଦୀ ଓ ତା'ର ଶାଖାନଦୀ ଚିତ୍ରୋତ୍ପଳାରେ ବୋଇତ ବାଣିଜ୍ୟ ଚାଲୁ ଥିଲା ।

ପ୍ରାଚୀର ନାମ ଶ୍ରବଣ ମାତ୍ରକେ ହେଉ କିମ୍ବା କୌଣସି ଆଲୋଚନା ପରିସର ମଧ୍ୟରେ ପ୍ରାଚୀର ନାମ ଆସିବା ମାତ୍ରେ ସମସ୍ତଙ୍କ ମନରେ ସ୍ୱତଃପ୍ରବୃତ୍ତ ଭାବରେ ପ୍ରଶ୍ନଟିଏ ଉଙ୍କି ମାରେ, କାହିଁକି ଏତେ ମଠ, ମନ୍ଦିର, କେତେ ଧର୍ମ କେତେ ସମ୍ପ୍ରଦାୟ କେତେ ଭିନ୍ନ ଭିନ୍ନ ଉପାସନା କେତେ ମତବାଦ ସବୁର ମହାମିଳନ ପ୍ରାଚୀ କୂଳରେ ହିଁ ସମ୍ଭବ ହୋଇଛି । ଓଡିଶାର ଅନ୍ୟ ନଦୀ ଉପତ୍ୟକାରେ କାହିଁକି ନୁହେଁ ? ଏସବୁ ବିଷୟରେ ଜାଣିବାକୁ ହେଲେ ଆମକୁ ପ୍ରାଗ୍‌–ଐତିହାସିକ ଘଟଣାବଳୀକୁ ଅଧ୍ୟୟନ କରିବାକୁ ପଡିବ ।

ପ୍ରାଚୀ ମାହାତ୍ମ୍ୟ ପ୍ରାଚୀନଦୀ ଉପରେ ଲିଖିତ ଏକ ସ୍ଥଳ ପୁରାଣ ଅଟେ । ପଦ୍ମ ପୁରାଣକୁ ଆଧାର କରି ତ୍ରିଲୋଚନ ଦ୍ୱିଜ ଏହାକୁ ରଚନା କରିଥିଲେ । ଏଥିରେ ପ୍ରାଚୀ ନଦୀର ସୃଷ୍ଟି ଓ ଏହାର ତୀର ଦେଶରେ ଅବସ୍ଥିତ ବିଭିନ୍ନ ଦେବଦେବୀ ଓ ପ୍ରାଚୀନ ପୀଠସ୍ଥଳଗୁଡିକର ବର୍ଣ୍ଣନା ରହିଅଛି । ଓଡିଶାର କେବଳ ପ୍ରାଚୀ ନଦୀକୁ ନେଇ ଏକ ପୁରାଣ ପ୍ରାଚୀ ମାହାତ୍ମ୍ୟ ରଚିତ ହୋଇଥିବା ବେଳେ ଅନ୍ୟ ନଦୀଗୁଡିକ ଉପରେ ସ୍ୱତନ୍ତ୍ର ଭାବେ ରଚିତ ହୋଇଥିବା ପୁରାଣ ନାହିଁ । ସେଥିରୁ ପ୍ରାଚୀ ନଦୀର ଗୁରୁତ୍ୱ ସୁଦୂର ଅତୀତରେ କିପରି ଥିଲା ତାହା ସହଜରେ ଅନୁମେୟ । ପୁରାଣ ପୃଷ୍ଠାରେ ହେଉ କି ଲୋକକଥାରେ ହେଉ କିମ୍ୱଦନ୍ତୀ, ଜନଶ୍ରୁତିରେ ପ୍ରାଚୀ ମହିମାମଣ୍ଡିତ ହୋଇ ଉଚ୍ଚ ଆସନ ଲାଭ କରିଥିଲା । କିନ୍ତୁ ଇତିହାସ ପୃଷ୍ଠାରେ ସେ ଯେଉଁ ସମ୍ମାନ ପାଇବା କଥା ତାହା ପାରି ନଥିଲା । କେବଳ ପ୍ରାଚୀ ଉପତ୍ୟକା କହିଲେ ତାହା କେବଳ ପ୍ରାଚୀନ ମନ୍ଦିର, ଶିଳ୍ପ ଓ ତା'ର କଳା ଭାସ୍କର୍ଯ୍ୟର ପରିପାଟୀ ଏବଂ ମାଧବ ଉପାସନାର ଏକ ପ୍ରମୁଖ ସ୍ଥଳ ବୋଲି ଜଣାଯାଉଥିଲା ।

କିନ୍ତୁ ଏବେ ଇତିହାସ ପଟ୍ଟ ପରିବର୍ତ୍ତନ କରିଛି । ପ୍ରାଚୀ କୂଳରେ ଅବସ୍ଥିତ ଜଲ୍ଲାରପୁର ଗ୍ରାମର ଭାରତୀହୁଡାରୁ ମିଳିଛି ତାମ୍ର ପ୍ରସ୍ତର ଯୁଗର ସଭ୍ୟତାର ସନ୍ଧାନ (ଏହି ପ୍ରବନ୍ଧର ଲେଖକଙ୍କ ଦ୍ୱାରା ଆବିଷ୍କୃତ) ଭାରତୀୟ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ଶାଖା–୪, ଭୁବନେଶ୍ୱରର ନିର୍ଦ୍ଦେଶକ ଡ. ଦେବୀଷଦ ବ୍ରଜସୁନ୍ଦର ଗଡନାୟକ ଏବଂ ତାଙ୍କ ସାଥୀଙ୍କ ଦ୍ୱାରା ୨୦୧୮ ମସିହାରେ ଭାରତୀହୁଡା ଉତ୍‌ଖନନ ଚାଲିଥିଲା । ଉକ୍ତ ଖନନରୁ ସେମାନେ ଭାରତୀ ହୁଡାରୁ ତାମ୍ରପ୍ରସ୍ତର ଯୁଗୀୟ ଏକ ଉନ୍ନତ ଗ୍ରାମୀଣ ସଂସ୍କୃତିର ଲୋକମାନେ ଏଠାରେ ବସବାସ କରୁଥିଲେ ବୋଲି ଜଣାପଡିଲା ଏବଂ ଏହି ସଂସ୍କୃତିର ଅବଶେଷରୁ ଜଣାଯାଇଛି ସେମାନେ ତାମ୍ର ପ୍ରସ୍ତର ଯୁଗରୁ ପ୍ରାଚୀନ ଇତିହାସ ସମୟ ପର୍ଯ୍ୟନ୍ତ ଏଠାରେ ବସବାସ କରୁଥିଲେ । ଉକ୍ତ ଖନନରୁ ପଥର ନିର୍ମିତ ହାତ ହତିଆର ଯଥା – କୁରାଢୀ, ବାରେସୀ, ପଶୁ ହାଡରେ ନିର୍ମିତ ଅସ୍ତ୍ରଶସ୍ତ୍ର ମଧ୍ୟରେ ବର୍ଚ୍ଛା, ତୀର, ତେଣ୍ଟା, ଖଞ୍ଜର, ଛୁଞ୍ଚ ଆଦି ପ୍ରଧାନ ଅଟେ । ଏତଦବ୍ୟତୀତ ତାମ୍ର ନିର୍ମିତ ମାଛ ଧରିବା କଣ୍ଟା, ତୀର, ତମ୍ବା ନିର୍ମିତ ହାତମୁଦି, ବଳା, ଲାଖରେ ତିଆରି କାଚ ଇତ୍ୟାଦି ପ୍ରଧାନ ଅଟେ । ସେହିପରି ହଳଦିଆ ମାଟିର ନିର୍ମିତ ଗୋଲାକାର ଆକୃତିର ଘର, ମାଟିର ପିଣ୍ଡି, ପୋଡାଚାଉଳ ମୁଗର ଅବଶେଷ, ସାର୍କ ମାଛର ଦାନ୍ତ, ବହୁ ପରିମାଣର ମାଛକଣ୍ଟା ପଶୁପକ୍ଷୀ ହାଡ, କଇଁଛ ହାଡ, ହରିଣ ଶିଙ୍ଘ, ଗଣ୍ଡାଦାନ୍ତ ଓ ଦରପୋଡା ହାଡମାନ ମିଳିଛି । ତତ୍‌ସହିତ ବିଭିନ୍ନ ପ୍ରକାର ବେକପିନ୍ଧା ପଥର ଓ ହାଡ ନିର୍ମିତ ମାଳି ପୋଡା ମାଟିରେ ନିର୍ମିତ ବୃଷଭର ଖେଳନା ବିଭିନ୍ନ ରଙ୍ଗର ମାଟିପାତ୍ର ଯଥା– ନାଲି ରଙ୍ଗର ପାତ୍ର, ନାଲି ରଙ୍ଗର ଚିକ୍‌କଣ ପାତ୍ର, କଳା ଓ ନାଲି ରଙ୍ଗର ପାତ୍ର, କଳା ରଙ୍ଗର ଚିକ୍‌କଣ ପାତ୍ର ଏବଂ ଗେରୁଆ ରଙ୍ଗରେ ଚିତ୍ରିତ ମାଟିପାତ୍ରମାନ ମିଳିଛି । ଗୁରୁତ୍ୱପୂର୍ଣ୍ଣ କଥା ହେଲା ସେସମୟରେ ସେ ଅଞ୍ଚଳର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ ଅନେକ କଥା ଜଣାପଡିଛି । ସେସମୟରେ ଭାରତୀହୁଡାରୁ ସମୁଦ୍ରର ଦୂରତା ପ୍ରାୟ ଦଶ–ବାର କିଲୋମିଟର ଏବଂ ପ୍ରାଚୀ ନଦୀର ଓସାର ଏକ କିଲୋମିଟର ଉପରେ ଥିବାର, ଏହାର ଉପକୂଳଗୁଡିକ ସନ୍ତସନ୍ତିଆ ଜାଗା ଥିବାର ଅନୁମାନ କରାଯାଉଛି । ଏହି ସଭ୍ୟତା ଆଜିଠାରୁ ଚାରି ହଜାର ବର୍ଷ ପୁରୁଣା ବୋଲି ଏକାପ୍ରକାର ନିଶ୍ଚିତ ହୋଇଛି । ଉତ୍‌ଖନନ୍‌ରୁ ବାହାରିଥିବା ସବୁ ଜିନିଷର ବିଜ୍ଞାନଭିତ୍ତିକ ବିଶ୍ଳେଷଣ ପାଇଁ ଇଣ୍ଟର ୟୁନିଭରସିଟି ଆସିଲେଟର ସେଣ୍ଟର (Inter Univesity Accelerator I.U.A.C.)କୁ ପଠା ଯାଇଥିଲା ।

ସେଠାରେ ସ୍ୱତନ୍ତ୍ର କାର୍ବନ ପରୀକ୍ଷା (Accelerator Spectrometry A.M.C.)ପଦ୍ଧତିରେ ଉତ୍‌ଖନନରୁ ବାହାରିଥିବା ପ୍ରତ୍ୟେକ ବସ୍ତୁ ଏବଂ କାଠ କୋଇଲା (charcoal) କୁ ପରୀକ୍ଷା କରିବା ପରେ ମାଟିର ବିଭିନ୍ନ ସ୍ତରରୁ ବାହାରିଥିବା ପୁରୁଣା ଜିନିଷ ଏବଂ ପ୍ରତ୍ୟେକ ସ୍ତରର ସମୟକାଳ ଜଣା ଯାଇଥିଲା । ଯେପରିକି ସେହି ସଭ୍ୟତା ଓ ସଂସ୍କୃତି ଅବଶେଷର ମାଟିର ତୃତୀୟ ସ୍ତରର ସମୟ କାଳ 1072 B.C.E., ଚତୁର୍ଥ ସ୍ତରର ସମୟ 1099 B.C.E. ପଞ୍ଚମ ସ୍ତରର ସମୟ କାଳ 1269 B.C.E. ଏବଂ ସପ୍ତମ ସ୍ତର ସମୟକାଳ 1404 B.C.E. ଏବଂ ଆଉ ଦୁଇଟି ତଳ ସ୍ତରର ସମୟକାଳ ଶହେ ବର୍ଷ ତଳର ବୋଲି ଜଣାପଡିଛି ।

ଉକ୍ତ ପ୍ରତ୍ନତାତ୍ତ୍ୱିକ ଖନନରୁ ମିଳିଥିବା ଖଣ୍ଡିଏ ଭଙ୍ଗା ମାଟି ପାତ୍ର ଉପରେ ଗେରୁଆ ରଙ୍ଗରେ ଅଙ୍କିତ ଏକ ସୂର୍ଯ୍ୟଙ୍କର ଚିତ୍ର ଥିବାର ଦେଖାଯାଇଥିଲା । ସେହି ମାଟିପାତ୍ରକୁ (A.M.C.) ପଦ୍ଧତିରେ ପରୀକ୍ଷା ପରେ ତାହା ଖ୍ରୀଷ୍ଟପୂର୍ବ ୧୦୯୯ର ବୋଲି ଜଣାପଡିଥିଲା । ଏଥିରୁ ଜଣାପଡିଛି ଯେ ଆଜକୁ ପ୍ରାୟ ୩୧୦୦ ବର୍ଷ ପୂର୍ବେ ପ୍ରାଚୀ ଉପତ୍ୟକାରେ ସୂର୍ଯ୍ୟ ଉପାସନା ହୋଇଥିଲା ବୋଲି ଜଣାପଡିଲା । ଏହା ବିଶ୍ୱରେ ସୂର୍ଯ୍ୟ ଉପାସନା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେବ ବୋଲି ଆଶା କରାଯାଏ ।

ଏହା ପୂର୍ବରୁ ୨୦୧୨ ମସିହାରେ ପ୍ରଥମ କରି ଏକ ଛୋଟ ଆକାରର ଉତ୍‌ଖନନ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଚୀନ ଭାରତ ଇତିହାସ ସଂସ୍କୃତି ଓ ପ୍ରତ୍ନତତ୍ତ୍ୱ ବିଭାଗର ପ୍ରଫେସର ସଦାଶିବ ପ୍ରଧାନଙ୍କ ନେତୃତ୍ୱରେ ପ୍ରାଚୀ ଉପତ୍ୟକାର ନରିଶୋ ଗ୍ରାମରେ ହୋଇଥିଲା ଏବଂ ସେଥିରୁ ଓଡିଶାରେ ମୌର୍ଯ୍ୟ ଶାସନର ଉତ୍ତରକାଳୀନ ଏକ ସଭ୍ୟତାର ସନ୍ଧାନ ମିଳିଥିଲା । ସେହି ସଭ୍ୟତାର ଅବଶେଷ ସ୍ୱରୂପ ପୋଡାମାଟି ଫନ୍ଦରେ ନିର୍ମିତ ଏକ କୂଅ ଓ ବିଭିନ୍ନ ପ୍ରକାର ମାଟିପାତ୍ର ବହୁଳ ଭାବେ ମିଳିଥିଲା । ଏହି ସଭ୍ୟତାର ସମୟ ସୀମାର ବିସ୍ତାର ଖ୍ରୀଷ୍ଟପୂର୍ବ ୨୦୦ରୁ ଖ୍ରୀଷ୍ଟାବ୍ଦ ୫୦୦ ପର୍ଯ୍ୟନ୍ତ ଥିଲା । ଏଥିରୁ ପ୍ରମାଣ ମିଳେ ଖ୍ରୀଷ୍ଟପୂର୍ବ କାଳରେ ମଧ୍ୟ ପ୍ରାଚୀ ଅବବାହିକାରେ ଜନବସତିଗୁଡିକ ଗଢି ଉଠିଥିଲା ।

ଏହାପରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସମ୍ରାଟ୍ ଖାରବେଳଙ୍କ ରାଜତ୍ୱ କାଳରେ ପ୍ରାଚୀ ଅବବାହିକାରେ ଜନବସତିଗୁଡିକ କିପରି ଥିଲା ତାହା ସ୍ପଷ୍ଟ ରୂପେ ଜଣାପଡେ ନାହିଁ । କିନ୍ତୁ କେତେକ ଐତିହାସିକ ସମ୍ରାଟ୍ ଖାରବେଳଙ୍କର ଭୁବନେଶ୍ୱରସ୍ଥିତ ଉଦୟଗିରିର ହାତୀଗୁମ୍ଫା ଶିଳାଲେଖ ପ୍ରଦତ୍ତ ତଥ୍ୟକୁ ଭିତ୍ତି କରି ମତଦାନ କରିଛନ୍ତି ଯେ, (''ଉଭୟ ପ୍ରାଚୀ ତଟେ ରାଜନିବାଂସ ମହାବିଜୟ ପ୍ରାସାଦଂ କାରାୟତି'') ଶିଳାଲେଖର ଦଶମ ଧାଡି ଓ ରାଜତ୍ୱର ନବମ ବର୍ଷରେ ସମ୍ରାଟ୍ ଖାରବେଳ ପ୍ରାଚୀର ଉଭୟ ତଟରେ ମହାବିଜୟ ପ୍ରାସାଦ ନିର୍ମାଣ କରିଥିଲେ ବୋଲି କେତେକ ଐତିହାସିକ ମତପୋଷଣ କରନ୍ତି । କିନ୍ତୁ ଏହା ଏକ ବିବାଦପୂର୍ଣ୍ଣ ପ୍ରସଙ୍ଗ । ଏହାର ସମାଧାନର ସୂତ୍ର ଆଜି ପର୍ଯ୍ୟନ୍ତ ବାହାରି ପାରି ନାହିଁ ।

ଖ୍ରୀଷ୍ଟାବ୍ଦ ୭୩୬ରେ କ୍ଷେମଙ୍କର ଦେବ ଭୌମ ରାଜବଂଶ ତୋଷାଳୀରେ ପ୍ରତିଷ୍ଠା କରିଥିଲେ । ଭୌମକର ରାଜତ୍ୱର ପୂର୍ବରୁ ଓଡିଶାରେ ହୀନଯାନ ଓ ମହାଯାନ ଦୁଇପ୍ରକାର ବୌଦ୍ଧ ଧର୍ମ ପ୍ରଚଳିତ ଥିଲା । କିନ୍ତୁ ଭୌମକର ରାଜତ୍ୱର ଆରମ୍ଭ ବେଳକୁ ମହାଯାନ ଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା ଏବଂ ବଜ୍ରଯାନ ବା ତାନ୍ତ୍ରିକ ବୌଦ୍ଧ ଧର୍ମର ଅଭ୍ୟୁଦୟ ହୋଇଥିଲା । ପ୍ରଥମ ତିନିଜଣ ଭୌମକର ରାଜା କ୍ଷେମଙ୍କର ଦେବ, ପ୍ରଥମ ଶିବଙ୍କର ଦେବ ଓ ପ୍ରଥମ ଶୁଭଙ୍କର ଦେବ ବୌଦ୍ଧ ଉପାଧି ଧାରଣ କରିଥିଲେ । ଏଥିରୁ ସେମାନେ ବୌଦ୍ଧ ଧର୍ମାବଲମ୍ବୀ ଥିଲେ ବୋଲି ପ୍ରମାଣିତ ହୁଏ । ଭୌମକର ରାଜତ୍ୱ ପୂର୍ବରୁ ଓଡିଶାରେ ଯେଉଁ ବୌଦ୍ଧ ବିହାରଗୁଡିକ ଥିଲା ସେଗୁଡିକ ଭୌମକର ରାଜତ୍ୱ କାଳରେ ବୌଦ୍ଧ ଧର୍ମର ପ୍ରମୁଖ ପୀଠସ୍ଥଳୀ ରୂପେ କାର୍ଯ୍ୟ କରୁଥିଲେ । ସେସମୟରେ ପ୍ରାଚୀ ଉପତ୍ୟକାରେ ଅବସ୍ଥିତ ଚୌରାଅଶୀ ଗ୍ରାମ ବୌଦ୍ଧ ଧର୍ମର ଏକ ପ୍ରମୁଖ ପୀଠସ୍ଥଳୀ ଥିଲା । ପରବର୍ତ୍ତୀ କାଳରେ ଭୌମକର ରାଜାମାନେ ଶୈବଧର୍ମ, ବୈଷ୍ଣବଧର୍ମ, ତନ୍ତ୍ରବାଦ ଓ ଶକ୍ତିପୂଜା ପ୍ରତି ଆକୃଷ୍ଟ ହୋଇଥିଲେ । ଏହି ସମୟରେ ଓଡିଶାରେ ଶକ୍ତି ପୂଜାର ବିକାଶ ଘଟିଥିଲା । ଚାମୁଣ୍ଡାଙ୍କ ପାଇଁ ଭୌମକର ଶାସନ କାଳରେ ଭୁବନେଶ୍ୱରର ବୈତାଳ ଓ ମୋହିନୀ ମନ୍ଦିର

ଏବଂ ପ୍ରାଚୀ କୂଳରେ ଚୌରାଅଶୀ ଗ୍ରାମରେ ବରାହି ମନ୍ଦିର ନିର୍ମିତ ହୋଇଥିଲା । ସେହି ଗ୍ରାମର ଏକ ଧାନ ବିଲରୁ ୧୯୨୨ ମସିହାରେ ଏକ ତାମ୍ରଫଳକ ଆବିଷ୍କୃତ ହୋଇଥିଲା । ସେହି ତାମ୍ର ଫଳକଟି ଶୁଭଙ୍କର ଦେବଙ୍କ ସମୟର ବୋଲି ଜଣାପଡିଥିଲା । ଉକ୍ତ ଫଳକର ବର୍ଣ୍ଣନାନୁଯାୟୀ ପ୍ରଥମ ଯଯାତିଙ୍କର ପୌତ୍ର ଦଶରଥ ୯୫୫ ଖ୍ରୀଷ୍ଟାବ୍ଦରୁ ୯୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅନ୍ତଚୁଡ ବିଷୟରେ ଏକ ଗ୍ରାମ ଦାନ କରିଥିଲେ । ଏହି ଗ୍ରାମଟି ତୋଷାଳୀର ଦକ୍ଷିଣ ଭାଗରେ ଅବସ୍ଥିତ ଥିଲା । ଏଥିରୁ ସ୍ପଷ୍ଟ ଜଣାପଡେ ଦଶରଥଙ୍କ ସମୟରେ ଦକ୍ଷିଣ ତୋଷାଳୀ ସୋମବଂଶ ଅଧୀନସ୍ଥ ହୋଇଥିଲା । ଦଶମ ଶତାବ୍ଦୀ ପ୍ରାରମ୍ଭରେ ଭୌମରାଣୀ ଧର୍ମ ମହାଦେବୀଙ୍କ ଶାସନ ପରେ ତୋଷାଳୀ ସମ୍ପୂର୍ଣ୍ଣ ଭାବରେ ସୋମବଂଶୀ ଶାସକମାନଙ୍କ ଅଧୀନକୁ ଆସିଥିଲା ।

ଇତିହାସ ପୃଷ୍ଠାରେ ସୋମବଂଶୀ ଶାସକମାନେ କଳା ସ୍ଥାପତ୍ୟର ପ୍ରଧାନ ପୂଜାରୀ ଥିଲେ ବୋଲି ଜଣାପଡେ । ଓଡିଶାର ଶୈଳୋଦ୍ଭବ ଶାସନ କାଳରେ ମନ୍ଦିର ନିର୍ମାଣ ସ୍ଥାପତ୍ୟର ଅୟମାରମ୍ଭ ହୋଇଥିଲା ବେଳେ ସୋମବଂଶୀ ଶାସନର ଶେଷ ସୁଦ୍ଧା ଏହି ସ୍ଥାପତ୍ୟ ଉତ୍କର୍ଷର ଚରମ ସୀମାରେ ପହଞ୍ଚି ଥିଲା । ସୋମବଂଶୀ ରାଜାମାନେ ଶିବ ଉପାସକ ଥିଲେ । ସେମାନେ ଶୈବ ଧର୍ମର ପ୍ରଚାର ପ୍ରସାର ପାଇଁ ଶିବ ମନ୍ଦିରମାନ ନିର୍ମାଣ କରୁଥିଲେ । ସେସମୟରେ ପ୍ରାଚୀ ଉପତ୍ୟକାର ବିଭିନ୍ନ ପ୍ରାନ୍ତରେ ପୋଡା ଇଟାରେ ନିର୍ମିତ ଶିବ ମନ୍ଦିରଗୁଡିକ ଗଢା ଯାଇଥିଲା । ସେ ମନ୍ଦିରଗୁଡିକ ମଧ୍ୟରୁ ଜଲ୍ଲାରପୁର ଗ୍ରାମର ସୋମନାଥ ମନ୍ଦିର, ପିତାପଡା ଗ୍ରାମର ଅଙ୍ଗେଶ୍ୱର, କୃଷ୍ଣପ୍ରସାଦ ଗ୍ରାମର କାଶୀ ବିଶ୍ୱନାଥ ମନ୍ଦିର ଆଦି ପ୍ରଧାନ ଅଟେ । ଏହି ନିକଟ ଅତୀତରେ ଜଲ୍ଲାରପୁର ଗ୍ରାମ ପାଟପୁର ଢିପାରୁ ମିଳୁଥିବା ଭଙ୍ଗା ମାଟି ପାତ୍ରଗୁଡିକରୁ ସୋମବଂଶୀ ଶାସନ କାଳରେ ଏଠାରେ ଏକ ବିରାଟ ଜନବସତି ଥିଲା ବୋଲି ଅନୁମାନ କରାଯାଉଅଛି ।

ଓଡିଶାର ପୂର୍ବଭାଗରେ ଉପକୂଳବର୍ତ୍ତୀ ଅଞ୍ଚଳରେ ପ୍ରଥମେ ଭୌମକର ଏବଂ ପରେ ସୋମବଂଶୀ ରାଜାମାନେ ଶାସନ କରୁଥିବାରୁ ଗଙ୍ଗରାଜାମାନେ ଦୀର୍ଘକାଳ ପର୍ଯ୍ୟନ୍ତ ସେ ଦିଗରେ ସେମାନଙ୍କର ରାଜ୍ୟର ସୀମା ବୃଦ୍ଧି କରି ପାରି ନଥିଲେ । ଏକାଦଶ ଶତାବ୍ଦୀର ଆରମ୍ଭ ବେଳକୁ ସୋମବଂଶୀ ରାଜାମାନେ ଦୁର୍ବଳ ହୋଇ ପଡିବାରୁ ଗଙ୍ଗରାଜାମାନଙ୍କ ପକ୍ଷରେ ଉପକୂଳ ଅଞ୍ଚଳରେ କ୍ଷମତା ବିସ୍ତାର କରିବା ସହଜସାଧ୍ୟ ହୋଇ ପଡିଥିଲା । ଏହି ବଂଶରେ ଜନ୍ମଲାଭ କରିଥିଲେ ପ୍ରଖ୍ୟାତ ନରପତି ତୃତୀୟ ଅନଙ୍ଗଭୀମ ଦେବ । ସେ ୧୨୧୧ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରି ୧୨୩୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କରି ସମୟରେ ମାଧବ ଗ୍ରାମରେ ପ୍ରସିଦ୍ଧ ମାଧବାନନ୍ଦ ମନ୍ଦିର ସେ ନିର୍ମାଣ କରାଇଥିଲେ । ସେହିପରି ନିଆଳୀର ଶୋଭନେଶ୍ୱର ମନ୍ଦିର ଗଙ୍ଗରାଜତ୍ୱ କାଳରେ ନିର୍ମିତ ବୋଲି ଜଣାପଡେ । ଶୋଭନେଶ୍ୱର ମନ୍ଦିରର ଜଗମୋହନର ଡାହାଣ ପଟର ବାହାର କାନ୍ଥରେ ଥିବା ଶିଳାଲିପିରୁ ଜଣାପଡେ କାକୋଦରପୁରର ଭୁଜଙ୍ଗମ ପୁରୀ ନାମକ ସ୍ଥାନରେ ରାଜତ୍ୱ କରୁଥିବା ବ୍ରାହ୍ମଣ ରାଜା ବୈଦ୍ୟନାଥ ପ୍ରସିଦ୍ଧ ମନ୍ଦିର ଶିଳ୍ପୀ ଶୋଭନଙ୍କ ଦ୍ୱାରା ଉକ୍ତ ମନ୍ଦିର ତୋଳାଇ ଥିଲେ ଏବଂ ମନ୍ଦିରରେ ଥିବା ଶିଳାଲିପିକୁ ସେ ଉଦୟନ ନାମକ ଶିଳ୍ପୀଙ୍କ ଦ୍ୱାରା ଖୋଦନ କରି ଲେଖିଥିଲେ । ଏହି ଉଦୟନ ମଧ୍ୟ ଭୁବନେଶ୍ୱର ମେଘେଶ୍ୱର ମନ୍ଦିର ଶିଳାଲିପିର ଲେଖକ ଅଟନ୍ତି । ଏହି ଉଦୟନ ଗଙ୍ଗ ବଂଶର ସମ୍ରାଟ୍‌ମାନଙ୍କର ପ୍ରସିଦ୍ଧ ଶିଳାଲିପିର ଖୋଦକ ଅଟନ୍ତି । ମେଘେଶ୍ୱର ମନ୍ଦିର ଶିଳାଲିପିରେ ରାଜା ଅନଙ୍ଗଭୀମ ଦେବଙ୍କ ନାମ ଥିବାରୁ ଶୋଭନେଶ୍ୱର ମନ୍ଦିର ଶିଳାଲିପି ମଧ୍ୟ ଅନଙ୍ଗଭୀମ ଦେବଙ୍କ ସମୟର ବୋଲି ଜଣାପଡେ ଏବଂ ବୈଦ୍ୟନାଥ ଗଙ୍ଗ ସାମ୍ରାଜ୍ୟର କରଦରାଜା ଥିଲେ ବୋଲି ଜଣାପଡେ ।

ଏହାଛଡା ଦ୍ୱାଦଶ ଶତାବ୍ଦୀରେ ଗଙ୍ଗ ରାଜତ୍ୱ ସମୟରେ ପ୍ରାଚୀ ଉପତ୍ୟକାର କେନ୍ଦୁଲି ଗ୍ରାମରେ ଜନ୍ମିତ କବି ଜୟଦେବ ତାଙ୍କର ପ୍ରସିଦ୍ଧ କାବ୍ୟ ଗୀତଗୋବିନ୍ଦ ରଚନା କରି ସମଗ୍ର ଭାରତବର୍ଷରେ ରାଧାକୃଷ୍ଣଙ୍କର ଅମର ପ୍ରେମର ଗଙ୍ଗା ବୁହାଇ ଥିଲେ । ଭକ୍ତକବି ଜୟଦେବ ହେଉଛନ୍ତି ଭାରତବର୍ଷର ପ୍ରଥମ କବି ଯିଏ କି ଶ୍ରୀରାଧାଙ୍କ ଚରିତ୍ରକୁ

ପ୍ରଥମ କରି ତାଙ୍କ ରଚିତ 'ଗୀତଗୋବିନ୍ଦ' ଗ୍ରନ୍ଥରେ ସ୍ଥାନ ଦେଇଥିଲେ । ଏହା ପୂର୍ବରୁ ଶ୍ରୀରାଧାଙ୍କ ଚରିତ୍ର କୌଣସି ଭାରତୀୟ କାବ୍ୟ କବିତାରେ ସ୍ଥାନ ପାଇ ନଥିଲା । ପ୍ରାଚୀ ଉପତ୍ୟକାର ଭକ୍ତକବି ଜୟଦେବଙ୍କ ଦ୍ୱାରା ଲିଖିତ ଶ୍ରୀଗୀତଗୋବିନ୍ଦ ଭାରତବର୍ଷକୁ ଏକ ଅମୂଲ୍ୟ ଦାନ ଅଟେ । ଗଙ୍ଗ ବଂଶର ଶେଷରାଜା ମତ୍ତଭାନୁ ଦେବଙ୍କ ପରେ ୧୪୩୫ ଜୁନ୍ ମାସ ୨୯ ତାରିଖ ଦିନ ଭୁବନେଶ୍ୱରରେ କପିଳେନ୍ଦ୍ରଦେବ ସିଂହାସନ ଆରୋହଣ କରି ସୂର୍ଯ୍ୟବଂଶର ରାଜତ୍ୱ ଆରମ୍ଭ କଲେ । ସୂର୍ଯ୍ୟବଂଶର ରାଜତ୍ୱ କାଳରେ ଓଡିଶାର ସୀମା ପୁଣି ଥରେ ଗଙ୍ଗାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ସୂର୍ଯ୍ୟବଂଶୀୟ ନରପତିମାନେ ଦକ୍ଷ ସେନାପତି ଓ ସୁଶାସକ ଥିବା ସଙ୍ଗେ ସଙ୍ଗେ ସାହିତ୍ୟ କଳା ସଂସ୍କୃତି ଓ ସ୍ଥାପତ୍ୟର ପୃଷ୍ଠପୋଷକ ଥିଲେ । ଏହି ଯୁଗରେ ଓଡିଆ ଭାଷାର ନବଜାଗରଣ ଆରମ୍ଭ ହୋଇଥିଲା । କିନ୍ତୁ ଏହି ଶାସନ କାଳରେ ପ୍ରାଚୀ ଉପତ୍ୟକାରେ ସେଭଳି କୌଣସି ଆଖିଦୃଶିଆ ଘଟଣା ଘଟିଥିବାର ଜଣାଯାଏ ନାହିଁ । କେବଳ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ ଓଡିଶା ଆଣିଥିବା ଭକ୍ତିବାଦ ଯୁଗର ଅନ୍ୟତମ ପୁରୋଧା ଶ୍ରୀଚୈତନ୍ୟ ଓଡିଶାର ପୁରପଲ୍ଲୀରେ ଉଦଣ୍ଡ କୀର୍ତ୍ତନ କରି କରି ତାଙ୍କ ବାଣୀ ପ୍ରଚାର କରୁଥିବା ସମୟରେ ପ୍ରାଚୀ ଉପତ୍ୟକାରେ ଥିବା ପ୍ରାଚୀନ ଧର୍ମସ୍ଥଳ ବୁଲିଥିଲେ ଏବଂ ନୂଆଗାଁ ଗ୍ରାମର ଚରଣ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ରାଧାକାନ୍ତ ମଠରେ ଏକ ରାତ୍ରି ଯାପନ କରି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କରିଥିଲେ ବୋଲି ଶୁଣିବାକୁ ମିଳେ । ଏହି କାଳରେ ପ୍ରାଚୀ ଉପତ୍ୟକାରେ କେତେଗୁଡିଏ ମଠର ସ୍ଥାପନା କରାଯାଇଥିଲା ।

ପ୍ରତାପରୁଦ୍ରଙ୍କ ଶାସନ କାଳରୁ ଓଡିଶା ସାମ୍ରାଜ୍ୟର ପତନ ଆରମ୍ଭ ହୋଇଥିଲା । ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ସବୁଦିନ ପାଇଁ ଓଡିଶାର ଭାଗ୍ୟ ଆକାଶରୁ ସ୍ୱାଧୀନତାର ରବି ଅସ୍ତ ହୋଇ ଯାଇଥିଲେ । ଏହା ପରେ ପରେ ଓଡିଶାକୁ ବିଦେଶୀ ଶକ୍ତି ତୁର୍କ, ଆଫଗାନ ଓ ମୋଗଲମାନେ ଶାସନ କରିଥିଲେ । ସେମାନେ ହିନ୍ଦୁଧର୍ମ ବିରୋଧୀ କାର୍ଯ୍ୟରେ ଲିପ୍ତ ରହି ବିଭିନ୍ନ ହିନ୍ଦୁ ମନ୍ଦିରଗୁଡିକ ଉପରେ ଆକ୍ରମଣ କରି ଧ୍ୱଂସ କରିଥିଲେ । ସେମାନେ ଲୋକମାନଙ୍କ ମଧ୍ୟରେ ଆତଙ୍କ, ଭୟ ଓ ଘୃଣାର ଭାବ ସୃଷ୍ଟି କରିଥିଲେ ।

ଓଡିଶାର ବିଭିନ୍ନ ରାଜବଂଶ ସହିତ ଓତପ୍ରୋତ ଭାବେ ଜଡିତ ଥିବା ପ୍ରାଚୀ ଉପତ୍ୟକା ଖାଲି ରାଜନୈତିକ ଓ କଳା ସ୍ଥାପତ୍ୟ କ୍ଷେତ୍ରରେ ନୁହେଁ ବିଭିନ୍ନ ଧର୍ମଧାରା ମତ ଓ ପଥର ଏକ ସର୍ବଧର୍ମ ସମନ୍ୱୟ ସ୍ଥଳ ବୋଲି ସମଗ୍ର ଉତ୍କଳ ଖଣ୍ଡରେ ବିଦିତ । ଶୁଣାଯାଏ, କଳିଙ୍ଗ ଯୁଦ୍ଧରେ ଲକ୍ଷ ଲକ୍ଷ ସୈନିକଙ୍କ ମୃତ୍ୟୁ ନିଜ ଆଖି ଆଗରେ ଦେଖି ଆତ୍ମବିଗଳିତ ହୋଇ ପଡିଥିବା ଅନୁତପ୍ତ ସମ୍ରାଟ୍ ଅଶୋକ କଳିଙ୍ଗ ଯୁଦ୍ଧର କଳଙ୍କରୁ ମୁକ୍ତି ପାଇଁ ପ୍ରାଚୀ ଉପତ୍ୟକାରେ ସାଧନାରତ କଳିଙ୍ଗ ବୌଦ୍ଧ ଭିକ୍ଷୁ ଉପଗୁପ୍ତଙ୍କ ଶରଣ ପଶି ବୁଦ୍ଧ ପୂର୍ଣ୍ଣିମାରେ ପ୍ରାଚୀ ସ୍ନାନତର୍ପଣ କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ପ୍ରାଚୀ ଉପତ୍ୟକାରେ ଅବସ୍ଥିତ ଗ୍ରାମମାନଙ୍କରୁ ଯଥା – ଯୁଇଁନ୍ତି, ଫିରିଫିରା, ମୁଦଗଳ, ଲତାହରଣ, ଅସ୍ତରଙ୍ଗ, ଅର୍କବଟ, ନିଭରଣ, ଅମରେଶ୍ୱର, କେନ୍ଦୁଲି, କନ୍ତିକୂଳ, ସାନଭିଲ୍ଲ, କେଶରପୁର, କରାଙ୍ଗଗଡ, ଟୋଲା ଗୋପିନାଥପୁର ଇତ୍ୟାଦି ଗ୍ରାମରେ ଥିବା ବୁଦ୍ଧ ମୂର୍ତ୍ତିଗୁଡିକ (ବର୍ତ୍ତମାନ ସେଥିରୁ ଅର୍ଦ୍ଧେକ ହିନ୍ଦୁ ଦେବଦେବୀ ହିସାବରେ ପୂଜିତ) ତତ୍କାଳୀନ ସମୟର ପ୍ରାଚୀ ଉପତ୍ୟକାରେ ବୌଦ୍ଧ ଧର୍ମର ପ୍ରଭାବ କିପରି ଥିଲା ତାହା ସୂଚାଇଥାନ୍ତି । ଐତିହାସିକ ପି.କେ. ରାୟଙ୍କ ମତରେ ଯୁଇଁନ୍ତି ଗ୍ରାମର ଈଶ୍ୱରଦେବ ମନ୍ଦିର ଏବଂ ପିତାପଡା ଗ୍ରାମର ଅଙ୍ଗେଶ୍ୱର ମନ୍ଦିର ନିର୍ମିତ ହେବା ପୂର୍ବରୁ ସେଠାରେ ବୌଦ୍ଧ ସ୍ତୁପମାନ ନିର୍ମିତ ହୋଇଥିଲା । କୁରୁମ ପ୍ରାଚୀ ଉପତ୍ୟକାର ଏକ ପ୍ରସିଦ୍ଧ ବୌଦ୍ଧ ପୀଠ ଥିଲା ବୋଲି ଜଣାପଡେ ।

ସେହିପରି ମଧ୍ୟ ଋଷଭନାଥଙ୍କ ଜୈନ ମୂର୍ତ୍ତିଗୁଡିକ ଅଡଶପୁର ଗ୍ରାମର ସ୍ୱପ୍ନେଶ୍ୱର ଓ ନୀଳକଣ୍ଠେଶ୍ୱର ଶିବ ମନ୍ଦିରରେ ପୂଜା ପାଉଅଛନ୍ତି । ନିଭରଣ ଗ୍ରାମର ଗ୍ରାମେଶ୍ୱର

ଶିବ ମନ୍ଦିରରେ ପାର୍ଶ୍ୱନାଥଙ୍କ ମୂର୍ତ୍ତି ପୂଜା ପାଉଅଛନ୍ତି । ଆହୁରି ମଧ୍ୟ ନରିଶୋ ଗ୍ରାମରେ ଏକ ଜୈନମୂର୍ତ୍ତି ପୂଜା ପାଉଛନ୍ତି । ପ୍ରାଚୀ କୂଳରେ ଗଢି ଉଠିଥିବା ବିଭିନ୍ନ ମଠଗୁଡିକରେ ଜୈନମୂର୍ତ୍ତିଗୁଡିକ ପୂଜା ପାଉଥିବାର ଦେଖାଯାଏ । ସେଗୁଡିକ ମଧ୍ୟରେ ବିଶ୍ୱାମିତ୍ର ଆଶ୍ରମ, ଭରଦ୍ୱାଜ ଆଶ୍ରମରେ ଜୈନ ଧର୍ମର ପ୍ରବର୍ତ୍ତକ ଋଷଭନାଥ ପୂଜା ପାଇ ଆସୁଛନ୍ତି ।

ଐତିହାସିକମାନଙ୍କ ମତରେ ଶୈବଧର୍ମ ଓଡିଶାର ସର୍ବପ୍ରାଚୀନ ଧର୍ମ ଅଟେ । ଏକଦା ଶୈବଧର୍ମ ପ୍ରାଚୀ ଉପତ୍ୟକାରେ ଗଣଧର୍ମ ଥିଲା । ବର୍ତ୍ତମାନ ଜରାଜୀର୍ଣ୍ଣ ହୋଇ ପଡିଥିବା ପ୍ରାଚୀନ ଶୈବପୀଠଗୁଡିକ ତାହାର ପ୍ରମାଣ ଦିଅନ୍ତି । ଦିନେ ସମଗ୍ର ପ୍ରାଚୀ ଉପତ୍ୟକାର ଦ୍ୱାଦଶ ଶମ୍ଭୁ ଓ ଅଷ୍ଟନାଥଙ୍କ ବିଜେସ୍ଥଳୀ ଥିଲା । ଦ୍ୱାଦଶ ଶମ୍ଭୁମାନଙ୍କ ମଧ୍ୟରେ (୧) କପିଳେଶ୍ୱର (କପିଳେଶ୍ୱର ଶାସନ), (୨) ଗୋକର୍ଣ୍ଣେଶ୍ୱର (କଣ୍ଟାପଡା ବ୍ରାହ୍ମଣ ଶାସନ), (୩) ବିଲେଶ୍ୱର (ପଇଡପାଟଣା), (୪) ଶୋଭନେଶ୍ୱର (ନିଆଳୀ), (୫) ରାମେଶ୍ୱର (ଟୋଲାଗୋପିନାଥପୁର), (୬) ଅଙ୍ଗେଶ୍ୱର (ପିତାପଡା), (୭) ଅମରେଶ୍ୱର (ଅମରପ୍ରସାଦ), (୮) ଗ୍ରାମେଶ୍ୱର (ନିଭରଣ), (୯) ସୋମେଶ୍ୱର (କାକଟପୁର), (୧୦) ସିଦ୍ଧେଶ୍ୱର (ମୁଦ୍‌ଗଳ), (୧୧) ନୃତେଶ୍ୱର (ନାଶିକେଶ୍ୱର), (୧୨) ମୁକ୍ତେଶ୍ୱର (ଡାଳୁଆକଣି) ସେହିପରି ଅଷ୍ଟନାଥଙ୍କ ମଧ୍ୟରେ ଜଲ୍ଲାରପୁର ଗ୍ରାମର ସୋମନାଥ ଓ କେଦାରନାଥ ପ୍ରଧାନ ଅଟନ୍ତି ।

ପ୍ରାଚୀ ଉପତ୍ୟକାରେ ଦ୍ୱାଦଶ ଶମ୍ଭୁଙ୍କ ସହିତ ଦ୍ୱାଦଶ ମାଧବ ଉପାସିତ ବୋଲି ପ୍ରାଚୀ ମାହାତ୍ମ୍ୟରେ ବର୍ଣ୍ଣିତ ଅଛି । କିନ୍ତୁ ସବୁ ମାଧବଙ୍କ ସ୍ଥାନ କେଉଁ ଜାଗାରେ ସେ ବିଷୟରେ ପ୍ରାଚୀ ମାହାତ୍ମ୍ୟ ନିରବ କିନ୍ତୁ ଗବେଷକମାନଙ୍କ ଅନୁସନ୍ଧାନରୁ ଜଣାଯାଇଛି ମାଧବ ଗ୍ରାମରେ ଏକ ଭବ୍ୟ ମନ୍ଦିରରେ ପୂଜିତ ମାଧବାନନ୍ଦ ପ୍ରାଚୀ ଉପତ୍ୟକାର କ୍ଷେତାଧିପତି ଅଟନ୍ତି । ତାଙ୍କ ଛଡା ଲଳିତ ମାଧବ, ବୋଲରା ଗ୍ରାମର ମାଧବ, ରଘୁନାଥପୁର ଗ୍ରାମର ମାଧବ, ମୁଦ୍‌ଗଳ ମାଧବ, ଗମ୍ଭାରିପଦାର ନଟାବୁ ମାଧବ ଏହାଛଡା ନିଆଳୀର ଶୋଭନେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଏକ ଛାତ ଘରେ ସଂରକ୍ଷିତ ଥିବା କେତେଗୁଡିଏ ସୁନ୍ଦର ମାଧବ ମୂର୍ତ୍ତି ଦେଖାଯାଏ । ଏହାଛଡା ନିଭରଣ ଗ୍ରାମର ଗ୍ରାମେଶ୍ୱରଙ୍କ ମନ୍ଦିରରେ ଏକ ସୁନ୍ଦର ମାଧବ ମୂର୍ତ୍ତି, ମଙ୍ଗଳାଙ୍କ ମନ୍ଦିରରେ ପାର୍ଶ୍ୱଦେବତା ଥିବା ଦୁଇଟି ମାଧବ ମୂର୍ତ୍ତି, ଲତାହରଣ ଗାଁରେ ଗ୍ରାମେଶ୍ୱର ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରେ ଥିବା ଏକ ଛାତଘରେ ସଂରକ୍ଷିତ ମାଧବ ମୂର୍ତ୍ତି, ମାଧବ ଗ୍ରାମର ଭୌମେଶ୍ୱର ମହାଦେବଙ୍କ ମନ୍ଦିରରେ ଥିବା ମାଧବ ମୂର୍ତ୍ତି ଏବଂ ପିତାପଡା ଗ୍ରାମର ଅଙ୍ଗେଶ୍ୱର ମନ୍ଦିର ପ୍ରାଙ୍ଗଣରେ ସଂରକ୍ଷଣ ମାଧବ ମୂର୍ତ୍ତିଗୁଡିକ ପ୍ରାଚୀ ମାହାତ୍ମ୍ୟ ବର୍ଣ୍ଣନାନୁଯାୟୀ ପ୍ରାଚୀ ଉପତ୍ୟକାରେ ଦ୍ୱାଦଶ ମାଧବ ଅଟନ୍ତି ବୋଲି ଅନୁମିତ ହୁଏ । କିନ୍ତୁ ମୂଳ ମନ୍ଦିରଗୁଡିକ ଭାଙ୍ଗି ଯାଇଥିବାରୁ ଏଗୁଡିକ ଇତସ୍ତତଃ ହୋଇ ଅନ୍ୟ ମନ୍ଦିରଗୁଡିକରେ ଅବହେଳିତ ଅବସ୍ଥାରେ ଅଛନ୍ତି । ସେହି ମାଧବ ମୂର୍ତ୍ତିଗୁଡିକର ମୂଳ ମନ୍ଦିରକୁ ଖୋଜି ବାହାର କରିବା ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ମୂଲ୍ୟ ରଖେ ଏବଂ ଏହା ଗବେଷଣା ସାପେକ୍ଷ ।

ପ୍ରାଚୀ ଉପତ୍ୟକାକୁ ମାଧବ କ୍ଷେତ୍ର କୁହାଯାଉଥିବା ବେଳେ ଏଠାରେ ଶାକ୍ତ ଉପାସନାର ଧାରା ପ୍ରସିଦ୍ଧି ଲାଭ କରିଥିଲା ବୋଲି ଆଜି ବିଭିନ୍ନ ମଠ ମନ୍ଦିରରେ ପୂଜା ପାଉଥିବା ତତ୍କାଳୀନ ସମୟର ସୁନ୍ଦର ମୂର୍ତ୍ତିଗୁଡିକ ତା'ର ପ୍ରମାଣ ଦିଅନ୍ତି । କାକଟପୁର ଆରାଧ୍ୟ ଦେବୀ ମା' ମଙ୍ଗଳାଙ୍କ କଥା ତ ଓଡିଶାରେ ସର୍ବଜନବିଦିତ । ଉତ୍କଳର ଜଣେ ବଣିକ ଦଧିବାମନ ସାହୁ, ମଙ୍ଗଳାଙ୍କ ମୂର୍ତ୍ତିକୁ ସିଂହଳ ଦ୍ୱୀପରୁ ଆଣି ଏଠାରେ ପ୍ରତିଷ୍ଠିତ କରିଥିଲେ ବୋଲି ଜନଶ୍ରୁତିରୁ ଶୁଣିବାକୁ ମିଳେ । ବୌଦ୍ଧଗ୍ରନ୍ଥ ଆର୍ଯ୍ୟଶ୍ରୀ ମଞ୍ଜୁଶ୍ରୀ ମୂଳକଳ୍ପରେ ଓଡିଶାକୁ କଳିଙ୍ଗୋଡ୍ରଦେଶ ଏବଂ ନୌଯାତ୍ରାରେ ବର୍ହିବାଣିଜ୍ୟ କରିବା ପାଇଁ ଯାଉଥିବା ସାଧବପୁଅମାନଙ୍କ ମଙ୍ଗଳ କାମନା ପାଇଁ ମଙ୍ଗଳାଙ୍କ ପୂଜା କରାଯାଉଥିଲା ବୋଲି ବର୍ଣ୍ଣନା କରାଯାଇଛି ।

ପ୍ରାଚୀ ଅବବାହିକାରେ ଅତୀତରେ ଦୁର୍ଗାଙ୍କର ଉପାସନା ହେଉଥିବାର ବହୁବିଧ ପ୍ରମାଣ ମିଳିଅଛି । ବିଶେଷତଃ ଏଠାରୁ ମିଳୁଥିବା ଦୁର୍ଗାମୂର୍ତ୍ତିଗୁଡିକ ଦୁଇ ଭୁଜାରୁ ବାରଭୁଜା ବିଶିଷ୍ଟ ଯଥା– ନିଭରଣ ଗ୍ରାମରେ ଥବା ସୋମେଶ୍ୱର ମନ୍ଦିରରେ ଦୁଇଭୁଜା ବିଶିଷ୍ଟ ଦୁର୍ଗା, ମୋଟିଆଁ ଗ୍ରାମର ଚତୁଃଭୁଜ ଦୁର୍ଗା, ଅସ୍ତରଙ୍ଗ ଗ୍ରାମର ଗ୍ରାମଦେବତୀ ଷଡଭୁଜା ଦୁର୍ଗା ଆମଣାକୁଦ ଓ ରାମେଶ୍ୱର ମନ୍ଦିର ନୟାହାଟର ଅଷ୍ଟଭୁଜା ଦୁର୍ଗା ଓ ସାଧାରଣ ଭାବରେ ଦଶଭୁଜା ଦୁର୍ଗା ପୀଠଦେବୀ ଓ ପାଶ୍ୱଦେବତା ଭାବରେ ଏହି ଉପତ୍ୟକାରେ ପୂଜା ପାଆନ୍ତି । ବାରଭୁଜା ଦୁର୍ଗାଙ୍କର ମନ୍ଦିର ନିଭରଣ ଗ୍ରାମରେ ରହିଛି । ପ୍ରାଚୀ ଉପତ୍ୟକାରେ ଦୁଇ ପ୍ରମୁଖ ଧର୍ମ ଯଥା ମାଧବ ଉପାସନା ଓ ଦୁର୍ଗା ଉପାସନାର ପ୍ରାବଲ୍ୟ ହେତୁ ଏହି ଦୁଇ ସମ୍ପ୍ରଦାୟ ମଧ୍ୟରେ ସାଂସ୍କୃତିକ ସମନ୍ୱୟ ଘଟି ଦୁର୍ଗା ମାଧବ ଉପାସନାର ଧାରା ଆରମ୍ଭ ହୋଇଥିଲା ବୋଲି ଜଣାପଡେ । ଅନୁରୂପ ଦୁର୍ଗାମୂର୍ତ୍ତି ପରି ଚତୁର୍ଭୁଜାରୁ ବାରଭୁଜା ବିଶିଷ୍ଟ ଚାମୁଣ୍ଡା ମୂର୍ତ୍ତିଗୁଡିକ ପ୍ରାଚୀ ଉପତ୍ୟକାର ଉପାସିତ ହୁଅନ୍ତି । ଯଥା– ପିତାପଡା, ଲତାହରଣ, ମୋଟିଆଁ ଗାଁରେ ଚତୁର୍ଭୁଜା ଚାମୁଣ୍ଡା, ନିଭରଣ ଗାଁର ଷଡଭୁଜା, କାକଟପୁର ସୋମେଶ୍ୱର ମନ୍ଦିର ଏବଂ ତୁଳସୀପୁରର ଅମରେଶ୍ୱର ମନ୍ଦିର ଓ ମଙ୍ଗଳା ମନ୍ଦିର କାକଟପୁରରେ ଅଷ୍ଟଭୁଜା ଏବଂ ଶୋଭନେଶ୍ୱରର ମନ୍ଦିର, ନିଆଳୀରେ ଦଶଭୁଜା ଚାମୁଣ୍ଡା ଜାଗୁଳାଇ ନାମରେ ଚୌରାଅଶି ଗ୍ରାମରେ ପୂଜା ପାଆନ୍ତି । ପ୍ରାଚୀ ଉପତ୍ୟକାରେ ଶ୍ରେଷ୍ଠ ଶାକ୍ତମୂର୍ତ୍ତି ବରାହୀ ଭୌମକର ରାଜବଂଶ ଦ୍ୱାରା ନିର୍ମିତ ଏକ ଭବ୍ୟ ଖାକରା ଶୈଳୀର ମନ୍ଦିରରେ ଚୌରାଅଶୀ ଗ୍ରାମରେ ପ୍ରତିଷ୍ଠିତ ହୋଇଅଛନ୍ତି ।

ଉପରୋକ୍ତ ବର୍ଣ୍ଣିତ ମୁଖ୍ୟ ଧର୍ମଧାରଣା ଉପାସନାକୁ ଛାଡି ପ୍ରାଚୀ ଉପତ୍ୟକାରେ ଅନ୍ୟ କେତେକ ଗୌଣ ଧର୍ମଧାରା ଦୃଷ୍ଟିଗୋଚର ହୁଏ । ସେଥିମଧ୍ୟରୁ ବରାହ, ଲକ୍ଷ୍ମୀ ନାରାୟଣ, କୃଷ୍ଣ ରାମ, ଦଶାବତାର, ପତିତପାବନ ଆଦି ଦେବଗଣଙ୍କୁ ଉପାସନା କରାଯିବା ସହିତ ଗାଦିବ୍ରହ୍ମ, ନିରାକର ଓ ଅଲେଖ ଧର୍ମ ଓ ଉପାସନା ପଦ୍ଧତି ଦେଖିବାକୁ ମିଳେ ।

ଓଡିଶାର ଇତିହାସ ହେଉଛି ଜଗନ୍ନାଥଙ୍କ ଇତିହାସ । ଯେପରି ଜଗନ୍ନାଥଙ୍କୁ ବାଦ୍ ଦେଇ ଓଡିଶାର ଇତିହାସ ଲେଖା ଯାଇ ନପାରେ, ଠିକ୍ ସେହିପରି ଜଗନ୍ନାଥ ସଂସ୍କୃତିକୁ ପ୍ରାଚୀ ଉପତ୍ୟକା ଦେଇଥିବା ଅବଦାନ କଥା କୁହା ନଗଲେ ଏହି ପ୍ରବନ୍ଧର ପୂର୍ଣ୍ଣତା ଆସିବ ନାହିଁ । ନବକଳେବର ସମୟରେ ଦାରୁ ଅନ୍ୱେଷଣ ବେଳେ ମା' ମଙ୍ଗଳାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ଏହା ସର୍ବଜନବିଦିତ । କିନ୍ତୁ ଏ କଥା ହୁଏତ କେହି ଜାଣି ନଥିବେ ପ୍ରାଚୀ ଉପତ୍ୟକା ମହାପ୍ରଭୁ ଜଗନ୍ନାଥଙ୍କର ମଧ୍ୟ ଦାରୁକ୍ଷେତ୍ର ଅଟେ । ଆଜି ପର୍ଯ୍ୟନ୍ତ ସବୁଠାରୁ ଅଧିକାଂଶ ଦାରୁ ଚତୁର୍ଦ୍ଧାମୂର୍ତ୍ତି ନିର୍ମାଣ ପାଇଁ ପ୍ରାଚୀ ଉପତ୍ୟକାରୁ ହିଁ ପ୍ରାପ୍ତ ହୋଇଅଛି । ଇତିହାସରୁ ଜଣାଯାଏ ବିଂଶ ଶତାବ୍ଦୀରୁ ଏକବିଂଶ ଶତାବ୍ଦୀର ପ୍ରଥମ ଚରଣ ପର୍ଯ୍ୟନ୍ତ ମହାପ୍ରଭୁଙ୍କର ନବକଳେବର ନୀତି ଅନୁଷ୍ଠିତ ହୋଇଛି ସେଥିମଧ୍ୟରୁ ୧୯୧୨ ମସିହା ଜୁଲାଇ ୧୬ ତାରିଖ ବଳଭଦ୍ରଙ୍କ ଦାରୁ ନିଆଳୀର ହାଟପୋଖରୀ ପାଖରୁ ଏବଂ ଜଗନ୍ନାଥଙ୍କ ଦାରୁ ପ୍ରତାପରୁଦ୍ରପୁର ନୂଆସାହିରୁ ୧୯୩୧ ମସିହା ଜୁଲାଇ ୧୭ ତାରିଖ ସୁଦର୍ଶନଙ୍କ ଦାରୁ କାକଟପୁରର ଦେଉଳୀ ମଠରୁ ସୁଭଦ୍ରାଙ୍କ ଦାରୁ ନିଆଳୀରୁ ଏବଂ ୧୯୫୦ ମସିହା ଜୁଲାଇ ୧୬ ତାରିଖ ସୁଦର୍ଶନ ଦାରୁ ଜଲ୍ଲାରପୁରରୁ ବଳଭଦ୍ରଙ୍କ ଦାରୁ ନୂଆପାଟଣା (ନୂଆହାଟ)ରୁ ସୁଭଦ୍ରାଙ୍କ ଦାରୁ ଦୁର୍ଗେଶ୍ୱର ବାହାରଣାରୁ, ଜଗନ୍ନାଥଙ୍କ ଦାରୁ, କାନପୁରରୁ ୧୯୬୯ ମସିହା ଜୁଲାଇ ୧୬ ତାରିଖ ସୁଦର୍ଶନଙ୍କ ଦାରୁ ବନମାଳୀପୁରସ୍ଥିତ ବଲରାଗ୍ରାମ, ବଳଭଦ୍ରଙ୍କ ଦାରୁ ଭାକରସାହି (ଚାରିପଡାଗଡ)ରୁ, ୧୯୭୭ ଜୁଲାଇ ୧୮ ତାରିଖ ସୁଦର୍ଶନଙ୍କ ଦାରୁ ନିଆଳୀ ନିକଟସ୍ଥ ସିଂହ ସାହି, ବଳଭଦ୍ରଙ୍କ ଦାରୁ ଭୋଗେଶ୍ୱର ଗ୍ରାମ, ୧୯୯୬ ମସିହା ଜୁଲାଇ ୧୭ ତାରିଖ ସୁଦର୍ଶନ ଦାରୁ ମାଧବ ନିକଟସ୍ଥ ପନିମାଳ, ସୁଭଦ୍ରାଙ୍କ ଦାରୁ ମାଳଦା ଗ୍ରାମ । ଗତ ୨୦୧୫ ମସିହାରେ

ଅନୁଷ୍ଠିତ ହୋଇଥିବା ନବକଳେବରରେ ପ୍ରାଚୀ ଅବବାହିକାରୁ ମହାପ୍ରଭୁଙ୍କ ପାଇଁ ଦାରୁଚୟନ ହୋଇ ନାହିଁ ।

ଉତ୍କର୍ଷ କଳାର ଦେଶ ଉତ୍କଳର କଳାସଂସ୍କୃତି, ସାହିତ୍ୟ, ନୌବାଣିଜ୍ୟ, ସ୍ଥାପତ୍ୟ ତା'ର ଆରାଧ୍ୟ ଦେବ ଜଗନ୍ନାଥଙ୍କ ସଂସ୍କୃତିକୁ ମହିମାମଣ୍ଡିତ କରିବାରେ ସମଗ୍ର ପ୍ରାଚୀ ଉପତ୍ୟକାର ଦାନ ଅତୀବ ମହନୀୟ ଅଟେ । କିନ୍ତୁ ସେହି ପ୍ରାଚୀ ନଦୀ ଆଜି ମୃତ ପ୍ରାୟ । କାଳର କରାଳ ଗର୍ଭରେ ସେ ଆଜି ଲୁପ୍ତ ପ୍ରାୟ ହୋଇ ପଡି ରହିଛି କ୍ଷୁଦ୍ର ଜଳଧାରାଟିଏ ହୋଇ । ଚାହିଁ ରହିଛି ତା' ଉତ୍ତର ପିଢିର ଭଗୀରଥମାନଙ୍କୁ ଯେଉଁମାନେ ତା' ଦେହରେ ଭରିଦେବେ ନବ ଜୀବନଟିଏ । ପୁଣି ସେ କୁଳୁ କୁଳୁ ହୋଇ ବୋହିଯିବ ସାଗର ସଙ୍ଗମକୁ ।

**ସହାୟକ ଗ୍ରନ୍ଥସୂଚୀ**

(୧) ଶଶାଙ୍କ ଶେଖର ସାମଲ, ପ୍ରାଚୀନ ଭାରତର ଇତିହାସ, ୨୦୧୬ ।

(୨) ଡାକ୍ତର ରାଧାଚରଣ ପଣ୍ଡା, ପ୍ରାଚୀ ନଦୀର ଐତିହାସିକ ବିଭବ, ୧୯୯୧ ।

(୩) Haribar Panda, History of Odisha, 2014 ö

(୪) ଉତ୍କଳ ପ୍ରସଙ୍ଗ, ଜୁଲାଇ ୨୦୧୫ ।

(୫)Orissa past and present Commemoration Volume of the occasion of the First Viswa Oriya Sammilani, 1992 .

(୬) The Hindu Newspaper, April 8, 2019 .

(୭) ନିଜସ୍ୱ ପର୍ଯ୍ୟବେକ୍ଷଣ ।

ସହକାରୀ ସଂଗ୍ରାହକ
ଓଡିଶା ରାଜ୍ୟ ନୌବାଣିଜ୍ୟ ସଂଗ୍ରହାଳୟ
ଯୋବ୍ରା, କଟକ

## ଶ୍ରଦ୍ଧାଞ୍ଜଳି





**ପ୍ରଖ୍ୟାତ ଶାସ୍ତ୍ରୀୟ କଣ୍ଠଶିଳ୍ପୀ ସୁନନ୍ଦା ପଟ୍ଟନାୟକ**



# ଗଜପତି ଅଞ୍ଚଳ ସଉରା ଜନଜାତିର ଭାଷା: ଏକ ଅନ୍ୱେଷଣ

ସୁଦର୍ଶନ ରଇତ

ଗଜପତି ଜିଲ୍ଲା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କ ନାମାନୁଯାୟୀ ନାମିତ କରାଯାଇଛି । ଯିଏ ପାରଳାଖେମୁଣ୍ଡି ଅଞ୍ଚଳର ପୂର୍ବତନ ରାଜା ସାଏବ୍ ଥିଲେ ଏବଂ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ପରିଚିତ । ଓଡ଼ିଶା ପ୍ରଦେଶକୁ ସ୍ୱତନ୍ତ୍ର କରିବା ଏବଂ ପାରଳାଖେମୁଣ୍ଡି ଅଞ୍ଚଳକୁ ଓଡ଼ିଶାରେ ମିଶ୍ରଣ କରିବା ତାଙ୍କ ଅମୂଲ୍ୟ ଅବଦାନ ଅଟେ । ସେଥିପାଇଁ ଗଜପତି ଜିଲ୍ଲା ଗଂଜାମ ଜିଲ୍ଲାଠାରୁ ଅଲଗା ହୋଇ ନୂତନ ଏକ ଜିଲ୍ଲା ଭାବରେ ଜନ୍ମନେଲା । ପାରଳାଖେମୁଣ୍ଡି ସବ୍‌ଡିଭିଜନ୍ ପୂର୍ବରୁ ଗଂଜାମ ସବ୍‌ଡ଼ିଭିଜନ୍ ଥିଲା କିନ୍ତୁ ବର୍ତ୍ତମାନ ତାହା ଗଜପତି ଜିଲ୍ଲାର ସବ୍‌ଡ଼ିଭିଜନ୍ ଭାବରେ ରହିଅଛି । ଜିଲ୍ଲାର ମୋଟ ୭ଟି ତହସିଲ, ୭ ଗୋଟି ବ୍ଲକ୍, ୧୫୩୩ ଗ୍ରାମ, ୧୨୯ଟି ଗ୍ରାମପଞ୍ଚାୟତ ଏବଂ ୧୧ଟି ପୋଲିସ୍ ଥାନା ରହିଛି । ୩ଗୋଟି ବିଧାନସଭା ନିର୍ବାଚନ ମଣ୍ଡଳୀ ରହିଛି ।

ଭାରତର ଅନୁସୂଚିତ ଜନଜାତି ମାନଚିତ୍ରରେ ଓଡ଼ିଶାର ସ୍ଥାନ ସ୍ୱତନ୍ତ୍ର । ୨୦୧୧ ଜନଗଣନା ଅନୁସାରେ ଗଜପତି ଜିଲ୍ଲାର ସମୁଦାୟ ଆଦିବାସୀ ଜନସଂଖ୍ୟା ହେଉଛି ହାରାହାରି ତିନିଲକ୍ଷ । ପୁରୁଷ ସଂଖ୍ୟା ଏକଲକ୍ଷ ଏକାବନ ହଜାର ନଅଶହ ଦୁଇ (୪୮.୨୪%) ଏବଂ ମହିଳା ସଂଖ୍ୟା ହେଉଛି ୧ଲକ୍ଷ ଏକଷଠି ହଜାର ଆଠଶହ ବାର (୫୧.୫%) । ଓଡ଼ିଶାରେ ବାଷଠି ପ୍ରକାରର ଜନଜାତି ମଧ୍ୟରୁ ସଉରା ଜାତି ଅନ୍ୟତମ । ଏହି ଜାତି ଓଡ଼ିଶା ରାଜ୍ୟ ବ୍ୟତୀତ ଆନ୍ଧ୍ରପ୍ରଦେଶର ପୂର୍ବାଞ୍ଚଳର ଅର୍ଥାତ୍ ଶ୍ରୀକାକୁଲମ୍ ଜିଲ୍ଲା ବିଜୟନଗରମ୍ ଜିଲ୍ଲା ଓ ଗୁଣ୍ଟୁର ଜିଲ୍ଲାରେ ବାସ କରିବାର ଦେଖାଯାଏ । ଓଡ଼ିଶାର ଜନଜାତିମାନଙ୍କ ଭାଷାକୁ ନେଇ ତିନୋଟି ଗୋଷ୍ଠୀରେ ବିଭକ୍ତ କରାଯାଇପାରେ । ଏମାନେ ମୁଣ୍ଡା, ଦ୍ରାବିଡ଼, ଆର୍ଯ୍ୟ ଭାବରେ ପରିଚିତ । ମୁଣ୍ଡା ଭାଷାରେ କଥା କହୁଥିବା ସଂପ୍ରଦାୟ ହେଉଛନ୍ତି ସାନ୍ତାଳୀ, ସଉରା, ମାହାରି, ଓରାଓଁ, ପାରେଙ୍ଗ, ଭୂମିଜ, ହୋ, ଜୁଆଙ୍ଗ, ବିରହୋର, ବଣ୍ଡା, ଡିଡାୟୀ, ଗଦବା, ଖରିଆ । ଦ୍ରାବିଡ଼ ଭାଷା ଅନ୍ତର୍ଗତ ଜାତି ହେଉଛନ୍ତି ଗୋଣ୍ଡୀ, କଣ୍ଡା, କୁଇ, କନ୍ଧ, କିସାନ୍, କୋୟା, କୋଲାମା, ନାରକୀ, ଓଲାରୀ, ପାର୍ଜୀ, ପେଙ୍ଗ, କୁଡ଼ଖ ଇତ୍ୟାଦି । ଆର୍ଯ୍ୟ ଭାଷା ଗୋଷ୍ଠୀ ହେଉଛନ୍ତି ବାଥୁଡ଼ି, ଭୂୟାଁ, କର୍‌ମାଳୀ, ସଉଁତି, ସାଦ୍ରୀ, କନ୍ଧାନ୍, ଭୂମିଆ, ଦେଶିଆ, ଝରିଆ, ଭୂମିଆଁ, ହାଲବି ଇତ୍ୟାଦି ।

ଗଜପତି ଅଞ୍ଚଳର ସଉରା ଭାଷାଗୋଷ୍ଠୀ ପାରଳାଖେମୁଣ୍ଡି ସେରଙ୍ଗ, ପୁଟ୍ଟାସିଂ, ଲାଞ୍ଜିଆ, ଇମାନୀ, କାଶୀନଗର– ସାରଡା ମନେସର୍, ରାୟଗଡ଼, ରାମଗିରି– ଜୁରାଇ, ନୂଆଗଡ଼– ଯାଡୁ, କୁଡମ୍ବା, ରା. ଉଦୟଗିରି– ରାଇକା, ଗୋସାଣି– କାମ୍ପୁ, ଜିରାଙ୍ଗ–ଆର୍ଶିଡ଼୍, ଖଜୁରୀପଦା– ଟାଙ୍କଲା, ଚନ୍ଦ୍ରଗିରି, ମୋହନ, ଅଡ଼ବା– କାନ୍‌ସିଡ଼୍ ସଉରା ପ୍ରଭୃତି ସ୍ଥାନରେ ବସବାସ କରନ୍ତି । ସଉରା ସଂପ୍ରଦାୟ ଲୋକେ ସ୍ୱଭାବରେ ସରଳ, ନିଷ୍କପଟ, ନିର୍ଭୀକ, ସ୍ପଷ୍ଟବାଦୀ, ସମାଜପ୍ରାଣ, ପରମ୍ପରାଧର୍ମୀ, ସତ୍ୟବାଦୀ, ଶାନ୍ତ, ଲଜ୍ଜାଶୀଳ ଓ ପରିଶ୍ରମୀ । ସେମାନଙ୍କ ଜୀବନଯାପନ ଶୈଳୀ ନିରାଡ଼ମ୍ବର । ସେମାନେ ସରଳ ହେଲେବି ସ୍ୱାଭିମାନୀ । କୌଣସି ଅନ୍ୟାୟକୁ ସେମାନେ

ବରଦାସ୍ତ କରନ୍ତି ନାହିଁ । ନିଜ ଭାଷା ଓ ସଂସ୍କୃତି ପ୍ରତି ସେମାନେ ସଚେତନ । ନିଜର ଦୁଃଖ କାହାଣୀକୁ ଅନ୍ୟ ଆଗରେ ପ୍ରକାଶ କରିବାକୁ ସେମାନେ ବୀତସ୍ପୃହ । ଛାତିକୁ ପଥର କରି ସେମାନେ ସବୁ ଦୁଃଖକୁ ସହ୍ୟ କରିଯାଆନ୍ତି । ଆଧୁନିକ ସଭ୍ୟତାର ପରିଧି ବାହାରେ ପ୍ରକୃତି କୋଳରେ ସମସ୍ତ ପରିସ୍ଥିତିର ମୁକାବିଲା କରି ଅହରହ ଜୀବନ ସଂଗ୍ରାମ କରୁଥିବା ଏହି ଅମୃତର ସନ୍ତାନମାନେ ଜୀବନର ନିଷ୍ଠୁର ବାସ୍ତବତାକୁ ଅତି ସହଜରେ ଓ ନିର୍ବିକାର ଭାବରେ ଗ୍ରହଣ କରିନେଇଥାନ୍ତି । ସମସ୍ତ ଦୁଃଖ, କଷ୍ଟ, ଅଭାବ ଓ ଅନଟନ ଭିତରେ ବି ସଉରା ଜାତି ସୁଖୀ ।

**ସଉରା ଜନଜାତିର ଭାଷା–** ମୁଣ୍ଡା ଭାଷା ପରିବାରର । ସଉରା ସଂପ୍ରଦାୟର କଥିତ ଭାଷା ହେଉଛି 'ସରା' । ସଉରାମାନଙ୍କୁ ଅତି ଆପଣାର କରିବାକୁ ହେଲେ ତାହାର ଏକମାତ୍ର ମାଧ୍ୟମ ହେଉଛି ଭାଷା । ସେମାନଙ୍କ ଭାଷାରେ ଜ୍ଞାନାର୍ଜନ କରିଦେଲେ ଅତି ସହଜରେ ସେମାନଙ୍କୁ ଆପଣାର କରିହେବ । ସଉରା ଜନଜାତିର କଥିତ ଭାଷା ସମ୍ବନ୍ଧରେ ନିମ୍ନରେ କିୟତ୍‌ମାତ୍ର ଆଲୋଚନା କରାଯାଇଛି ।

**ଓଡ଼ିଆ ଭାଷାର ପ୍ରତିଶବ୍ଦ ସଉରା ଭାଷା:**

**ପରିବାର**

ବାପା– ଆବା (ୱାଙ୍ଗ୍), ମା– ୟାଙ୍ଗ୍, ଭାଇ– ବୁଞ୍ଜାଁଙ୍ଗ୍, ଭଉଣୀ– ତନାନ୍, ବଡ଼ଭାଇ– କାକୁଙ୍ଗ୍, ବଡ଼ଭଉଣୀ– କାକିଙ୍ଗ୍, ସାନଭଉଣୀ– ୟାୟିଙ୍ଗ୍, ପୁଅ– ଅଅନ, ଝିଅ– ଡାଙ୍ଗିଡ଼ିଅନ୍, ମାମୁ– ମାମୁଙ୍ଗ୍, ମାଇ– ନାନିଙ୍ଗ୍, ଅଜା– ଜୁଜୁଙ୍ଗ୍, ଆଈ–ୟୁୟୁଙ୍ଗ୍, ସ୍ୱାମୀ–ତାନଙ୍ଗ୍‌ବା, ସ୍ତ୍ରୀ–ତୁଡୁବଇ, ଦାଦା– ଡାଡ଼ିଙ୍ଗ୍, ଖୁଡ଼ି–ୟାୟାଙ୍, ଭିଣୋଇ– ବାଉଙ୍ଗ୍, ବୋହୂ– କଇନ୍, ଶଶୁର– କୁଞ୍ଜାଁର୍, ଶାଶୁ– କିନାର୍, ଶଳା–ଇରିର୍‌ସିଜ୍, ଶାଳୀ–ଇରିର୍‌ବଇ, ଭଣଜା– ଆମନ୍‌ସିଜ, ଭାଣିଜୀ–ଆମନ୍‌ସିଲ୍, ଭାଉଜ– ବୁନିଙ୍ଗ୍ ।

**ଶରୀର ଅଙ୍ଗ ବିଶେଷ**

ମୁଣ୍ଡ– ବଅବ୍, ଚୁଟି– ଉ–ଉ, ଆଖି–ମଅଡ୍, କାନ– ଲୁଉଡ୍, ନାକ– ମୁଉ, ପାଟି– ତଅଡ୍, ଦାନ୍ତ– ଜିଇ–ଇ, ଜିଭ–ଆଲାଙ୍, ବେକ–ସାଙ୍କା, ହାତ–ସିଇ–ର୍, ଗୋଡ଼– ଜି–ଇଙ୍ଗ୍, ଆଙ୍ଗୁଠି– ଅଣ୍ଡେର୍‌ସି, ନଖ– ଆକାର୍‌ସି, ଅଣ୍ଟା– ଡ଼ିଆ, ପିଚା– ସାମ୍ବି, ଆଣ୍ଠୁ– ମାଣ୍ଡାଡ଼ି, ଗୋଇଠି– କୁଙ୍ଗ୍‌ସି, ପିଠି– କାଣ୍ଟୁଙ୍ଗ୍ ।

**ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ**

ଟଙ୍କା– ତାଙ୍କା, ଲୁଗା– ସିଂଡ୍ରି, ଛତା– ସାତା, ଟୋପି– ତୁପି, ଚପଲ– ସପଲ

**କୃଷି ଉପକରଣ**

ଜମି– ଜାନଙ୍ଗ୍, ମାଟି– ଲାବ୍‌ଅ, ଖତ– କତ, ଲଙ୍ଗଳ– ଇର୍‌ତୁବ୍, ଦାଆ– କାଡ଼ାତି, ଶାବଳ–ଲୁଆଙ୍ଗ୍‌ଡାଙ୍ଗ୍, କୋଡ଼ି– ଗୁଡ଼ିଲାଙ୍ଗ୍, ଜୁଆଳି– ରାଅଙ୍ଗ୍ ।

**ବୃକ୍ଷଲତା ଓ ଫୁଲ ଫଳ**

ମହୁଲ–ଆବାଆ, ଫୁଲ– ତାରବା, ଗେଣ୍ଡୁଫୁଲ– ସାରରୁଙ୍ଗ୍‌ତାର୍, କନିଅର ଫୁଲ– ରାଗାଡ଼ଉବ୍‌ତାର୍, କଇଁଫୁଲ– ବାଣ୍ଡାତାର୍, ପଦ୍ମ– ତୁମ୍ପେଡ଼ାତାର୍, ଦୁଦୁରା– କାନ୍‌ଡୁଡୁରାତାର୍, ମନ୍ଦାର– ମଣ୍ଡାରତାର୍, ସୂର୍ଯ୍ୟମୁଖୀ– ଡାଙ୍ଗ୍‌ୟୁଙ୍ଗ୍‌ତାର୍, ଗୋଲାପ–ଗୋଲାପୀତାର୍, ଟଗର– ତଗରତାର୍, ଚମ୍ପା– ସମ୍ପାତାର୍, ଆମ୍ବ– ଉଡ଼ା, କମଳା– କମ୍‌ଲା, କଦଳୀ– କିନ୍ତେ, ପଇଡ଼– ପାୟାଡ଼ି, ତେନ୍ତୁଳି– ତିତିନ୍, କାଜୁ– ଗାନିଙ୍ଗ୍‌ଲଇ, ସପୁରୀ– ଲାଙ୍କାପାଡ଼ା, ପିଜୁଳି– ଜିଲକା, କୁସୁମକୋଳି– ବାଙ୍ଗରୁ, ଡିମ୍ବିରିଫଳ– ଲୁଆଡ଼, ଆଖୁ–ଆକୁ, ସଲପ ଫଳ– ଆଲିକ, କାକୁଡ଼ି– ଏଙ୍ଗ୍‌ରା, ବୋଇତାଳୁ– ଆତୁଙ୍ଗ୍, କାନ୍ଦୁଲ– ରଗ, ଆଳୁ– ଆଲୁଗାୟ, ଡାଳିମ୍ବ– ଡାଲିମ୍ବ, ପଣସ–ପାଡ଼ସା, ମକା– ଜନ୍ନା, ସାରୁ–ଗାରୁଗାୟ, କଲରା– ଆସାଙ୍ଗାବ୍, ବାଇଗଣ– ଆଣ୍ଡାରାଇ, ଟମାଟୋ– ତମାତ, ଜହ୍ନି–କୁସାଲି, ଭେଣ୍ଡି– ବେଣ୍ଡି, ପିଆଜ–ଆନାସୁଡ଼ା, ଡଙ୍କା– କୋଉ, ଗଛ–ଆରା, ଘାସ– ଆଗାବ୍, ପତ୍ର– ଅଲା, ମଞ୍ଜି– ଆବାଇ ।

**ଗୃହ ଉପକରଣ**

ବାଲି–ଲକିଜ୍, ପଥର– ଆରେଙ୍ଗ୍, କାଠ– ଆଙ୍ଗାଲ, କବାଟ–ସାନାଙ୍, କଂସା– ଡୁଗୁଡୁ, ଥାଳି–ମାଣ୍ଡି, ଗ୍ଲାସ୍– ଗିଲାସ, ହାଣ୍ଡି– ଡାଙ୍କି, ଚଟୁ–ସାଟୁଆ, ପନିକି– ପନ୍‌କି, କୁରାଡ଼ି– ଏନ୍‌ଜୁମ୍ ।

### ଜଳରେ ବାସ କରୁଥିବା ଜୀବ, କୀଟ, ପ୍ରାଣୀ

ବେଙ୍ଗ– କାଣ୍ଟୁଡ୍, କଇଁଚ– କୁଲୁ, କଙ୍କଡ଼ା– କ୍ବାଡ୍, କୁମ୍ଭୀର– ସିମର୍, ଜଳହସ୍ତୀ– ରା–ଆକିଡ୍, ଶାମୁକା– ଗୁନ୍‌ଲୁଜାଙ୍ଗ୍, ଶଙ୍ଖ–ଗୁନ୍‌ଲୁପେଡ୍, ସାପ–ଜାଆଡ୍, ମାଛ– ଆୟ ।

### ତରଳ ମାପ ଅଣମାପକ

ବ–ଗ–ଅଲ୍– ପ୍ରାୟ ୧୦୦ ମିଲିଗ୍ରାମ୍, ବ–କଉ– ପ୍ରାୟ ୫୦୦ ମିଲିଗ୍ରାମ୍, ବ ମାୟାରି– ପ୍ରାୟ ୧ ଲିଟର, ବ କୁଡ଼ାତା– ପ୍ରାୟ ୮/୧୦ ଲିଟର, ବ ଗ୍ରିଣ୍ଡା– ପ୍ରାୟ ୨୦/୨୫ ଲିଟର, ବ ଡାରିଙ୍ଗ୍ବାସେଙ୍ଗ୍– ପ୍ରାୟ ୪୦/୫୦ ଲିଟର ।

### ରଙ୍ଗ (ର–ଅଙ୍ଗ)

ଲାଲ– ଜେ–ଏ, କଳା– ୟାଗା, ଧଳା– ତା– ଆର୍/ପାଲୁ, ଶାଗୁଆ– କୁଲୁଇ, ହଳଦିଆ– ସାଙ୍ଗ୍‌ସାଙ୍ଗ୍, ବାଇଗଣିଆ– ଜେ–ଏବାଇଜ୍, ପାଣ୍ଡୁବର୍ଣ୍ଣ– ପୁରସିଲ୍‌କାଡୁ, ଗାଢ଼ ହଳଦିଆ– ରୁମ୍‌ସାଙ୍ଗ୍, ନାରଙ୍ଗି–ଜେମାଙ୍ଗ୍, ମାଟିଆବର୍ଣ୍ଣ– ଏଡ଼େମ୍ବଡ଼ ।

### ସଂଖ୍ୟା (ଡାନିସାମ୍)

ଏକ–ଆବଇ, ଦୁଇ– ବାଗୁ, ତିନି–ୟାଗି, ଚାରି– ଉନ୍‌ଜି, ପାଞ୍ଚ–ମନଲଇ, ଛଅ– ତୁଡ୍‌ରୁ, ସାତ–ଗୁଲ୍‌ଜି, ଆଠ– ତାମ୍‌ଜି, ନଅ–ତିନ୍‌ଜି, ଦଶ–ଗାଲଜି, ଏଗାର– ଗାଲ୍‌ମୁଇ, ବାର– ମିୟଗଲ୍ ।

### ମାସର ନାମ (ଆଙ୍ଗାଇ)

ବୈଶାଖ– ବଶାଖ, ଜ୍ୟେଷ୍ଠ– ଡେସ୍ତ, ଆଷାଢ଼– ଆସାଢ଼ା, ଶ୍ରାବଣ– ସିରାବନ, ଭାଦ୍ରବ– ବୁଡୁ, ଆଶ୍ୱିନ– ଅଶିଣ, କାର୍ତ୍ତିକ– କାର୍ତ୍ତିକା, ମାର୍ଗଶିର– ମଙ୍ଗଶିରା, ପୌଷ– ପୁସା, ମାଘ– ମାଗା, ଫାଲଗୁନ– ପଗୁନ୍, ଚୈତ୍ର– ସଇତ ।

### ଖାଦ୍ୟ (ଗାନାଗା)

ଭାତ– ଡାରଇ, ଡାଲି– ମାରାଇନା, ତରକାରୀ– ତାନଙ୍ଗ୍‌ଗାଲ୍, ଶାଗ–ଉଆବ୍, ମାଂସ– ଜେଲୁ, ବାଇଗଣ– ଆଣ୍ଡାରାଇ, ମୂଳା– ମୂଳାଗାୟ, ମରିଚ– ମାରିସା, ଲୁଣ– ବାସିଡ୍, ତେଲ– ମିଞ୍ଜିଲ, ସୋରିଷ ତେଲ– ସୁର୍‌ସୁବଞ୍ଜିଲ୍, ରସୁଣ–ରସୁନ, ପିଠା– ପିତା ।

*(କେତେକ ଶବ୍ଦ ଓଡ଼ିଆ ଭାଷାର ସାମଞ୍ଜସ୍ୟ ଅଛି)*

### (ଖ) କ୍ରିୟାର ପ୍ରୟୋଗ

### ବର୍ତ୍ତମାନ କାଳ (କାନି ଆୟମ୍)

| ଏକବଚନ | ବହୁବଚନ |
|---|---|
| ପ୍ରଥମା– ମୁଁ ଯାଏ– ଞେଁନ୍ ୟିର୍‌ତେ | ଆମ୍ଭେମାନେ ଯାଉ– ଆମ୍ବିନ୍ ଆୟିର୍‌ତେ |
| ଦ୍ୱିତୀୟା– ତୁମେ ଯାଅ– ଆମନ୍ ୟିରା | ତୁମ୍ଭେମାନେ ଯାଅ– ଆମ୍ବିନ୍‌ଜି ୟିର୍‌ବା |
| ତୃତୀୟା– ସେ ଯାଏ– ଆନିନ୍ ୟିର୍‌ତେ | ସେମାନେ ଯାଆନ୍ତି– ଆନିଞ୍ଜି ୟିର୍‌ତିନ୍‌ଜି |

### ଅତୀତ କାଳ (ଆୟିରେନ୍ ଆୟମ୍)

| ଏକବଚନ | ବହୁବଚନ |
|---|---|
| ପ୍ରଥମା– ମୁଁ ଗଲି– ଞେଁନ୍ ଇୟଲେ | ଆମ୍ଭେମାନେ ଗଲୁ– ଆନ୍‌ଲେନ୍ ଆୟିରେ |
| ଦ୍ୱିତୀୟା– ତୁମେ ଗଲ– ଆମନ୍ ୟିର୍‌ରେ | ତୁମ୍ଭେମାନେ ଗଲ– ଆମ୍ବିନ୍ ଆୟିରେ |
| ତୃତୀୟା– ସେ ଗଲା– ଆନିନ୍ ୟିର୍‌ରେ | ସେମାନେ ଗଲେ– ଆନିଞ୍ଜି ୟିର୍‌ଜି |

### ଭବିଷ୍ୟତ କାଳ (ଆୟିତାଞ୍ଜେଁନ୍ ଆୟମ୍)

| ଏକବଚନ | ବହୁବଚନ |
|---|---|
| ପ୍ରଥମା– ମୁଁ ଯିବି – ଞ୍ଜେଁନ୍ ୟିର୍ତେ | ଆମ୍ଭେମାନେ ଯିବୁ– ଆନ୍‌ଲେନ୍ ଆୟିର୍ତେ |
| ଦ୍ୱିତୀୟା– ତୁମେ ଯିବ– ଆନିନ୍ ୟିର୍ତେ | ତୁମ୍ଭେମାନେ ଯିବ– ଆମ୍ଭିନ୍ ଆୟିର୍ତେ |
| ତୃତୀୟା– ସେ ଯିବେ– ଆନିନ୍ ୟିର୍ତେ | ସେମାନେ ଯିବେ– ଆନିଞ୍ଜି ୟିର୍ତଜି । |

ସଉରା ବ୍ୟବହାରିକ ବ୍ୟାକରଣରେ ଅନେକ ସମୟରେ ଭବିଷ୍ୟତ ଓ ବର୍ତ୍ତମାନ କାଳ ଏକ ରୂପରେ ଉଚ୍ଚାରିତ ହୁଏ । କିନ୍ତୁ କହିବା ଲୋକର ଭାବ ବିନିମୟ ଉପରେ ତାହା ବୁଝାଯାଇଥାଏ ।

ସଉରା ଜନଜାତିର 'ସରା' ଭାଷା ଏବେ କଥିତ ଭାଷାର ସମ୍ମାନରେ ହିଁ ବଞ୍ଚିରହିଛି । ଆଧୁନିକ ସଭ୍ୟ ସମାଜର ପ୍ରଭାବରେ ପ୍ରଭାବିତ ହେଲେ ସୁଦ୍ଧା ନିଜ ଭାଷା ଏମାନେ ଛାଡ଼ିନାହାନ୍ତି । ଲୋକମୁଖରେ ପ୍ରଚଳିତ ଏହି ଭାଷାର ଅନ୍ୱେଷଣ ଆମର କର୍ତ୍ତବ୍ୟ । କାରଣ, ଏହି ଭାଷାଗୁଡ଼ିକରେ ହିଁ ମୌଳିକ ଓଡ଼ିଆଭାଷା ଆତ୍ମଗୋପନ କରି ରହିଛି । ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକୃତ କିନ୍ତୁ ଭବିଷ୍ୟତ ଚିନ୍ତା ଆମ ପାଇଁ ଏକ ଆହ୍ୱାନ । ସଂଗ୍ରହ ଓ ଗବେଷଣାର ଅଭାବ ହେତୁ ଗିରି କନ୍ଦରରେ ହଜିଯାଉଥିବା ଏହାର ମନମତାଣିଆ ଗୀତ, ଭାଷା ଓ ସଂସ୍କୃତିକୁ ଖୋଜିବାର ଉଦ୍ୟମ ବାଞ୍ଛନୀୟ । ଏମାନଙ୍କ ଜୀବନଧାରା ଓ ସାମାଜିକ ଚଳଣି ଅନୁଧ୍ୟାନ କଲେ ମାନବର ସାମଗ୍ରିକ ଚେତନା ତଥା ମାନବୀୟ ବିଚାରବୋଧର ରସ ସୃଷ୍ଟି ହୁଏ । ଭାଷା ଦୃଷ୍ଟିରୁ ଏହି ଆଦିବାସୀମାନଙ୍କର ମଧ୍ୟରେ ପାର୍ଥକ୍ୟ ହେଲେ ସୁଦ୍ଧା ଭାବ ମୌଳିକତା ପ୍ରାୟ ସମାନ କହିଲେ ଚଳେ । ସଭ୍ୟ ସାମାଜିକ ମଣିଷମାନଙ୍କ ସହିତ ସଂପର୍କ ସ୍ଥାପନ ଓ ଅରଣ୍ୟ ପ୍ରଦେଶର ନୈସର୍ଗିକ ସୁଷମାର ସୁରକ୍ଷା ପାଇଁ ଏମାନେ ସଦା ଜାଗ୍ରତ ପ୍ରହରୀ । ନୃତ୍ୟ, ଗୀତ ପ୍ରିୟ ଏ ଜାତି ନିଜ ଭାଷା ଓ ସଂସ୍କୃତି ପୂଜକ । ଏମାନଙ୍କ ଭାଷା ସଂସ୍କୃତିକୁ ଜାଣିବାକୁ ହେଲେ ପ୍ରଥମେ ସେମାନଙ୍କର ଭାଷାକୁ ଜାଣିବା ନିତାନ୍ତ ଆବଶ୍ୟକ ।

### ସହାୟକ ଗ୍ରନ୍ଥସୂଚୀ


୧. http//www.gajapati.nic.in

୨. ମହାପାତ୍ର, ଡ. ଖଗେଶ୍ୱରଃ ମୁଖା ନଥିବା ମଣିଷ, ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ–୨, ୧୯୯୫, ପୃ. ୧୯


### ସଉରା ଭାଷା ସଂପର୍କରେ ତଥ୍ୟ ପ୍ରଦାନକାରୀ ବ୍ୟକ୍ତି

୩. ଇଶ୍ମାଏଲ୍ ଭୂୟାଁ, ଗ୍ରାମ– ବୁରିପଦର, ବୃତ୍ତି– ଶିକ୍ଷକ, ବୟସ–୩୬, ତା. ୦୫.୦୧.୨୦୧୯

୪. ଡିମି ରଇତ, ଗ୍ରାମ– ବୁରିପଦର, ବୃତ୍ତି–ଚାଷୀ, ବୟସ–୪୪, ତା. ୦୨.୦୨.୨୦୧୯

୫. ସୁମ୍ଡା ଶବର, ଗ୍ରାମ–କେଶରୀଗୁଡ଼ା, ବୃତ୍ତି– ପାଷ୍ଟର୍, ବୟସ–୬୩, ତା. ୦୪.୦୬.୨୦୧୯


ଗବେଷକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଂଜବିହାର
ବ୍ରହ୍ମପୁର–୭୬୦୦୦୭




# ଶାମ୍ବ ଦଶମୀର ବୈଶିଷ୍ଟ୍ୟ

ପଣ୍ଡିତ ରାମକୃଷ୍ଣ ମିଶ୍ର

'ଆଦିତ୍ୟହୃଦୟ ସ୍ତୋତ୍ରଂ'ରୁ ଜଣାଯାଏ ଯେ, ବ୍ରହ୍ମା, ବିଷ୍ଣୁ, ଶିବ, ଅଗ୍ନି ଓ ବାୟୁ ସମେତ ସକଳ ଦେବଦେବୀ ସୂର୍ଯ୍ୟ ଦେବତାଙ୍କର ଏକ ଅଂଶ ଅଟନ୍ତି ଏବଂ ଅଭିନ୍ନ । ଶାମ୍ବ ପୁରାଣ ଅନୁସାରେ ସୂର୍ଯ୍ୟଦେବତା ଶ୍ୱେତଦ୍ୱୀପରେ ବିଷ୍ଣୁ, କୁଶଦ୍ୱୀପରେ ମହେଶ୍ୱର, ପୁଷ୍କରଦ୍ୱୀପରେ ବ୍ରହ୍ମା ଓ ଶାକଦ୍ୱୀପରେ ଭାସ୍କର ନାମରେ ପୂଜା ପାଉଥିଲେ । ଶାକଦ୍ୱୀପ (ମିଶର ଦେଶ) ବ୍ରାହ୍ମଣମାନଙ୍କ ଦ୍ୱାରା ଭାରତରେ ସୂର୍ଯ୍ୟମୂର୍ତ୍ତି ପୂଜାର ବିଧାନ ପ୍ରଚଳିତ ହୋଇଛି । ସୂର୍ଯ୍ୟଙ୍କର ପ୍ରଥମ କିରଣ କୋଣାର୍କଠାରେ ଭୂମି ସ୍ପର୍ଶ କରୁଥିବାରୁ ଏଠାରେ ସୂର୍ଯ୍ୟ ଉପାସନାର ବିଶେଷତ୍ୱ ରହିଛି । ସୂର୍ଯ୍ୟ ଉପାସନା, ଶାମ୍ବପୁରାଣ ଓ ସୂର୍ଯ୍ୟପୁରାଣ ପାଠରେ ଶତ ଅଶ୍ୱମେଧ ଯଜ୍ଞ ଫଳ ମିଳେ । ପ୍ରତ୍ୟହ ସ୍ନାନ ପରେ ସୂର୍ଯ୍ୟଙ୍କୁ ଜଳଦାନ କରାଯାଉଥିଲେ ହେଁ ଶାମ୍ବଦଶମୀରେ ସୂର୍ଯ୍ୟ ଉପାସନାର ଖ୍ୟାତି ରହିଛି । ପୂର୍ବେ ଚନ୍ଦ୍ରଭାଗା ସ୍ନାନ ସମୟରେ କୋଣାର୍କ ସୂର୍ଯ୍ୟ ମନ୍ଦିରରୁ ସୂର୍ଯ୍ୟଙ୍କର ବିଜେ ପ୍ରତିମା ରଥାରୋହଣ ପୂର୍ବକ ଚନ୍ଦ୍ରଭାଗା ତୀର୍ଥକୁ ଯାତ୍ରା କରୁଥିଲେ । ଏହା ସୌରଥ ଯାତ୍ରା ବା ସୌର ଗୁଣ୍ଡିଚା ନାମରେ ପ୍ରଖ୍ୟାତ । ଏହି ରଥଯାତ୍ରାରେ କୋଣାର୍କ କ୍ଷେତ୍ର ମଧ୍ୟରେ ପ୍ରତିଷ୍ଠିତ ଅଷ୍ଟଶମ୍ଭୁ ଓ ଅଷ୍ଟଚଣ୍ଡୀ ମଧ୍ୟ ଯାତ୍ରା କରୁଥିଲେ । ପୂର୍ବ ପରମ୍ପରାକ୍ରମେ କୋଣାର୍କରେ ଅଦ୍ୟାବଧି ସ୍ନାନ ଓ ସୂର୍ଯ୍ୟ ପୂଜା ଅବ୍ୟାହତ ରହିଛି ।

ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ପ୍ରାଗ୍ ଜ୍ୟୋତିଷପୁରର ରାଜା ନରକାସୁରକୁ ସୁଦର୍ଶନ ଚକ୍ରରେ ବଧ କରି ଷୋଳ ସହସ୍ର ରମଣୀଙ୍କୁ ବନ୍ଧନମୁକ୍ତ କରିଥିଲେ । ଶ୍ରୀକୃଷ୍ଣ ଓ ଜାମ୍ବବତୀଙ୍କ ପୁତ୍ର ଶାମ୍ବ ଅତ୍ୟନ୍ତ ରୂପବାନ ଥିଲେ । ଶାମ୍ବ ଥରେ ପୁଷ୍ପବାଟିକା ମଧ୍ୟରେ ପତ୍ନୀ ଲକ୍ଷ୍ମଣା ଓ କାନନ ବିହାରିଣୀ ସହଚରୀମାନଙ୍କ ମଧ୍ୟରୁ ଜଣଙ୍କର ମଦିର ଚକ୍ଷୁରେ ଅଭିଭୂତ ହୋଇପଡ଼ିଲେ । ନାରଦ ସେଠାରେ ପହଞ୍ଚି ଥିଲେ ମଧ୍ୟ ତାଙ୍କୁ ସମ୍ମାନ ଜଣାଇଲେ ନାହିଁ। ନାରଦ ଶାମ୍ବଙ୍କଠାରୁ



ସମ୍ମାନ ନପାଇ ଶ୍ରୀକୃଷ୍ଣଙ୍କୁ ଜଣାଇଲେ ମଧ୍ୟ ଶ୍ରୀକୃଷ୍ଣ ଏହା ବିଶ୍ୱାସ କଲେ ନାହିଁ। ନାରଦ ଶାମ୍ବଙ୍କ ଶାସ୍ତି ବିଧାନ ପାଇଁ ଅପେକ୍ଷାରେ ଥିଲେ । ଦିନେ ଶ୍ରୀକୃଷ୍ଣ ରୈବତ ପ୍ରମୋଦ କାନନରେ ତାଙ୍କର ଅଷ୍ଟପାଟ୍ଟମହିଷୀ ଓ ଷୋଳସହସ୍ର ରମଣୀମାନଙ୍କ ସହିତ ଜଳକ୍ରୀଡ଼ା ସୁଖରେ ମଗ୍ନ ଥିଲେ । ସେଠାକୁ ଅନ୍ୟ କାହାର ପ୍ରବେଶ ନଥିଲା । ନାରଦ ଏହି ସୁଯୋଗରେ ଶ୍ରୀକୃଷ୍ଣ ସ୍ମରଣ କରୁଛନ୍ତି କହି ଶାମ୍ବଙ୍କୁ

ସେଠାରେ ଉପସ୍ଥିତ କରାଇଲେ । ସେହି ଷୋଳସହସ୍ର ରମଣୀମାନେ ଶ୍ରୀକୃଷ୍ଣଙ୍କ ଉପସ୍ଥିତି ସତ୍ତ୍ୱେ ଶାମ୍ବଙ୍କୁ ଦେଖି ନାରଦଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ଯାଇ ଉତ୍ସାହିତ ହୋଇ ଶାମ୍ବଙ୍କୁ ଜଳକ୍ରୀଡ଼ାରେ ଥିବା ନଗ୍ନ ଯୌବନ ଦର୍ଶନ କରାଇଲେ । ଶ୍ରୀକୃଷ୍ଣ କ୍ରୋଧିତ ହୋଇ ତାଙ୍କର ଦେହତ୍ୟାଗ ବା ମହାପ୍ରୟାଣ ପରେ ସେହି ରମଣୀମାନେ ତସ୍କରମାନଙ୍କ ଦ୍ୱାରା ଲାଞ୍ଛିତ ଓ ନିପୀଡ଼ିତ ହେବାର ଅଭିଶାପ ଦେଲେ ଏବଂ ଶାମ୍ବଙ୍କୁ କୁଷ୍ଠ ରୋଗାକ୍ରାନ୍ତ ହେବାର ଅଭିଶାପ ଦେଲେ । ଶାମ୍ବ ଅଭିଶାପରୁ ମୁକ୍ତି ପାଇଁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । କୁଷ୍ଠରୋଗରୁ ଉପଶମ ପାଇଁ ନାରଦଙ୍କ ପରାମର୍ଶ ନେବାକୁ ଶ୍ରୀକୃଷ୍ଣ ଶାମ୍ବଙ୍କୁ କହିଲେ ।

ନାରଦଙ୍କ ପରାମର୍ଶରେ ଶାମ୍ବ ଚନ୍ଦ୍ରଭାଗା ନଦୀ ତଟରେ ମୈତ୍ରେୟ (ମିତ୍ର) ବନରେ ସୂର୍ଯ୍ୟଙ୍କ କ୍ଷେତ୍ରରେ ତପସ୍ୟା କରି ସୂର୍ଯ୍ୟଙ୍କୁ ପୂଜା କଲେ । ଶାମ୍ବ ସୂର୍ଯ୍ୟଙ୍କ ନିର୍ଦ୍ଦେଶରେ ଚନ୍ଦ୍ରଭାଗା ନଦୀ ଗର୍ଭରୁ ସୂର୍ଯ୍ୟଙ୍କର ଏକ ମଣିବିଗ୍ରହ ପ୍ରାପ୍ତ ହୋଇ ଚନ୍ଦ୍ରଭାଗା ନଦୀ ତୀରରେ ଗୋଟିଏ ମନ୍ଦିର ନିର୍ମାଣ କରି ମାଘ ସପ୍ତମୀ ତିଥିରେ ସେହି ସୂର୍ଯ୍ୟମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିଥିଲେ । ଶାକଦ୍ୱୀପରୁ ବ୍ରାହ୍ମଣ ଅଣାଇ ପୌଷ ଶୁକ୍ଳପକ୍ଷ ଦଶମୀ ତିଥିରେ ସୂର୍ଯ୍ୟଙ୍କୁ ପୂଜାକରି ତାଙ୍କର ବରଦାନରେ ଶାମ୍ବ କୁଷ୍ଠରୋଗରୁ ମୁକ୍ତ ହୋଇଥିଲେ । ତାଙ୍କ ନାମାନୁସାରେ ଏହା ଶାମ୍ବଦଶମୀ ପର୍ବ ଭାବରେ ପାଳନ କରାଯାଉଛି । ଋକ୍‌ବେଦରେ ସୂର୍ଯ୍ୟଙ୍କର ଜନ୍ମସ୍ଥାନ କଳିଙ୍ଗ ବୋଲି ଉଲ୍ଲେଖ ଅଛି । ସୂର୍ଯ୍ୟଙ୍କର ପତ୍ନୀ ସଂଜ୍ଞା ପୂର୍ବ ଉପକୂଳରେ ପଦ୍ମିନୀ ରୂପ ଧାରଣ କରି ଯେଉଁ ସ୍ଥାନରେ ଆବିର୍ଭୂତା ହୋଇଥିଲେ, ତାହା ପଦ୍ମକ୍ଷେତ୍ର ବା ସୂର୍ଯ୍ୟକ୍ଷେତ୍ର କୋଣାର୍କ ନାମରେ ପ୍ରସିଦ୍ଧି ଲାଭ କରିଛି । ସୂର୍ଯ୍ୟଙ୍କର ଏକ ନାମ କୋଣାଦିତ୍ୟ ଥିଲା ।

ମହର୍ଷି ନାରଦ ମିତ୍ରବନକୁ ଆସି ମନ୍ଦିରକୁ କେନ୍ଦ୍ର କରି ଶାମ୍ବପୁର ନଗରୀ ପ୍ରତିଷ୍ଠିତ ହୋଇଥିବା ଦେଖିଲେ ଶାମ୍ବ ନାରଦଙ୍କୁ ଅଭ୍ୟର୍ଥନା କଲେ। ମହର୍ଷି ମୁଗ୍ଧହୋଇ ଶାମ୍ବଙ୍କ ପ୍ରତିଷ୍ଠିତ ଗ୍ରହରାଜ ସୂର୍ଯ୍ୟଙ୍କୁ ପୂଜାର୍ଚ୍ଚନା କରିବାକୁ ଇଚ୍ଛା କଲେ। ଶାମ୍ବ ପୂଜା ଉପକରଣ ନେଇ ମହର୍ଷିଙ୍କ ସାଙ୍ଗରେ ଗଲେ। ମହର୍ଷି ଚନ୍ଦ୍ରଭାଗାର ଜଳ ଓ ଫୁଲ ପତ୍ରରେ କଳ୍ପବୃକ୍ଷ ମୂର୍ତ୍ତି ଗ୍ରହରାଜ ଶାମ୍ବାଦିତ୍ୟଙ୍କୁ ପୂଜା କଲେ। ଶାମ୍ବାଦିତ୍ୟ ନାମ ଶୁଣି ଶାମ୍ବଙ୍କର ଦୁଇଚକ୍ଷୁ ଲୋତକ ପୂର୍ଣ୍ଣ ହେଲା । ନାରଦ ଦୁଇ ଅଶ୍ରୁ ପୂର୍ଣ୍ଣ ଚକ୍ଷୁରେ କହିଥିଲେ ଆଜିଠାରୁ ଏହି ବିଗ୍ରହ ଶାମ୍ବାଦିତ୍ୟ ନାମରେ ପୂଜା ପାଇବେ ।

ଏ.ଏଲ୍‌-୫୩, ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର



# ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ସୁବର୍ଣ୍ଣ ମୁଖଶାଳା

**ପ୍ରଫୁଲ୍ଲ କୁମାର ଦାସ**

ସମଗ୍ର ଭାରତୀୟ ସାହିତ୍ୟ ଆକାଶରେ ଓଡ଼ିଆ ସାହିତ୍ୟର ତୁଳନା ନାହିଁ । ଏ ଜାତି କଲମ ଧରିବାରେ ଯେପରି ସୁଖ୍ୟାତି ଅର୍ଜନ କରିଛନ୍ତି, ସେପରି ବୀର ପାଇକର ରକ୍ତ ରଞ୍ଜିତ ଓ ସାଧବ ପୁଅର ଦୁଃସାହସ ବ୍ୟଞ୍ଜିତ ଇତିହାସ ସତରେ ଅତୁଳନୀୟ । ଯେମିତି ଜ୍ଞାନ ରାଜ୍ୟରେ ବିଜ୍ଞାନ ମହିମ୍ନ ପ୍ରଜ୍ଞାପୁରୁଷ ସାମନ୍ତ ଚନ୍ଦ୍ରଶେଖର ସେମିତି ଦିଗ୍‌ବିଜୟୀ ମହାମେଘ ବାହନ ଐର ଖାରବେଳ ମାନବ ଜାତିର ଇତିହାସରେ ବିରଳ ବ୍ୟକ୍ତିତ୍ୱ । ଏମାନଙ୍କ ଜନ୍ମ ଏ ମାଟି, ପାଣି, ପବନକୁ ଧନ୍ୟ କରିଦେଇଛି । ଧର୍ମ ଧାରାରେ ଜଗତର ନାଥ ଜଗନ୍ନାଥ ବିଶ୍ୱକୁ ବିସ୍ମିତ କରିଛି । ଠିକ୍ ସେହିପରି ମାଟିର ମହାକବି ସାରଳା ଦାସ ହଜାରେ ଭିତରେ ବାରିହୋଇ ପଡିଥାନ୍ତି, ଯାହାଙ୍କର ସାରସ୍ୱତ ସିଦ୍ଧି ପ୍ରତି ମଣିଷ ଜୀବନରେ ଏକାଧିକ ସ୍ମୃତି ଅନୁଭୂତିକୁ ନେଇ ଆଗକୁ ପାଦ ବଢ଼ାଏ । ସେହି ସ୍ଥିତି, ଭିତ୍ତି, ଭାରତୀକୁ ଯିଏ ଶବ୍ଦର ଚାତୁରୀରେ ଏକାଠି ଗୁନ୍ଥି ସୁନ୍ଦର ମାଳାଟିଏ ତିଆରି କରିପାରିଲା, ସେହି ହିଁ ସାହିତ୍ୟ ସାମ୍ରାଜ୍ୟରେ ନିଜକୁ ଜଣେ ବୋଲି ପରିଚିତ କରାଇପାରେ । ସେ ପ୍ରମାଣ କରିଯାଇଛନ୍ତି ସାହିତ୍ୟ ସୃଷ୍ଟି ପାଇଁ କୌଣସି ଡିଗ୍ରୀ ନୁହେଁ, ଆବଶ୍ୟକ ଥାଏ ଏକ ଅମୃତ ଅନୁଭବ, ମନ ଓ ହୃଦୟର ।

ଅପରାହ୍ନର ସୂର୍ଯ୍ୟଙ୍କ କିରଣ ପରି ଯାହାଙ୍କ ସାରସ୍ୱତ ସୃଷ୍ଟି ବୌଦ୍ଧିକ ଦୁନିଆକୁ ଏକ ନୂତନ ଆଭାରେ ଉଦ୍‌ଭାସିତ କରି ଓଡିଆ ବାଣୀ ଭଣ୍ଡାରକୁ ଏପରି ମହାର୍ଘରେ ମଣ୍ଡିତ କରିଯାଇଛନ୍ତି, ତାହା ଯୁଗେ ଯୁଗେ ଜଳଗଙ୍ଗା ହୋଇ ମାଟିରୁ ଆକାଶ ଛୁଇଁଛି । ଫଳରେ ସାରଳା ମହାଭାରତର ଛନ୍ଦେ ଛନ୍ଦେ ଜୀବନାଦର୍ଶର ପ୍ରଭାବ ପରିଲକ୍ଷିତ ହୋଇଛି । ଯାହାର ଗୋଟିଏ ପଂକ୍ତି ଅଟକି ଯିବନି ହଜାରକୁ ନାହିଁ ଭୟ, ହଜାରେ ଭିତରେ ବିନ୍ଦୁଏ ଲୋତକ ହେବ ମୋ ସୃଷ୍ଟିର ଜୟ । ଯାହାଙ୍କ ସୃଷ୍ଟିର ଆଦ୍ୟ ଓଁକାର ସୁଦୀର୍ଘ ୫ ଶହ ବର୍ଷ ପୂର୍ବେ ଓଡିଆ ସାହିତ୍ୟର ସୁବର୍ଣ୍ଣ ମୁଖଶାଳା, ଏ ମାଟିର, ଏ ଜାତିର ମହାକାବ୍ୟ । ଯେଉଁମାନଙ୍କ ଲେଖନୀରେ ଓଡିଆ ସାହିତ୍ୟର ସୁବର୍ଣ୍ଣ ମୁଖଶାଳା କୋଣାର୍କ ଶୈଳୀରେ ଗଢ଼ାଯାଇଛି, ସେମାନଙ୍କ ମଧ୍ୟରୁ ଆଦିକବି ସାରଳା ଦାସ, ଅତିବଡୀ ଜଗନ୍ନାଥ ଦାସ, ଭକ୍ତକବି ମଧୁସୂଦନ ରାଓ, ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର, ଜାତୀୟ କବି ବୀରକିଶୋର ଦାସ, ଭକ୍ତକବି ଦୀନକୃଷ୍ଣ ଦାସ, ଜୟଦେବ, କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, କବିବର ରାଧାନାଥ ରାୟ, କବିଶେଖର ଚିନ୍ତାମଣି ମହାନ୍ତି, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ସ୍ୱଭାବ କବି ଗଙ୍ଗାଧର ମେହେର, ସନ୍ଥକବି ଭୀମ ଭୋଇ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ ପ୍ରମୁଖଙ୍କ ଭୂମିକା ବିଶେଷ ପ୍ରଣିଧାନଯୋଗ୍ୟ ।

ଆଧୁନିକ କାବ୍ୟ ଚେତନାର ବୟୋଜ୍ୟେଷ୍ଠ କବି ସଚ୍ଚିଦାନନ୍ଦ ରାଉତରାୟ, ପଣ୍ଡିତ ନୀଳକଂଠ ଦାସ, ବିଶିଷ୍ଟ ପ୍ରଗତିଶୀଳ କବି ଅନନ୍ତ ପଟ୍ଟନାୟକ, କଥା ସମ୍ରାଟ୍ ଫକୀର ମୋହନ ସେନାପତି, କଥାଶିଳ୍ପୀ ଗୋପୀନାଥ ମହାନ୍ତି, ପ୍ରତିଭାଦୀପ୍ତ ପ୍ରତିଭା ରାୟ, ପଲ୍ଲୀକବି ନନ୍ଦକିଶୋର ବଳଙ୍କ

ସାରସ୍ୱତ ଅବଦାନ ଓଡ଼ିଆ ସାହିତ୍ୟ ମୁଖଶାଳାର ଶ୍ରୀମନ୍ଦିର ସଦୃଶ ଅତୀବ ଆକର୍ଷଣୀୟ । ''ଉଠଗୋ, ଦୁଃଖିନୀ ଉତ୍କଳ ଜନନୀ ପାଇଛି ବିଶାଦ ଯାମିନୀ ତବ, ଉଠି ଦେଖ ନଭେ ନବ ଦିନ ମିଶି ଶୁଣ ସୁପ୍ରଭାତେ ବିହଙ୍ଗ ରବ । ନବୀନ ଚେତନେ ନବୀନ ଉଦ୍ୟମେ ଜାଗି ଉଠିଛନ୍ତି ଜଗତେ ଜନ, କିମ୍ପାଇ କହଗୋ ପ୍ରିୟ ମାତୃଭୂମି ଅଛୁ ଅବସାଦ ନିଦ୍ରା ମଗନ'' । ଶବ୍ଦ ଗୁନ୍ଥା କବି, ଲେଖକ ନ ହୋଇ ଭାବ ଗୁନ୍ଥା କବି ଲେଖକ ହେଲେ, ନିଜେ ନ ଭିଜି ପାଠକ ଭିଜିବା ଉଚିତ । ବାସ୍ତବିକ ଓଡ଼ିଆ ଅସ୍ମିତାର ଉତ୍ତୁଙ୍ଗ ଜାତିପ୍ରାଣ, ଭାଷା ପ୍ରାଣ ଭାବରେ ଯେଉଁମାନେ ସାହିତ୍ୟର କୋଣାର୍କ ଗଢ଼ିଛନ୍ତି ସେମାନେ ଏ ମାଟିର ଚିର ସ୍ମରଣୀୟ ଓ ଚିର ବନ୍ଦନୀୟ । ଓଡ଼ିଆ ସାହିତ୍ୟ ଇତିହାସ ମୁଖଶାଳାରେ ଏ ସୁବର୍ଣ୍ଣ ଆଲେଖ୍ୟଟିର ମହତ୍ତ୍ୱ ପ୍ରତିପାଦିତ ହେବା ଦରକାର । ବିଶ୍ୱ ବନ୍ଦିତ ସାହିତ୍ୟରଥିଙ୍କ ମଧ୍ୟରେ ସାରଳା ଦାସଙ୍କୁ ପରିଗଣିତ କରାଯାଏ । କଳିଙ୍ଗର ଖାରବେଳ ଓ ଉତ୍କଳର କପିଳେନ୍ଦ୍ରଦେବ ଯେଭଳି ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ, ସେହିଭଳି ଓଡ଼ିଶାର ସାରସ୍ୱତ ସୂର୍ଯ୍ୟ ସାରଳା ଦାସଙ୍କ ମହାଭାରତ ବିଶାଳ ସାରସ୍ୱତ ସାମ୍ରାଜ୍ୟର ସୁବର୍ଣ୍ଣ ମୁଖଶାଳା । ଶତାବ୍ଦୀ ଶତାବ୍ଦୀ ପରେ ଆଜି ଭାବିଲେ ବିସ୍ମିତ ହେବାକୁ ପଡେ । ସବୁ କାଳ ପାଇଁ ସେ ଓଡ଼ିଆ ସାହିତ୍ୟର ଉତ୍ସ । ଯେକୌଣସି ଓଡ଼ିଆ ସାରଳା ଦାସଙ୍କୁ ନ ପଢ଼ିଲେ ଭାଷା ଶିକ୍ଷା ସଂପୂର୍ଣ୍ଣ ହେବ ନାହିଁ । ଇତିହାସ ଓ ସାହିତ୍ୟ ସେଇମାନଙ୍କ ଗାଥା ଗାଏ, ଯେଉଁମାନେ ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ପାଇଁ ସାଧନା ଓ ସଂଗ୍ରାମ କରିଥାନ୍ତି । ଯେମିତି କୋଣାର୍କ ଓ ଶ୍ରୀମନ୍ଦିରର ପ୍ରତିଶିଳା ଖଣ୍ଡ ଅଦ୍ଭୁତ, ଠିକ୍ ସେମିତି ସାହିତ୍ୟ ମୁଖଶାଳାର ପ୍ରତିଟି ଅକ୍ଷର ।

ଆଜି ଓଡ଼ିଶାର ଗୌରବମୟ ଇତିହାସ ଓ ବୀର ଓଡ଼ିଆ ଜାତିର ମାନ ମର୍ଯ୍ୟାଦା କ୍ଷୁଣ୍ଣ ହୋଇଯାଉଥିବା ବେଳେ ପଣ୍ଡିତ ଗୋଦାବରୀଶ ମହାପାତ୍ର ''ଉଠ କଙ୍କାଳ'' କବିତା ରଚନା କରି ଓଡ଼ିଶାର ହୃତ ଗୌରବ ଫେରାଇ ଆଣିବାକୁ ଆହ୍ୱାନ ଦେଇଥିଲେ । ଯାହାର ସୁମଧୁର ସମୀରଣ ଗାଏ ଓଡ଼ିଆଙ୍କ ଗରିମା । ଇଏ ତ ଆମର ଏକା ମୁଖଶାଳା ମହିମା । ଜୋଛନାର ରୁଣୁଝୁଣୁ ଭରିଦିଏ ପୁଲକ, ଇଏତ କେବଳ ଆମ ଓଡ଼ିଶାର ମହକ । ଉତ୍କଳ ବ୍ୟାସ ସାରଳା ଦାସ ତାଙ୍କ ମହାଭାରତ ଏଇ ଜାତିର କଳା କୋଣାର୍କ । ଯେଉଁଠି ''ମିଶୁ ମୋର ଦେହ ଏ ଦେଶ ମାଟିରେ ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ଓ ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ'' ଇଏ ସେହି ମୁଖଶାଳା । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିରାଣୀ ବୈତରଣୀରେ ଅନେକ ପାଣି ବୋହି ଗଲାଣି, ବିତି ଗଲାଣି ୫ଶହ ବର୍ଷ । ଓଡ଼ିଆ ସାହିତ୍ୟ ମୁଖଶାଳାର ସ୍ୱର୍ଣ୍ଣିମ କଥା ଗାଥା ଆଜି ସ୍ମୃତି ମୁହାଁ । ତଥାପି ଏ ବୀର ମାଟିର ସୃଜନ କଳାର କାନ୍ଭାସ୍ ଯେଉଁଠି ଛୁଇଁଥିଲା ଏ ଭାଷାର ପ୍ରଥମ ଚୁମ୍ବନ, ପବିତ୍ର ଓଁକାର ଶବ୍ଦରେ ସାହିତ୍ୟିକ ମୁଖଶାଳା ଯୁଗ ଯୁଗ ପାଇଁ ।

୩୫୦ ବର୍ଷର ଓଡ଼ିଆ ରୀତି ସାହିତ୍ୟ ସରଣୀରେ ଶବ୍ଦବେଦୀ କବି ଯଦୁମଣି ମହାପାତ୍ର ଏକ ବିସ୍ମୟୋଦ୍ଦୀପକ ଭୂମି ମନନଶୀଳ ଜୀବନାନନ୍ଦ ଶବ୍ଦ ଶିଳ୍ପୀ । ଯିଏ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରାପ୍ତ ଓଡ଼ିଆ ଭାଷାର ଏକ ସାରସ୍ୱତ ଅସ୍ମିତା ଗତ ସ୍ୱର୍ଣ୍ଣିମ ପ୍ରତୀକ । ମୁଖଶାଳା ହସଫୁଲର ଉପବନରେ ସେ ଚିରକାଳ ହାସ୍ୟରସର ଅଧିକାରୀ । ଓଡ଼ିଆ ସାହିତ୍ୟ ମୁଖଶାଳାର ଅନ୍ୟତମ ବିଭବ ଓଡ଼ିଆ ଭାଗବତର କାଳଜୟୀ ପ୍ରଭାବ ଡଃ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ ଅମଳିନ କୃତୀ ମାଟିର ମଣିଷ, ଡଃ କୃଶନନ୍ଦଙ୍କ ମଲା ମଣିଷର ଲୁହାର ଆଖି ଓ ଏହି ଲେଖକଙ୍କ ମାଟି ଓ ମଣିଷ ଆମ ସାହିତ୍ୟିକ ଭାବ ଗୌରବକୁ ଉର୍ଜସ୍ୱଳ କରିଛି । ଡଃ ମାୟାଧର ମାନସିଂହ, ଡଃ ବନମାଳୀ ରଥ, ଡଃ ଅଜୟ ମିଶ୍ର, ଡଃ କୁଳମଣି ରାଉତ, ଡଃ ବୃନ୍ଦାବନ ଆଚାର୍ଯ୍ୟ, ଡଃ ଦାସରଥି ଦାସ, ଡଃ ଅସିତ୍ କବି, ଡଃ ନିତ୍ୟାନନ୍ଦ ଶତ୍ପଥୀ, ଡଃ ନଟବର ସାମନ୍ତରାୟ, ଡଃ ବୈଷ୍ଣବ ଚରଣ ସାମଲ, ଡଃ ବଂଶୀଧର ମହାନ୍ତି, କଥା ସମ୍ରାଟ୍ ସୁରେନ୍ଦ୍ର ମହାନ୍ତି, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ସାହିତ୍ୟ ଚେତନାକୁ ପ୍ରଖ୍ୟାପନ କରି ଓଡ଼ିଆ ସାହିତ୍ୟ ଯେ ସାରସ୍ୱତ ଶୋଭା ସୌନ୍ଦର୍ଯ୍ୟରେ ମହନୀୟ ହୋଇପାରିଛି, ଏହା ନିଃସନ୍ଦେହରେ କୁହାଯାଇପାରେ । ଓଡ଼ିଆ ଗଦ୍ୟ ସାହିତ୍ୟର

ଜନକ ଫକୀର ମୋହନଙ୍କ କାହାଣୀ ଓଡିଆ ସାହିତ୍ୟର ପୁନଃଭ୍ୟୁଦୟର କାହାଣୀ ତାଙ୍କୁ ଓଡିଶାର ଥୋମାସ୍ ହାର୍ଡି ବୋଲି କୁହାଯାଏ । ''ସାଧବ ପୁଅର ବୋଇତ ବନ୍ଦାଣ ଓଡିଆର ଇତିହାସ ଯାଉଥିଲେ ଦିନେ ଦୂରବିଦେଶକୁ ଫୁଟାଇ ମୁହଁରେ ହସ'' । ପଣ୍ଡିତ ନୀଳକଣ୍ଠଙ୍କ ସ୍ରଷ୍ଟା ମାନସର କାଳଜୟୀ ସୃଷ୍ଟି କୋଣାର୍କେ କାବ୍ୟ ହେଉଛି ସତ୍ୟବାଦୀ ଯୁଗର ସର୍ବଶ୍ରେଷ୍ଠ ସାରସ୍ୱତ ବିଭବ । ଐତିହାସିକ ପୃଷ୍ଠ ଭୂମିରେ ଓଡିଶୀ ନୃତ୍ୟ ଗିରି ଝରଣାର କୁଳୁକୁଳୁ ନାଦରେ, ଆକାଶର ତାରା ମେଳରେ, ଗୁରୁ ଗଜେନ୍ଦ୍ର ପଣ୍ଡା, ସୁଜାତା ମିଶ୍ର, ଗୌରୀ ଶଙ୍କର ତ୍ରିପାଠୀ ପ୍ରମୁଖର ଛନ୍ଦଲାସ୍ୟରେ ଛନ୍ଦିହୋଇ ସୋପାନ ପରେ ସୋପାନ ଅତିକ୍ରମ କରି ବିଶ୍ୱରେ ଲାଳିତ ପୂର୍ଣ୍ଣ ନୃତ୍ୟ ଭାବରେ ପରିଚିତ ହୋଇଛି । ''ସହିଯାଅ ତୁମେ ପରବତ ପରି କୁହୁଡି, କାକର, ଖରା, ଯିଏ ଯେତେ ସହେ ସେତେବଡ ହୁଏ ନ ଗଡାଅ ଲୁହର ଧାରା'' । ଓଡିଆ ହେଉଛି ଭାରତର ଏକମାତ୍ର ଭାଷା । ଏହା ଯେପରି ଉଚ୍ଚାରିତ ହୁଏ ସେହିପରି ଲେଖାଯାଏ । ଓଡିଆ ସାହିତ୍ୟରେ ପ୍ରଚୁର ପରିମାଣରେ ରସର ନିର୍ଝରଣୀ ବହିଯାଇଛି । ଫଳରେ ସାହିତ୍ୟ ମୁଖଶାଳାର ସାରସ୍ୱତ ତୁଙ୍ଗିମାଙ୍କୁ ବରଂ ବଢ଼ାଇଛି ଛଡାଇନି । କଳା ଜଗତର ବିଶ୍ୱ ବିସ୍ମୟ କୋଣାର୍କ ଅନୁରୂପ ଆମର ଅସଂଖ୍ୟ କାବ୍ୟ କୋଣାର୍କ ଆମ କବି ଲେଖକଙ୍କର ତଲ୍ଲୀନ ବିଭୋର ପଣିଆ ସାହିତ୍ୟ କଳ୍ପନା ବିଳାସର ଶିଖରକୁ ଛୁଇଁଛି ।

ଓଡିଆ ମମତା ମଞ୍ଜୁଳ ଭାଷା । ଓଡିଆ ସାହିତ୍ୟ ତାଳପତ୍ର ପୋଥିରୁ ଆରମ୍ଭ ହୋଇ ଆଜିର ସାରସ୍ୱତ ସୌନ୍ଦର୍ଯ୍ୟର ପରିଭାଷା ପାଲଟିଛି । ଏହା କହିଲେ ଅତିରଞ୍ଜିତ ହେବ ନାହିଁ ଯେ, ଓଡିଆ ଲୋକଙ୍କ ଜୀବନର ପ୍ରତ୍ୟେକ ସ୍ତର ଅତ୍ୟଧିକ ଭାବେ ଉଚ୍ଚକୋଟୀର ସୃଜନାତ୍ମକ ସମ୍ବେଦନଶୀଳତାର ପରିଚୟ ପ୍ରଦାନ କରି ସର୍ବଭାରତୀୟ ସାହିତ୍ୟର ମୁଖ୍ୟସ୍ରୋତ ମଧ୍ୟରେ ଯୁଗ ଯୁଗ ଧରି ତା'ର ସ୍ୱକୀୟ ସାହିତ୍ୟିକ ମୁଖଶାଳା ନିର୍ମାଣ କରିପାରିଛି । ଏଇ ଲେଖକଙ୍କ ''ଓଡିଶାର ଐତିହ୍ୟ ଓ ଇତିହାସ ଅଧ୍ୟୟନ କଲେ ସୁଦୀର୍ଘ ଐତିହାସିକ କ୍ରମ ପରିଣାମର ସତ୍ୟାସତ୍ୟ ମିଳିପାରିବ । ପ୍ରାଗ୍ ସାରଳା ଯୁଗରୁ ସାରଳା ଯୁଗ, ପଂଚସଖା ଯୁଗ, ରୀତି ଯୁଗ, ଆଧୁନିକ ଯୁଗ, ସବୁଜ ଯୁଗ, ସଂପ୍ରତିକ ଯୁଗ ଓ ଅତ୍ୟାଧୁନିକ ଯୁଗରେ କାବ୍ୟ, କବିତା, ପ୍ରବନ୍ଧ, ଗଳ୍ପ, ରମ୍ୟ ରଚନା, ନାଟକ, ଗୀତିନାଟ୍ୟ, ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ଅଣୁଗଳ୍ପ ପ୍ରଭୃତି ଓଡିଆ ସାହିତ୍ୟ ମୁଖଶାଳାକୁ ବୈଚିତ୍ର୍ୟମୟ କରିଛି । ଫଳରେ ସାହିତ୍ୟ ସମାଜର ସର୍ବକାଳୀନ ଦର୍ପଣ ପାଲଟିଛି । ଓଡିଆ ସାହିତ୍ୟର ହାସ୍ୟମୟ ଶୋଭାରାଜି, ସାରସ୍ୱତ ନୃତ୍ୟ ସଂଗୀତର ମାଧୁରିମାରେ ଦୂରଦୃଷ୍ଟିସମ୍ପନ୍ନ ଲେଖକ ଗବେଷକମାନେ ବିଶ୍ୱ ଦରବାରରେ ଓଡିଶାର ଉତ୍କର୍ଷ ପ୍ରତିପାଦନ କରିପାରିଛନ୍ତି । ଓଡିଆ ସାହିତ୍ୟର ସୁବର୍ଣ୍ଣ ମୁଖଶାଳା ସାହିତ୍ୟ ଇତିହାସର ବୈଚିତ୍ର୍ୟମୟ ମୁଖଶାଳା ।

ଓଡିଆ ଦେଶର ଷଷ୍ଠ ଶାସ୍ତ୍ରୀୟ ଭାଷା । ଓଡିଆ ଭାଷା ସାହିତ୍ୟ ସଂସ୍କୃତିର ସୁରକ୍ଷା ଓ ପ୍ରସାର ପାଇଁ ରାଜ୍ୟ ସରକାର ସଂସ୍କୃତି ବିଭାଗକୁ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ ନାମରେ ନାମିତ କରିଛନ୍ତି । ପଂଚସଖାଙ୍କ ସ୍ମୃତିରେ ସତ୍ୟବାଦୀଠାରେ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନ ହୋଇଛି । ଇଲୋକ୍ଟ୍ରୋନିକ୍ ଓ ସୂଚନ ପ୍ରଯୁକ୍ତିବିଦ୍ୟା ଉପଯୋଗ କରି ବିରଳ ଓ କାଳଜୟୀ ଓଡିଆ ପୁସ୍ତକଗୁଡିକର ଡିଜିଟାଇଜେସନ୍ ସହିତ ଓଡିଆ ଭାଷା ଏବଂ ସାହିତ୍ୟକୁ ବିଶ୍ୱବ୍ୟାପୀ କରିବା ଲକ୍ଷ୍ୟରେ ଓଡିଆ ଭର୍ଚୁଆଲ୍ ଏକାଡେମୀ ପ୍ରତିଷ୍ଠା କରାଯାଇଛି । କଳାଭୂମି ଓଡିଶାର କୁଶଳୀ ହାତ ଭାରତର ଆତ୍ମା କରେ ଆଲୋକିତ । ଓଡିଆ ଭାଷା ସାହିତ୍ୟରେ ଉଚ୍ଚତର ଗବେଷଣା ପାଇଁ ନୂଆଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ଆଦି କବି ସାରଳା ଦାସ ଚେୟାର୍ ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଚେୟାର୍ ପ୍ରତିଷ୍ଠା କରାଯାଇଛି । ଓଡିଆ ସାହିତ୍ୟ ବାଟିକାରେ ଆଭିଜାତ୍ୟ ଓ ଗାଉଁଲି ଫୁଲଚାରା ସୃଷ୍ଟି କରିପାରିଲେ ତାହା କାଳ କାଳ ଲାଗି ଅଧିକ ଆକର୍ଷଣୀୟ ଓ ସୌରଭ ବିତରଣକାରୀ ହେବ, ଏଥିରେ ଦ୍ୱିମତ ନାହିଁ ।

ସମ୍ପାଦକ
ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ

# ମହାନ୍ ମୁକ୍ତିଯୋଦ୍ଧା ନେତାଜୀ ସୁଭାଷ ଚନ୍ଦ୍ର ବୋଷ

**ଡକ୍ଟର ସର୍ବେଶ୍ୱର ସେଣ**

ଇତିହାସକୁ ନେଇ ଅନେକ ମହାନ୍ । ଇତିହାସ ବି କେତେକ ନଭଶ୍ଚୁମ୍ବୀ ପ୍ରତିଭାଙ୍କ ପାଇଁ ଗରୀୟାନ୍ । ସେଇସବୁ ପ୍ରାତଃ ସ୍ମରଣୀୟ ଚରିତ୍ର । ସେମାନଙ୍କ ମଧ୍ୟରେ ଦେଶପ୍ରେମ–ପ୍ରୀତି–ଆର୍ଦ୍ର ସାହସୀ ବୀର ସୁଭାଷ ଚନ୍ଦ୍ର ବୋଷ । ସେ ତିଆରି କରିଛନ୍ତି ଆପଣାର ସ୍ୱତନ୍ତ୍ର ପରିଚୟ । ନୀତି, ନୈତିକତା ଆଦର୍ଶରୁ କେବେ ବି ବିଚ୍ୟୁତ ହୋଇନାହାନ୍ତି । ତାଙ୍କର ସାଲିସ ବିହୀନ ଜୀବନ । ଆପଣାର ମହିମାରେ ସେ ତେଜୋଦୀପ୍ତ । ସେ ଏକ ପ୍ରଜ୍ୱଳିତ, ଅନିର୍ବାଣ ଦୀପଶିଖା । ଜାତୀୟ ମୁକ୍ତି ଯୁଦ୍ଧରେ ତାଙ୍କର ସ୍ୱତନ୍ତ୍ର ପରିଚୟ । ସ୍ୱାଧୀନତା କେହି ଦିଏ ନାହିଁ, ଛଡ଼ାଇ ନେବାକୁ ହୁଏ । ସ୍ତୁତି, ବିନତି କିମ୍ବା ଭିକ୍ଷାରେ ସ୍ୱାଧୀନତା ମିଳେ ନାହିଁ । ଏଇ ଉଦାମ ଗୁରୁଗମ୍ଭୀର ବାଣୀ ନେତାଜୀଙ୍କର । ସୃଷ୍ଟିକଲା ଶତସିଂହର ପରାକ୍ରମ । ବହୁ ଭାରତୀୟଙ୍କ ଶିରା ପ୍ରଶିରାରେ ଉଷ୍ମ ରକ୍ତ ପ୍ରବାହ । ସ୍ୱାଧୀନତାକୁ ସୁରକ୍ଷିତ ରଖିବା ଗୁରୁ ଦାୟିତ୍ୱ ଭାରତବାସୀଙ୍କର । ଏଇ ମହାନ୍ ଲକ୍ଷ୍ୟରେ ଅଗ୍ରସର ହେବାକୁ ପଡ଼ିବ । ସ୍ଥାୟୀ ପ୍ରତିରକ୍ଷା ବାହିନୀ ଗଠିତ ହେବ । ଅସ୍ତ୍ରଶକ୍ତି ଆଉ ରକ୍ତଦାନ – ଏହାରି ଦ୍ୱାରା ମିଳିବ ସ୍ୱାଧୀନତା । ନେତାଜୀଙ୍କର ଏଇ ଜୀବନ ଦର୍ଶନ । ତାହାକୁ ପାଥେୟ କରି ଅଗ୍ରସର ହେଲେ । ତାଙ୍କରି ଦୃଢ଼ ନେତୃତ୍ୱରେ ଆଜାଦ୍ ହିନ୍ଦ୍ ଫୌଜ, ସର୍ବପ୍ରଥମେ ଉଡ଼ାଇଲା ଭାରତୀୟ ଜାତୀୟ ତ୍ରିରଙ୍ଗା ମଣିପୁରର ଇମ୍ଫାଲରେ । ସବୁ ଶ୍ରେୟ ନେତାଜୀଙ୍କର । ସେ ଜଣେ ମହାନ୍ ଯୋଦ୍ଧା, ସମର୍ପିତ ଜାତୀୟତାବାଦୀ ନେତା । ଭାରତମାତାଙ୍କୁ ସେ ପ୍ରାଣଠାରୁ ବଳି ଭଲ ପାଉଥିଲେ । ଜୀବନରେ ଶେଷ ବିନ୍ଦୁ ରକ୍ତ ଥିବା ଯାଏ ଲଢ଼ିଲେ ଜନ୍ମଭୂମି ପାଇଁ । ଦେଶକୁ ଫିରିଙ୍ଗି ମୁକ୍ତ କରିବା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଓଡ଼ିଶାରେ ନେତାଜୀଙ୍କ ଜନ୍ମ । ସେ ଓଡ଼ିଶାକୁ ଖୁବ୍ ଭଲ ପାଉଥିଲେ । ତାଙ୍କର ଯଶକୀର୍ତ୍ତି ଖ୍ୟାତି କେବଳ ଭାରତ ନୁହେଁ, ସାରା ବିଶ୍ୱ ବିଦିତ । ବୀର ପ୍ରସବିନୀ ଭାରତମାତା । ନେତାଜୀଙ୍କୁ ଜନ୍ମ ଦେଇ ଚିର ଧନ୍ୟା ।



୧୮୯୭ ମସିହା, ଜାନୁଆରୀ ମାସ ୨୩ ତାରିଖ ଶନିବାର । ପହଲି ସୂର୍ଯ୍ୟାଲୋକ ଦେଖିଲା ଶିଶୁଟେ । ପିତା ଜାନକୀନାଥ ବୋଷ, ମାତା ପ୍ରଭାବତୀ ଦେବୀ । ଶିଶୁଟିର

ନାଁ ଦେଲେ ସୁଭାଷ ଚନ୍ଦ୍ର । ପିତା ବ୍ରିଟିଶ ସରକାରଙ୍କ ଅଧୀନରେ ପବ୍ଲିକ୍ ପ୍ରସିକ୍ୟୁଟର । ତାଙ୍କର କାର୍ଯ୍ୟଦକ୍ଷତାରେ ପ୍ରୀତ ଇଂରେଜ ସରକାର । ପ୍ରଦାନ କଲେ ରାୟବାହାଦୁର ଉପାଧି । ବେଙ୍ଗଲ ଲେଜିସଲେଟିଭ କାଉନ୍ସିଲ୍‌ର ସେ ଜଣେ ସଦସ୍ୟ । ମାତ୍ର କଟକ ପରିବେଶ କଳା, ସାହିତ୍ୟ ସଂସ୍କୃତି ବିମୋହିତ ଜାନକୀନାଥ, ସବୁ ପଦପଦବୀ ତ୍ୟାଗ କଲେ । ଦୀର୍ଘ ୫୦ ବର୍ଷ କଟକରେ ବିତାଇଲେ । ତାଙ୍କର ବାସଭବନ କଟକ ଓଡ଼ିଆ ବଜାରରେ । ସେଠାରେ ସୁଭାଷଙ୍କ ଅନ୍ତୁଡ଼ିଶାଳ । ସୁଭାଷଙ୍କ ଶିକ୍ଷାରମ୍ଭ (ଖ୍ରୀ.ଅ. ୧୯୦୨) ପ୍ରୋଟେଷ୍ଟା ୟୁରୋପିଆନ ସ୍କୁଲ୍‌ରେ । ସ୍କୁଲ୍‌ଟିରେ ଖେଳ, କସରତ ଉପରେ ଅଧିକ ଗୁରୁତ୍ୱ । ସେବେକା ସମାଜରେ ଥାଏ କଳାଗୋରା ଭେଦଭାବ । ଆଙ୍ଗ୍ଲୋଇଣ୍ଡିଆନ ଛାତ୍ରମାନଙ୍କୁ ସ୍ୱେଚ୍ଛାସେବକ ବାହିନୀରେ ଯୋଗଦାନର ଅନୁମତି । ଏଥିରୁ ଭାରତୀୟ ଛାତ୍ରମାନେ ବଞ୍ଚିତ । ପାତର ଅନ୍ତର ନୀତି । କିଶୋର ସୁଭାଷ ମର୍ମାହତ । ଅନେକ ଥର ପିତାମାତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ମାତ୍ର ଜାନକୀନାଥ ଥିଲେ ନାଚାର । ସୁଭାଷଙ୍କ ମାତା ପ୍ରଭାବତୀ, ଖୁବ୍ ଧର୍ମପରାୟଣା । ରାମକୃଷ୍ଣ ପରମହଂସ, ମା' ଶାରଦା, ବିବେକାନନ୍ଦ– ଏମାନଙ୍କ ସମ୍ବନ୍ଧୀୟ ନାନା ଅଲୌକିକ କାହାଣୀ ସୁଭାଷଙ୍କୁ ମା' ଶୁଣାନ୍ତି । ପିତାଙ୍କର ଆଦର୍ଶ, ମାତାଙ୍କର ଧର୍ମୀୟ ସଂସ୍କାର । ଗଭୀର ଭାବେ ପ୍ରଭାବିତ ସୁଭାଷ । ଉତ୍ତର ଜୀବନରେ ତାହା ହିଁ ସୁଭାଷଙ୍କ ମାର୍ଗ ନିର୍ଦ୍ଧାରଣ କଲା । ସେ ଜଣେ ସ୍ୱାଧୀନଚେତା, ବିବେକୀ ମଣିଷରେ ପରିଣତ ହେଲେ ।

ତୁଳସୀ ଦୁଇପତ୍ରରୁ ବାସେ । ଛାତ୍ର ଜୀବନରୁ ସୁଭାଷଙ୍କ ସଦ୍‌ଗୁଣାବଳୀ ବିକଶିତ । ସ୍ୱାଧୀନ ଚେତା ନେତାଜୀ । ଅନ୍ୟାୟ ବିରୁଦ୍ଧରେ ସର୍ବଦା ସ୍ୱର ଉଠାଉଥିଲେ ଛାତ୍ର ସୁଭାଷ । ଫିରିଙ୍ଗି ସରକାର ଖୁଦିରାମ ବୋଷଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦେଲେ (୧୯୦୮ ମସିହା ଅଗଷ୍ଟ ୧୧ ତାରିଖ) । ସୁଭାଷ କଟକ କଲେଜିଏଟ୍ ସ୍କୁଲ୍‌ର ଛାତ୍ର (୧୯୦୯) । ୧୯୧୧ ମସିହା, ଅଗଷ୍ଟ ୧୧ ତାରିଖ କଥା । ଖୁଦିରାମଙ୍କ ଫାଶୀ ଦିବସ ପାଳନ କଲେ ସ୍କୁଲ୍‌ର ଛାତ୍ରମାନେ । ସୁଭାଷ ଏଥିରେ ମୁଖ୍ୟ । କ୍ରୋଧୀ ଇଂରେଜ ଶାସକ । ସ୍କୁଲ୍‌ର ପ୍ରଧାନ ଶିକ୍ଷକ ବେଣୀମାଧବ ଦାସ, ତାଙ୍କୁ ସ୍ଥାନାନ୍ତର କରିଦେଲେ । ସୁଭାଷ ହେଲେ ମର୍ମାହତ । ସେ ଜଣେ ମେଧାବୀ ଛାତ୍ର । କଲିକତାର ପ୍ରେସିଡେନ୍ସି କଲେଜ । ସେଠାରୁ ତାଙ୍କର କଲେଜ ଜୀବନ ଆରମ୍ଭ । ସେ ବି.ଏ. ଶ୍ରେଣୀର ଛାତ୍ର । କଲେଜରେ ପାଳିତ ହେଲା ସାମ୍ବତ୍ସରିକ ଉତ୍ସବ । ବଙ୍ଗର ବିଶିଷ୍ଟ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲ । ତାଙ୍କ ଦ୍ୱାରା ରଚିତ 'ବଙ୍ଗ ଆମାର, ଜନନୀ ଆମର' ସଂଗୀତ । ଗୀତଟି ଇଂରେଜ ସରକାରଙ୍କ ଦ୍ୱାରା ନିଷିଦ୍ଧ ଘୋଷିତ । ସୁଭାଷ ସେଇ ଗୀତଟିକୁ ଗାଇଲେ । ଇ.ଏଫ୍.ଓଟନ ନାମକ କଲେଜର ଜଣେ ଇତିହାସ ଅଧ୍ୟାପକ । ରାଗରେ ନିଆଁବାଣ । ବଙ୍ଗବାସୀଙ୍କୁ ଢେର୍ ଗାଳିଦେଲେ । ସୁଭାଷ ବି ତାଙ୍କ ଆକ୍ରୋଶର ଶିକାର ହେଲେ । ତାଙ୍କ ସହପାଠୀ କମଳ ବସୁ । କଲେଜ ବାରଣ୍ଡାରେ ଚାଲୁଥିଲେ । ତାଙ୍କ ଜୋତାର ଘଷରା ଶବ୍ଦ, ଓଟନ ସାର୍‌ଙ୍କୁ କ୍ଷୁବ୍ଧ କଲା । ସେ କମଳକୁ ପିଟିଲେ । ସେ ତଳେ ପଡ଼ିଗଲା । ଶ୍ରେଣୀରେ ପ୍ରତିରୋଧର ସ୍ୱର ତୀବ୍ର । ପିଲେ ଶ୍ରେଣୀ କକ୍ଷ ବର୍ଜନ କଲେ । ସୁଭାଷ ନେଇଥିଲେ ନେତୃତ୍ୱ । ତାଙ୍କୁ କଲେଜରୁ ପ୍ରିନ୍ସିପାଲ ବହିଷ୍କାର କଲେ । ଏଇଟି ୧୯୧୬ ମସିହାର ଘଟଣା । କଲିକତାର ସ୍କଟିସ୍ ଚର୍ଚ୍ଚ କଲେଜ । ଅଧକ୍ଷ ଆଶୁତୋଷ ମୁଖାର୍ଜୀ । ସୁଭାଷ ସେଇଠି ନାଁ ଲେଖାଇଲେ (୧୯୧୮) । ସୁଭାଷ ପିଲାବେଳୁ ନିର୍ଭୀକ । ସାମାନ୍ୟ ଅନ୍ୟାୟକୁ ବରଦାସ୍ତ କରୁନଥିଲେ । ବି.ଏ. ପରେ ଏମ୍.ଏ. ଶ୍ରେଣୀରେ ନାମ ଲେଖାଇଲେ । ଆଇ.ସି.ଏସ୍. ସେତେବେଳେ ଗୋଟେ ଗୁରୁତ୍ୱପୂର୍ଣ୍ଣ ପଦବୀ । ସୁଭାଷ ଲଣ୍ଡନ ଗଲେ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ । ଆଇ.ସି.ଏସ୍. ପରୀକ୍ଷା (୧୯୨୦)ରେ ଚତୁର୍ଥ ସ୍ଥାନ ହାସଲ କଲେ ।

ପଞ୍ଜାବ ଜାଲିଆନାୱାଲାବାଗ୍ ଗଣହତ୍ୟା (୧୯୧୯ ମସିହା ଏପ୍ରିଲ୍ ୧୩ ତାରିଖ) । ସାରା ଦେଶରେ ଶୋକର ଛାୟା । ଗାନ୍ଧିଜୀ ମର୍ମାହତ । ଇଂରେଜ ସରକାରଙ୍କ ସହ ସବୁ ସମ୍ପର୍କ ଛିନ୍ନ । ପଦପଦବୀ ତ୍ୟାଗ – ଏହାରି ଉପରେ ଗାନ୍ଧିଜୀ ଗୁରୁତ୍ୱ ଦେଲେ । ସୁଭାଷ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ । ଆଇ.ସି.ଏସ୍. ପଦବୀ, ଯେତେ

ଗୁରୁତ୍ୱପୂର୍ଣ୍ଣ ହେଉ, ଇଂରେଜଙ୍କ ନିକଟରେ ତାହା ଗୋଲାମଗିରି । ଏ କଥାଟି ଅନୁଭବ କଲେ । ସେଇ ପଦବୀ ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ଦେବ ମାତ୍ର ଜାତୀୟ ଉନ୍ନତି, ଆଧ୍ୟାତ୍ମିକତା ବିକାଶର ବାଧକ ହେବ – ଏ କଥାଟି ସୁଭାଷଙ୍କୁ ଅଛପା ନଥିଲା । ମହାନ୍ ଯୋଗୀ ଅରବିନ୍ଦ ଘୋଷ, ତାଙ୍କରି ଆଦର୍ଶ, ତାଙ୍କରି ପ୍ରେରଣା, ସୁଭାଷଙ୍କୁ ଉତ୍ସାହିତ କରିଥିଲା । ଏଣେ ଗାନ୍ଧିଜୀଙ୍କ ଡାକରା । ଫିରିଙ୍ଗି ସହ ସମ୍ପର୍କ ରଖିଲେ ହାତ କଳଙ୍କିତ ହେବ । ଶେଷରେ ସମସ୍ତେ ଗୋଲାମ ହୋଇଯିବେ । ଭାରତମାତାଙ୍କୁ ଆଉ ବେଡ଼ି ଶୃଙ୍ଖଳ ମୁକ୍ତ କରିପାରିବେନି । ସୁଭାଷଙ୍କ ବଡ଼ଭାଇ ଚନ୍ଦ୍ରଶେଖର, ଏଇ ମର୍ମରେ ତାଙ୍କ ନିକଟକୁ ଚିଠିଟେ ପଠେଇଲେ । ତୁଚ୍ଛ କରିଦେଲେ ଆଇ.ସି.ଏସ୍. ପଦବୀ (ଅପ୍ରେଲ, ୧୯୨୧) । ଏଣିକି ତାଙ୍କର ପଣପ୍ରତିଜ୍ଞା – ଭାରତମାତାଙ୍କୁ ଫିରିଙ୍ଗି ମୁକ୍ତ କରିବେ । ଏଇ ସଂକଳ୍ପରେ ଆଗେଇଲେ ।

ଦୃଢ଼ ପ୍ରତିଜ୍ଞ ମନ, ବହି ଯାଉଥିବା ନଈ । ଏହାର ପଥରୋଧ କିଏ ବା କରିପାରିବ? ଇଂରେଜଙ୍କ ଅଧୀନରେ ପଦପଦବୀ ନୁହେଁ, ଦେଶ–ଜାତିର ସେବା ଜୀବନର ଶ୍ରେଷ୍ଠଧର୍ମ । ଏଇ ଦର୍ଶନ ସୁଭାଷଙ୍କର । ସେଦିନର ଘଟଣା । ସୁଭାଷ ଫେରୁଥାଆନ୍ତି ବିଲାତରୁ । ସେଇ ଜାହାଜରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର । ଗାନ୍ଧିଜୀଙ୍କୁ ଭେଟିବାକୁ କବିଗୁରୁ ତାଙ୍କୁ ପରାମର୍ଶ ଦେଲେ । ସୁଭାଷଙ୍କ ସହ ଗାନ୍ଧିଜୀଙ୍କ ସାକ୍ଷାତ ବମ୍ବେରେ । ଗାନ୍ଧିଜୀଙ୍କ ପରାମର୍ଶ । ସୁଭାଷ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କୁ ଭେଟିଲେ । ଆଗରୁ ତ ସେ ଅରବିନ୍ଦଙ୍କ ଦର୍ଶନରେ ବିମୋହିତ । ସୁଭାଷ ଜାତୀୟ ସ୍ୱେଚ୍ଛାସେବୀ ବାହିନୀର ମୁଖ୍ୟ ହେଲେ । ନବଗଠିତ ଜାତୀୟ କଲେଜର ଦାୟିତ୍ୱରେ ବି ରହିଲେ । ସୁଭାଷ ଥିଲେ ବାମପନ୍ଥୀ ଧାରାରେ ବିଶ୍ୱାସୀ । ଗାନ୍ଧିଜୀ, ତାଙ୍କ ସମର୍ଥକମାନେ ଦକ୍ଷିଣ ପନ୍ଥୀ । ସେମାନେ ଅହିଂସ–ଯୁଦ୍ଧରେ ବିଶ୍ୱାସୀ । ଉଭୟଙ୍କର ଭିନ୍ନ ଭିନ୍ନ ନୀତି ଆଦର୍ଶ । ଗାନ୍ଧିଜୀ ସୁଭାଷଙ୍କୁ ଠିକ୍ ଭାବେ ଗ୍ରହଣ କରିନଥିଲେ । ବ୍ରିଟିଶ ଯୁବରାଜ ଭାରତ ଆସିଲେ (୧୯୨୧ ମସିହା ନଭେମ୍ବର ୧୭ ତାରିଖ) । ତାଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯିବ । ସରକାର ଚଳଚଞ୍ଚଳ । ମାତ୍ର କଂଗ୍ରେସ ସମ୍ବର୍ଦ୍ଧନାର ଘୋର ବିରୋଧୀ । ଯୁବରାଜ ବମ୍ବେରେ ପହଞ୍ଚିଲେ । ତାଙ୍କ ସମ୍ବର୍ଦ୍ଧନା ଭଣ୍ଡୁର ହେଲା । ସରକାରଙ୍କ କୋପଦୃଷ୍ଟିରେ ଚିତ୍ତରଞ୍ଜନ ଆଉ ସୁଭାଷ । ଦୁହେଁ ଗିରଫ ହେଲେ । ସୁଭାଷ ଛ' ମାସ କାରାକଷଣ ଭୋଗିଲେ । ୧୯୨୨ ମସିହାରେ ଜେଲ୍‌ରୁ ମୁକ୍ତ ହେଲେ । ୧୯୨୧ ରୁ ୧୯୪୧ ମସିହା ଏଇ ସମୟ ସୀମା । ସୁଭାଷ ମୋଟ୍ ୧୧ ଥର କାରାକଷଣ ଭୋଗିଲେ । ଜେଲ୍‌ଖାନାର ଜୁଲମ, ଫିରିଙ୍ଗି ପୁଲିସର ନିର୍ଯ୍ୟାତନା – ଏଥିପ୍ରତି ତାଙ୍କର ତିଳେମାତ୍ର ଭ୍ରୂକ୍ଷେପ ନଥିଲା । ତାଙ୍କ ପାଇଁ କାରାଗାର ତୀର୍ଥ, ପୁଲିସର ମାଡ଼ ଫୁଲମାଳ । ସାଦରେ ସେ ଆଦରିନେଲେ ।

ବଙ୍ଗଳାର ଉଦ୍ଦାମ ଯୁବଶକ୍ତି । ଇଂରେଜଙ୍କ ବିରୁଦ୍ଧରେ ତାଙ୍କର ହିଂସାତ୍ମକ ବିଦ୍ରୋହ ଚାଲିଥାଏ । ସୁଭାଷ ସେଇସବୁ ବିଦ୍ରୋହୀଙ୍କ ପ୍ରତି ସହାନୁଭୂତିଶୀଳ । ମାତ୍ର କଂଗ୍ରେସର ଜାତୀୟ ଆନ୍ଦୋଳନ । ଏଥିରେ ସେମାନଙ୍କୁ ମିଶାଇବାକୁ ସେ ଯତ୍ନଶୀଳ ହେଲେ । ପରିସ୍ଥିତି ଭିନ୍ନ ରୂପ ନେଲା । ଫିରିଙ୍ଗି ପୁଲିସ, ତାଙ୍କ ନିକଟରେ ନଥିଲା ସତ୍ୟ, ନ୍ୟାୟ ଅବା ନିଷ୍ଠା । ବିନା କାରଣରେ ସୁଭାଷଙ୍କୁ ବାନ୍ଧିଲେ । ପ୍ରଥମେ ଆଲିପୁର ଜେଲ ପରେ ବର୍ମାର ମାଣ୍ଡେଲ ଜେଲ୍‌ଖାନାକୁ ସ୍ଥାନାନ୍ତର କଲେ (୧୯୨୫) । କାରାକକ୍ଷରେ ସୁଭାଷ ବର୍ମାର ଭାଷା ଶିଖିଲେ । ସେଠାକାର ଭାଷା, ସାହିତ୍ୟ, ସଂସ୍କୃତି ସହ ପରିଚିତ ହେଲେ । ଉତ୍ତର ଜୀବନରେ ତାହା ବିଶେଷ ଲାଭପ୍ରଦ ହେଲା । ପରବର୍ତ୍ତୀ ସମୟର କଥା । ସିଙ୍ଗାପୁର–ବର୍ମା ଅଞ୍ଚଳରେ ଆଜାଦ୍ ହିନ୍ଦ୍ ଫୌଜର ଜୟଯାତ୍ରା, ସୁଭାଷଙ୍କ ବର୍ମା ଅନୁଭୂତି ବହୁ ଭାବରେ ସହାୟକ ହୋଇଥିଲା ।

୧୯୨୩ ମସିହା, ସୁଭାଷ ବଙ୍ଗଳା କଂଗ୍ରେସର ସେକ୍ରେଟାରୀ ହେଲେ । ସେଇବର୍ଷ 'ସର୍ବଭାରତୀୟ ଯୁବ କଂଗ୍ରେସ'ର ସଭାପତି ହେଲେ । ହିନ୍ଦୁ–ମୁସଲମାନ ଭାଇ ଭାଇ । ସେମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠାରେ ସୁଭାଷ ଲାଗିପଡ଼ିଲେ । ଭାରତ ଆସିଲା ସାଇମନ କମିଶନ

(୧୯୨୮) । କମିଶନରେ ସମସ୍ତ ସଭ୍ୟ ଶ୍ୱେତାଙ୍ଗ, ଜଣେ ବି ଭାରତୀୟ ନଥିଲେ । କଂଗ୍ରେସର ନିର୍ଦ୍ଦେଶ । ସାରା ଭାରତବର୍ଷରେ କମିଶନଙ୍କୁ ଦୃଢ଼ ବିରୋଧ । 'ସାଇମନ ଫେରି ଯାଅ' ଧ୍ୱନିରେ ଗଗନ ପବନ ନିନାଦିତ । ବଙ୍ଗଳାରେ କମିଶନ ବିରୋଧରେ ହରତାଳ । ସୁଭାଷଙ୍କ ଦୃଢ଼ ନେତୃତ୍ୱ ସଫଳ ହେଲା । ଜବାହରଲାଲ ନେହେରୁ, ଗୋବିନ୍ଦ ବଲ୍ଲଭ ପନ୍ଥ ପୁଲିସ ମାଡ଼ରେ ଆହତ ହେଲେ । ଲାହୋରରେ ଲାଲାଲଜ୍‌ପତ ରାୟ ପୁଲିସ ଲାଠି ମାଡ଼ରେ ଗୁରୁତର ଭାବେ ଲହୁଲୁହାଣ । ଡାକ୍ତରଖାନାରେ ତାଙ୍କର ମୃତ୍ୟୁ ହେଲା । ସୁଭାଷ ହୋଇଉଠିଲେ ପ୍ରତିକ୍ରିୟାଶୀଳ । ସେଇ ବର୍ଷର ଆଉ ଗୋଟେ ଘଟଣା । ନେହେରୁଙ୍କ ସହ ସୁଭାଷ, ଗଢ଼ିଲେ 'ଭାରତ ସ୍ୱାଧୀନତା ସଂଘ' ।

ସୁଭାଷଙ୍କ ଜନପ୍ରିୟତା କାହିଁ କେତେ ବଢ଼ିଲା । ୧୯୨୮ ମସିହା । କଲିକତାର ପାର୍କ ସର୍କସ ମଇଦାନ । କଂଗ୍ରେସର ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନ । ସୁଭାଷଙ୍କ ସାଥିରେ ଶହ ଶହ ବେଙ୍ଗଲ ସ୍ୱେଚ୍ଛାସେବୀ । ହଜାରେ ଘୋଡ଼ାସବାର, ଦୁଇ ହଜାର ମହିଳା, ତିନିଟି ବ୍ୟାଣ୍ଡପାର୍ଟି । ଏକ ବିରାଟ ଶୋଭାଯାତ୍ରା ବାହାରିଲା ହାଓଡ଼ା ଷ୍ଟେସନରୁ । ରାସ୍ତାରେ ପଚିଶଟି ସୁସଜ୍ଜିତ ତୋରଣ । ପ୍ରାୟ ପାଞ୍ଚଲକ୍ଷ ସ୍ୱେଚ୍ଛାସେବୀ, ସଭାମଣ୍ଡପରେ ପହଞ୍ଚିଲେ । ଗାନ୍ଧିଜୀ ସେଇ ଅଧିବେଶନରେ ଭାରତ ପାଇଁ 'ଡୋମିନିଅନ' ମର୍ଯ୍ୟାଦା ଦାବୀର ପ୍ରସ୍ତାବଟେ ଆଣିଲେ । ମାତ୍ର ସୁଭାଷଙ୍କର ମତ ଭିନ୍ନ । ତାଙ୍କର ଲୋଡ଼ା ପୂର୍ଣ୍ଣ ସ୍ୱାଧୀନତା, ଆଂଶିକ ସ୍ୱାଧୀନତା ନୁହେଁ । ଏଇ ଦୁଇଟି ପ୍ରସ୍ତାବ ଉପରେ ମତଦାନ, ଗାନ୍ଧିଜୀଙ୍କ ପ୍ରସ୍ତାବ ଗୃହୀତ ହେଲା । ସୁଭାଷ ହତୋତ୍ସାହ ହୋଇ ନଥିଲେ । ଆପଣାର ନୀତି ଆଦର୍ଶରେ ଅଟଳ । ଆପଣା ଢଙ୍ଗରେ ମୁକ୍ତି ସଂଗ୍ରାମ ଚଳାଇବା – ଏଇ ଲକ୍ଷ୍ୟରେ ଆଗେଇଲେ ।

ନେତାଜୀ ଥିଲେ ଦୃଢ଼ମନା, କର୍ତ୍ତବ୍ୟନିଷ୍ଠ । ଭାରତୀୟ ଜାତୀୟ କଂଗ୍ରେସର 'ସଭାପତି', ଏକ ମର୍ଯ୍ୟାଦାଜନକ ପଦବୀ । ସେ ଆସନଟିକୁ ସେ ଦୁଇଥର ଅଳଙ୍କୃତ କରିଥିଲେ (୧୯୩୮ ମସିହା ୧୮ ଜାନୁଆରୀରୁ ୧୯୩୯ ମସିହା ୨୮ ଜାନୁଆରୀ, ୧୯୩୯ ମସିହା ଜାନୁଆରୀ ୨୯ରୁ ୧୯୩୯ ମସିହା ଅପ୍ରେଲ୍ ୨୯ ତାରିଖ) । ସଭାପତି ଭାବେ ତାଙ୍କର ଉଦ୍‌ବୋଧନ ଥିଲା ଅତୀବ ଆକର୍ଷଣୀୟ । ଦାରିଦ୍ର୍ୟ ଦୂରୀକରଣ, ଶିକ୍ଷାର ପ୍ରସାର, ରୋଗମୁକ୍ତ ସମାଜ, ସାମ୍ୟବାଦ ଢାଞ୍ଚାରେ ଶାସନ, ବିଜ୍ଞାନ ସମ୍ମତ ନୀତି ଆଧାରିତ ଉତ୍ପାଦନ, ବନ – ଭାଷଣରେ ଏହାରି ଉପରେ ଗୁରୁତ୍ୱାରୋପ କରିଥିଲେ । ବିଶ୍ୱରେ ସାମ୍ରାଜ୍ୟବାଦର ବିଲୋପ ହେବ । ଏଥିପାଇଁ ପ୍ରଥମେ ଲୋଡ଼ା ବ୍ରିଟିଶ ସାମ୍ରାଜ୍ୟବାଦର ପତନ । ଜନତା ଜାଗତିଆର ରୁହନ୍ତୁ । ତାଙ୍କର ଲଢ଼େଇ ଜାତି ପାଇଁ । ଏମିତି ସୁଭାଷଙ୍କ ଉଦ୍‌ବୋଧନୀ । ଉପସ୍ଥିତ କଂଗ୍ରେସ କର୍ମୀଏ ଚଳଚଞ୍ଚଳ । ଶିରାରେ ଶିରାରେ ଜାତୀୟତାବାଦର ଉଷ୍ମତା । କଂଗ୍ରେସର କେତେକ ତୁଙ୍ଗନେତା, ସୁଭାଷଙ୍କ ନୀତିକୁ ବିରୋଧ କଲେ । କ୍ରମେ ଆଦର୍ଶଗତ ମତମତାନ୍ତର ସୃଷ୍ଟି ହେଲା । ଛ' ମାସରେ ଫିରିଙ୍ଗି ଗାଦି ଛାଡ଼ନ୍ତୁ– ଏଇ ମର୍ମରେ ବ୍ରିଟିଶ ସରକାରଙ୍କୁ ଚିଠି ଲେଖାଯିବ– ଏଇ ମତଟି ରଖିଲେ ସୁଭାଷ । ଗାନ୍ଧିଜୀ, ଜବାହରଲାଲ ନେହେରୁ– ଉଭୟ ତାହା ଗ୍ରହଣ କରିନଥିଲେ । ୧୯୩୯ ମସିହା, ଏପ୍ରିଲ ୧୦ ତାରିଖ, ଗାନ୍ଧିଜୀ ସୁଭାଷଙ୍କୁ ପତ୍ରଟେ ଲେଖିଲେ । ତାଙ୍କ ମତ ସମ୍ପୂର୍ଣ୍ଣ ଭିନ୍ନ । ସୁଭାଷଙ୍କ ସହ କଦାପି ସେ ଏକମତ ହୋଇପାରିବେନି– ଏଇଟି ଥିଲା ଚିଠିର ମର୍ମ । କ୍ରମେ ମତାନ୍ତର ତୀବ୍ର ରୂପ ନେଲା । ଉଭୟଙ୍କ ମଧ୍ୟରେ ମିଳାମିଶା ଏ ଦିଗରେ ପଦକ୍ଷେପ ନିଆଗଲା । ୧୯୩୯ ମସିହା ଏପ୍ରିଲ ମାସ ଶେଷ ସପ୍ତାହ । କଲିକତା ସହରର ୱେଲିଂଟନଠାରେ କଂଗ୍ରେସ କମିଟି ବୈଠକ ବସିଲା । ଗାନ୍ଧୀ, ସୁଭାଷ – ଦୁହେଁ ଏକ ମନ ଏକ ପ୍ରାଣ ହୋଇ କାର୍ଯ୍ୟ କରନ୍ତୁ । ଏମିତି ଏକ ପ୍ରସ୍ତାବ ଆସିଲା । ସବୁ ବ୍ୟର୍ଥ । ଅଭିମାନୀ ସୁଭାଷ । କଂଗ୍ରେସରୁ ଇସ୍ତଫା ଦେଲେ (୧୯୩୯ ମସିହା ଏପ୍ରିଲ ୨୯) । କବି ରବୀନ୍ଦ୍ରନାଥ ଠାକୁର, ସୁଭାଷଙ୍କୁ ଭଲ ପାଉଥିଲେ । ତାଙ୍କ ଆଦର୍ଶକୁ ବି । କଂଗ୍ରେସରୁ ଇସ୍ତଫା ପରେ ସୁଭାଷଙ୍କୁ ଚିଠି ଲେଖିଲେ । ତାଙ୍କର ନେତୃତ୍ୱର ପରାକାଷ୍ଠାକୁ ଅଭିନନ୍ଦନ ଜଣାଇଲେ ।

◆◆◆

ପଛ ଘୁଞ୍ଚା ନାହିଁ ବୀରର ଜାତକେ । ଏ କଥାଟି ସୁଭାଷଙ୍କଠାରେ ପୂର୍ଣ୍ଣ ପ୍ରମାଣିତ । ସୁଭାଷ ଗଢ଼ିଲେ 'ଫରୱାର୍ଡ଼ କ୍ଲବ୍' (୧୯୩୯ ମସିହା, ମଇ ୩ ତାରିଖ) । ଏଇଟି ଏକ ରାଜନୀତିକ ସଂଗଠନ । କଂଗ୍ରେସର ବହୁ ବାମପନ୍ଥୀ ଚିନ୍ତାଧାରାର କର୍ମୀ ଏକାଠି ହେଲେ । ଅନୁଷ୍ଠାନଟି କଂଗ୍ରେସର ଏକ ଶାଖା ଭାବେ ପରିଗଣିତ । ସୁଭାଷ ମୁଖପତ୍ରଟେ କାଢ଼ିଲେ । ନାଁ ଦେଲେ 'ଫରୱାର୍ଡ଼' । ତାହା ଥିଲା ସାପ୍ତାହିକୀ । ୧୯୨୨ ମସିହା କଥା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଗଢ଼ିଥିଲେ ସ୍ୱରାଜ୍ୟ ପାର୍ଟି । ସେ ବି କଂଗ୍ରେସରେ ଥିଲେ । ତାଙ୍କ ପଛରେ ଥିଲା ଜବାହରଲାଲ ନେହେରୁଙ୍କ ସମର୍ଥନ । ସେଇ ଆଶାଟି ସୁଭାଷଙ୍କର । କିନ୍ତୁ ସମୟ ବଦଳିଥିଲା । ଗାନ୍ଧିଜୀଙ୍କ ଦୃଢ଼ ସମର୍ଥକ ନେହେରୁ । ଫର୍ୱାର୍ଡ଼ ଦଳ ଆଡ଼େ ମୁହଁ ମୋଡ଼ିଲେ । ଏମିତି ଆହୁରି ଅନେକ । ସୁଭାଷ କିନ୍ତୁ ଦୃଢ଼ ନିଶ୍ଚିତ । ସେ ଆପଣା ଗୋଡ଼ରେ ଠିଆ ହେବେ । ସେ କାହାର ପ୍ରତିଛବି ଅବା ପ୍ରତିଧ୍ୱନି ନୁହଁନ୍ତି । ଏଇ ଆଦର୍ଶରେ ଆଗେଇଲେ । ଚେଷ୍ଟା ନ କରିବା, ଚେଷ୍ଟା କରି ବିଫଳ ହେବା– ଏ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ କଥା । ଭାବବିହ୍ୱଳ ସୁଭାଷ । ଥରେ କର୍ମୀମାନଙ୍କୁ ଶୁଣାଇଲେ ଆପଣାର ମନ କଥା– ରକ୍ତାକ୍ତ ସଂଘର୍ଷ ତାଙ୍କର ନାପସନ୍ଦ, ମାତ୍ର ଆବଶ୍ୟକ ହେଲେ ସେଥିପାଇଁ ପ୍ରସ୍ତୁତ ରହିବାକୁ ହେବ– ଏଇଟି ଥିଲା ତାଙ୍କ ପ୍ରାଣର କଥା । ଭାରତ ଚାହେଁ ଆଜାଦି । ଜାତି, ଧର୍ମ ନିର୍ବିଶେଷରେ ସମସ୍ତେ ଭାରତର ସନ୍ତାନ । ଭାରତର ମୁକ୍ତି ସଭିଙ୍କର କାମ୍ୟ । ନେତାଜୀ ସାରା ଭାରତବର୍ଷ ବୁଲିଲେ । ସଭା ସମିତିରେ ଏଇ ବାର୍ତ୍ତାଟି ବାଣ୍ଟିଲେ । ତାଙ୍କ ପ୍ରତି ଜନତାଙ୍କ ସମର୍ଥନ ସୁଅ ଛୁଟିଲା । ଭାରତରେ ଚହଳ ପଡ଼ିଲା । ବ୍ରିଟିଶ ସରକାର ତ୍ରସ୍ତ, ଶେଷରେ ନେତାଜୀଙ୍କୁ ନଜରବନ୍ଦୀ କଲେ । ତାଙ୍କର ହଜାର ହଜାର ସମର୍ଥକ, ସେମାନେ ବି କାରାକଷଣ ଭୋଗିଲେ । ଆପଣା ଦେଶରେ ବିରୋଧ, ଇଂରେଜଙ୍କ ଶ୍ୟେନ ଦୃଷ୍ଟି । ଭାରତରେ ରହି ଲଢ଼ିବା ଆଉ ସମ୍ଭବ ନୁହେଁ । ଦେଶ ପାଇଁ ବିଦେଶ ଯାତ୍ରା । ଏଇଟି ଥିଲା ସୁଭାଷଙ୍କ ଶେଷ ସିଦ୍ଧାନ୍ତ । ଛଦ୍ମବେଶରେ ଦେଶ ଛାଡ଼ିଲେ (୧୯୪୧ ମସିହା ଜାନୁଆରୀ ୧୬), ପହଞ୍ଚିଲେ ମସ୍କୋରେ (୧୯୪୧ ମସିହା ମାର୍ଚ୍ଚ ୨୮ ତାରିଖ) । ସାକ୍ଷାତ କଲେ ଷ୍ଟାଲିନ୍‌ଙ୍କୁ । ରୁଷ୍‌ର ବ୍ରିଟେନ୍ ସହ ମଧୁର ସମ୍ପର୍କ । ବ୍ରିଟେନ ବିରୋଧରେ ସୁଭାଷଙ୍କ ଲଢ଼େଇ । ଏ କଥାକୁ ଷ୍ଟାଲିନ୍ ଠିକ୍ ଭାବେ ନେଇନଥିଲେ । ମାତ୍ର ଭାରତରେ ଇଂରେଜ ଶାସନର ବିଲୋପ, ଏଥିପାଇଁ ନୈତିକ ସମର୍ଥନ ଦେଇଥିଲେ ।

ମସ୍କୋ ପରେ ସୁଭାଷଙ୍କ ଜର୍ମାନ୍ ଯାତ୍ରା । ବର୍ଲିନ୍‌ରେ ପହଞ୍ଚି ଜର୍ମାନ୍ ସରକାରଙ୍କୁ ଗୋଟେ ସ୍ମାରକପତ୍ର ଦେଲେ । ହିଟ୍‌ଲର ଜଣେ ଏକଛତ୍ରବାଦୀ ଶାସକ । ନେତାଜୀଙ୍କ ପ୍ରସ୍ତାବ ତଥା ଭାରତର ସ୍ୱାଧୀନତା ପ୍ରାପ୍ତି– ଏ ଦିଗରେ ପ୍ରଥମେ ଅନୁକୂଳ ମତ ରଖି ନଥିଲେ । ନେତାଜୀ ଜଣେ ପ୍ରଚଣ୍ଡ ପ୍ରତିଭାଧାରୀ ଯୁବନେତା । ହିଟ୍‌ଲର ଏ କଥା ଅନୁଭବ କଲେ । ବ୍ରିଟିଶ ସରକାରଙ୍କ ପଶୁବଳର ବିଲୋପ ପାଇଁ ତାଙ୍କ ଲଢ଼େଇ । ହିଟଲର ଏ କଥା ହୃଦୟଙ୍ଗମ କଲେ । ଜର୍ମାନ୍ ସରକାର ସବୁ ପ୍ରକାର ସାହାଯ୍ୟ ଯୋଗାଇଦେବେ– ଏ ପ୍ରତିଶ୍ରୁତି ହିଟଲର ଦେଲେ । ଜର୍ମାନ୍ ସରକାରଙ୍କ ବୈଦେଶିକ ବିଭାଗ ସ୍ୱତନ୍ତ୍ର ଭାରତ ବିଭାଗଟେ (ସ୍ପେଶାଲ ବ୍ୟୁରୋ ଅଫ୍ ଇଣ୍ଡିଆ) ସୃଷ୍ଟି କଲେ । ଉତ୍ସାହିତ ସୁଭାଷ ନିଜେ ତିଆରି କଲେ ମୁକ୍ତ ଭାରତ କେନ୍ଦ୍ର (ଫ୍ରି ଇଣ୍ଡିଆ ସେଣ୍ଟର) । ତାଙ୍କର ସହଯୋଗୀ କୁମାରୀ ଏମିଲି ଶେଙ୍କେଲ । ବହୁ ଉତ୍ସାହୀ ଭାରତୀୟ, ସେମାନଙ୍କ ମଧ୍ୟରେ ହବିବୁର ରେହମାନ୍, ଏନ୍.ଜି. ସ୍ୱାମୀ, ଏନ୍.ଜି. ଗାନ୍ ପୁଲେ, ଏମ୍.ଆର୍. ବ୍ୟାସ, ଏ.ସି.ଏନ୍ ନାମ୍ବିଆର, ଡକ୍ଟର ସୁଲତାନ, ଡକ୍ଟର ମଲ୍ଲିକ ପ୍ରମୁଖ ଅଗ୍ରଗଣ୍ୟ । ଏମାନେ ଫ୍ରି ଇଣ୍ଡିଆ ସେଣ୍ଟରର ପ୍ରମୁଖ ଭୂମିକାରେ । ସେଠାରେ ଉଡ଼ିଲା ଭାରତୀୟ ତ୍ରିରଙ୍ଗା । ପତାକାର ମଧ୍ୟସ୍ଥଳରେ ଏକ ଲମ୍ଫ ପ୍ରଦାନକାରୀ ବାଘ ଚିତ୍ର । ବାଘ ଚେତନର ପ୍ରତୀକ । ତା'ର ଲମ୍ଫ ପ୍ରଦାନ ଶିକାର କରିବାର ଠାଣି । ବାଘ ଶିକାର ଝିଙ୍କି ଆଣେ, ସେମିତି ଫ୍ରି ଇଣ୍ଡିଆ ଫିରିଙ୍ଗିଠାରୁ କ୍ଷମତା ଛଡ଼ାଇ ଆଣିବ । ଏଇଟି ପତାକାଟିର ବିଶେଷତ୍ୱ । ଜର୍ମାନୀରେ ସ୍ୱାଧୀନ ସରକାର ଗଠିତ ହେବ । ସମର୍ଥନ ମିଳିବ ଜର୍ମାନୀ, ଜାପାନ, ଇଟାଲୀଠାରୁ । ଏଇ ଆଶାଟି ପୋଷଣ କଲେ ସୁଭାଷ । ଆପଣା କର୍ତ୍ତବ୍ୟ ପଥରେ ଅଗ୍ରସର ହେଲେ ।

ସାରା ବିଶ୍ୱରେ ଦ୍ୱିତୀୟ ମହାସମରର ତାଣ୍ଡବ (୧୯୩୯-୧୯୪୫) । ଇଂରେଜ ହଟାଇବାର ସୁବର୍ଣ୍ଣ ସୁଯୋଗ । ସୁଭାଷ ଉତ୍ସାହିତ । ଜର୍ମାନୀରେ ତାଙ୍କ ଯୋଜନା ପ୍ରସ୍ତୁତ କଲେ । ଅକ୍ଷୟ ଶକ୍ତି (ଏକ୍ସିସ ପାୱାର) ପାଖରେ ବହୁ ଭାରତୀୟ ଯୁଦ୍ଧବନ୍ଦୀ । ସେମାନଙ୍କୁ ନେଇ ଗଠିତ ହେଲା 'ଆଜାଦ୍ ହିନ୍ଦ୍ ଫୌଜ' । ଯୁଦ୍ଧରେ ଜର୍ମାନୀର କ୍ରମାଗତ ବିଜୟ, ଉତ୍ସାହୀ ହିଟ୍‌ଲର । ଗୋଟେ ପରେ ଗୋଟେ ଦେଶ ଆକ୍ରମଣ । ତାଙ୍କ ପାଖରେ ବହୁ ସଂଖ୍ୟକ ଯୁଦ୍ଧବନ୍ଦୀ, ସେମାନଙ୍କ ମଧ୍ୟରୁ ୨୫୦୦ ଜଣ ଯୋଗଦେଲେ ଆଜାଦ୍ ହିନ୍ଦ୍ ଫୌଜରେ । ସେମାନେ ବିଭିନ୍ନ ଧର୍ମର । ପରସ୍ପର ମଧ୍ୟରେ ସମ୍ଭାଷଣ । ଏଥିପାଇଁ 'ଜୟ ହିନ୍ଦ୍' ସୃଷ୍ଟି କରାଗଲା । ଜୟ ଅର୍ଥାତ୍ ବିଜୟ, ହିନ୍ଦ୍ ଅର୍ଥାତ ଭାରତ । 'ଜୟ ହିନ୍ଦ୍' କହିଲେ ଭାରତର ଜୟ । ଆଜାଦ୍ ହିନ୍ଦ୍ ଫୌଜର ନେତା ସୁଭାଷ । ତାଙ୍କୁ 'ନେତାଜୀ' ସମ୍ବୋଧନ କରାଗଲା । ରବୀନ୍ଦ୍ରନାଥ ଠାକୁର ତାଙ୍କୁ ପ୍ରଥମେ 'ନେତାଜୀ' କହିଥିଲେ । ହିଟଲର ମଧ୍ୟ ତାଙ୍କୁ ଏହି ମର୍ମରେ ସମ୍ବୋଧନ କଲେ । ମୋତେ ରକ୍ତ ଦିଅ, ମୁଁ ସ୍ୱାଧୀନତା ଦେବି– ଏହା ଥିଲା ସୁଭାଷଙ୍କ ଅଗ୍ନୀବର୍ଷୀ ଆହ୍ୱାନ । ଆଜାଦ୍ ହିନ୍ଦ୍ ଫୌଜର 'ଜୟ ହିନ୍ଦ୍'– ଏବେବି ଭାରତୀୟ ପ୍ରତିରକ୍ଷା ବାହିନୀରେ ଅତୁଟ । ରବୀନ୍ଦ୍ର ନାଥଙ୍କ 'ଜନ-ଗଣ-ମନ' ଆଜାଦ୍ ହିନ୍ଦ୍ ଫୌଜର ଜାତୀୟ ସଙ୍ଗୀତ ।

ନେତାଜୀ ଜଣେ ବିଚକ୍ଷଣ ରାଜନୀତିଜ୍ଞ । କେବଳ ଜର୍ମାନୀ ନୁହେଁ, ଜାପାନ, ଇଟାଲୀ ସହ ସୁସମ୍ପର୍କ ରଖିଲେ । ସେତେବେଳେ ଜର୍ମାନରେ 'ନାଜୀବାଦ', ଇଟାଲିରେ 'ଫାଶିବାଦ' । ହିଟଲରଙ୍କ ପରି ମୁଶୋଲିନ, ସେ ବି ଏକଛତ୍ରବାଦୀ । ତାହା ବିଶ୍ୱ ପାଇଁ ଶୁଭ ସଙ୍କେତ ନଥିଲା । ବିଶ୍ୱରେ ବିଶ୍ୱାସ-ଅବିଶ୍ୱାସର ଏକ ତୁଳ ତଣ୍ଟୁଳିତ ବାତାବରଣ । ଘଟଣା କଡ଼ ଲେଉଟେଇଲା । ରୁଷ ଜର୍ମାନ୍ ସହ ଚୁକ୍ତି ଭଙ୍ଗ କଲା । ଜର୍ମାନ ଆକ୍ରମଣ କଲା । ତେଣେ ଜାପାନର ଆମେରିକାର ନୌଘାଟି ଉପରେ ପ୍ରଚଣ୍ଡ ଆକ୍ରମଣ । ଜାପାନ-ଜର୍ମାନୀ-ଇଟାଲି – ଏମାନେ ଆକ୍ସିସ ପାୱାର । ଜାପାନର ଘୋର ଯୁଦ୍ଧ ମିତ୍ର ଶକ୍ତି ବିରୋଧରେ । ଅଳ୍ପ ସମୟ ଭିତରେ ଅଧିକାର କଲା ଫିଲିପାଇନ୍‌ସ, ଇଣ୍ଡୋନେସିଆ, ମାଲେସିଆ । ବର୍ମା, ସିଙ୍ଗାପୁର ବି ଦଖଲ କଲା । ଜାପାନୀ ସୈନ୍ୟ ରେଙ୍ଗୁନ୍ ଅଧିକାର କଲେ (୧୯୪୨ ମସିହା ମାର୍ଚ୍ଚ) । ଯୁଦ୍ଧ ଭାରତର ସମୀପବର୍ତ୍ତୀ । ନେତାଜୀ ଏହାର ସୁଯୋଗ ନେଲେ । ଭାରତର ପୂର୍ବ ସୀମାନ୍ତ । ସେଇଠାରୁ ମୁକ୍ତି ସଂଗ୍ରାମ ଚଳାଇବା ପାଇଁ ସଜବାଜ ହେଲେ । ଏଇ ସୁବିଧାରେ ନେତାଜୀ ଜାପାନ ଯାତ୍ରା କଲେ । ଯାତ୍ରାର ଏକମାତ୍ର ମାଧ୍ୟମ ଜାପାନୀ ନୌବାହିନୀ କିନ୍ତୁ ନେତାଜୀ ଜଣେ ସିଭିଲିଆନ୍ । ଜାପାନୀ ସେନା ଆପତ୍ତି ଉଠାଇଲେ । ଜର୍ମାନୀର ବୈଦେଶିକ ଦପ୍ତରର ଜଣେ ବରିଷ୍ଠ ପଦାଧିକାରୀ, ତାଙ୍କ ନାଁ ଡକ୍ଟର ଆଡ଼ାମ୍‌ଭନ ଟ୍ରଟ । ଭାରତୀୟ ମୁକ୍ତିବାହିନୀ (ଇଣ୍ଡିଆନ ଲିବରେସନ ଫ୍ରି)ର ନେତାଜୀ କମାଣ୍ଡର-ଇନ୍-ଚିଫ୍ । ଏକଥା ଘୋଷଣା କଲେ । ନେତାଜୀ ଜାପାନୀ ବୁଡ଼ା ଜାହାଜରେ ଜାପାନ ଗଲେ । ଆଉ ଜଣେ ଭାରତୀୟ ମୁକ୍ତିସଂଗ୍ରାମୀ ରାସବିହାରୀ ବୋଷ । ଭାରତର ସ୍ୱାଧୀନତା ପ୍ରତି ଜାପାନୀଙ୍କ ଆଗ୍ରହ ବଢ଼ାଇ ଚାଲିଥାଆନ୍ତି । ଜାପାନର ଗୋଟେ ଉଗ୍ରବାଦୀ ସଂଗଠନ, ଏଥି ସହିତ ତାଙ୍କର ନିୟମିତ ସମ୍ପର୍କ । ରାସବିହାରୀ 'ଭାରତ ସ୍ୱାଧୀନତା ଲିଗ୍'ର ପ୍ରତିଷ୍ଠାତା । ଜାପାନୀ ଭାଷାରେ ଗୋଟେ ଖବର କାଗଜ କାଢ଼ିଲେ । ଫିରିଙ୍ଗି ଶାସନାଧୀନ ଭାରତୀୟ । ସେମାନଙ୍କର ନାହିଁ ନଥିବା ଦୁର୍ଦ୍ଦଶା । ସେଇ ଖବର କାଗଜଟିକୁ ମାଧ୍ୟମ କଲେ ରାସବିହାରୀ । ଭାରତର ମୁକ୍ତିଯୁଦ୍ଧ ସମ୍ବନ୍ଧରେ ଜାପାନବାସୀଙ୍କୁ ଅବଗତ କଲେ । ରାସବିହାରୀ 'ଆଜାଦ୍ ହିନ୍ଦ୍ ସଂଘ' ଗଠନ କରିଥିଲେ । ଭିନ୍ନ ଭିନ୍ନ ସ୍ଥାନରେ ସଂଘର ସଭାସମିତି । ତା'ରି ମାଧ୍ୟମରେ ଜାତି-ପ୍ରୀତି- ଉଦ୍ରେକ କଲା ସେଇ ସଂଗଠନ । ୧୯୪୨ ମସିହା ଅଗଷ୍ଟ ୮ ତାରିଖ । କଂଗ୍ରେସର ଭାରତଛାଡ଼ ଆନ୍ଦୋଳନ ଡାକରା, ଗାନ୍ଧିଜୀଙ୍କ 'କର ବା ମର' ପ୍ରତିଜ୍ଞା । ଏପରି ଆହ୍ୱାନ ନେତାଜୀ, ତାଙ୍କ ଅନୁଗାମୀଙ୍କୁ ଉତ୍ସାହିତ କଲା । ପୂର୍ବ ଏସିଆରେ ଭାରତୀୟଙ୍କର ଅଭୂତପୂର୍ବ ଉତ୍ସାହ । ମାଳୟରେ ବହୁ ଭାରତୀୟ ସୈନ୍ୟ ଜାପାନ ନିକଟରେ ଆତ୍ମସମର୍ପଣ କଲେ । ସେଇମାନେ ଆଜାଦ୍ ହିନ୍ଦ ଫୌଜରେ ମିଶିଲେ ।

ଦାୟିତ୍ୱରେ ରହିଲେ କ୍ୟାପ୍ଟେନ୍ ମୋହନ ସିଂହ । ତାଙ୍କ ସହ କ୍ୟାପ୍ଟେନ୍ ମହମ୍ମଦ ଆକ୍ରମ, ସେମାନଙ୍କ କମାଣ୍ଡିଂ ଅଫିସର ଲେଫ୍ଟନାଣ୍ଟ କର୍ଣ୍ଣେଲ ଫିଜ୍ ପ୍ୟାଟ୍ରିକ୍ । ସମସ୍ତେ ଖୁବ୍ ଦୁଃସାହସୀ ।

ଆଜାଦ୍ ହିନ୍ଦ ଫୌଜ ଗଠିତ ହେଲା (୧୯୪୨), ପ୍ରଥମେ ଏଥିରେ ଥିଲେ ୧୭,୦୦୦ ଭାରତୀୟ ସୈନିକ । ଅନ୍ୟୂନ ୨୩,୦୦୦ ବଳକା ସୈନ୍ୟ ସ୍ୱେଚ୍ଛାସେବୀ ବାହିନୀରେ । ଏମାନଙ୍କ ମଧ୍ୟରେ ହିନ୍ଦୁ, ମୁସଲମାନ, ଶିଖ୍ ଆଦି ବିଭିନ୍ନ ଧର୍ମାବଲମ୍ବୀ । ସେମାନଙ୍କ ପୋଷାକ ହାଫ୍‌ପ୍ୟାଣ୍ଟ, ଖାକି ସାର୍ଟ । କ୍ୟାପ୍ଟେନ ମୋହନ ସିଂହ ସମ୍ପୂର୍ଣ୍ଣ ପ୍ରସ୍ତୁତ । ତାଙ୍କରି ନେତୃତ୍ୱରେ ଆଜାଦ୍ ହିନ୍ଦ ଫୌଜ, ଆଗେଇଲେ ବର୍ମା ଆଡ଼େ । ତାଙ୍କର ଏ ପଦକ୍ଷେପକୁ ଜାପାନ ବିରୋଧ କଲା । ଶେଷରେ ଜାପାନୀ ସୈନ୍ୟ ମୋହନ ସିଂହଙ୍କୁ ବନ୍ଦୀ କଲେ । ଭାଳେଣି ପଡ଼ିଲା । ସର୍ବସମ୍ମତିକ୍ରମେ ପ୍ରସ୍ତାବଟେ ଗୃହୀତ ହେଲା । ଜର୍ମାନ୍ ସରକାର ବି ସମର୍ଥନ କଲେ । ସୁଭାଷ ବୋଷ ଆଜାଦ୍ ହିନ୍ଦ୍ ଫୌଜର ହେଲେ କର୍ଣ୍ଣଧାର । ୧୯୪୩ ମସିହା ଜୁଲାଇ ୪ ତାରିଖ । ଭାରତୀୟ ସ୍ୱାଧୀନତା ସମିତିରେ ହଜାର ହଜାର ଜାତିପ୍ରେମୀ । ସିଙ୍ଗାପୁରରେ ଏକ ବର୍ଣ୍ଣାଢ଼୍ୟ ପରିବେଶ । ରାସ ବିହାରୀ ବୋଷ, ନେତାଜୀଙ୍କୁ ଆଜାଦ୍ ହିନ୍ଦ୍ ଫୌଜ ଦାୟିତ୍ୱ ହସ୍ତାନ୍ତର କଲେ । ସୁଭାଷ ଚନ୍ଦ୍ର ବୋଷ ଜିନ୍ଦାବାଦ – ଧ୍ୱନିରେ ଗଗନ ପବନ ମୁଖରିତ । ସତେ ଯେମିତି ଜଣେ ଦେବଦୂତଙ୍କର ଧରାବତରଣ । ଜାତୀୟ ସଙ୍ଗୀତ ଗାନ କରାଗଲା । ଜଣେ ଭାରତୀୟ ଗାୟିକା କୁମାରୀ ସରସ୍ୱତୀ । ହୃଦୟସ୍ପର୍ଶୀ ଗୀତଟେ ଗାଇଲେ । ସୁଭାଷଜୀ ହିନ୍ଦୁସ୍ଥାନ ଆଣିଦେବେ । ଏଇଟି ଥିଲା ଗୀତର ସାରମର୍ମ । ୧୯୪୩ ମସିହା ଜୁଲାଇ ୬ ତାରିଖ । ଜାପାନର ପ୍ରଧାନମନ୍ତ୍ରୀ ତେଜୋ, ତାଙ୍କ ସହ ସୁଭାଷ । ଆଜାଦ୍ ହିନ୍ଦ୍ ଫୌଜର ଏକ ସୁଦୃଶ୍ୟ ପ୍ୟାରେଡ୍ । ସେଥିରେ ଉଭୟଙ୍କୁ ଅଭିବାଦନ ପ୍ରଦାନ କରାଗଲା । ନେତାଜୀ ଆପଣା କୌଶଳରେ ଲାଗିପଡ଼ିଥିଲେ । ରେଙ୍ଗୁନ୍‌ଠାରେ ବର୍ମାର ନେତୃବୃନ୍ଦଙ୍କ ସହ ଆଲୋଚନା ଆରମ୍ଭ କଲେ । ବର୍ମାରେ ଆଜାଦ୍ ହିନ୍ଦ୍ ଫୌଜର ରହିବା, ଅବାଧ ଚଳପ୍ରଚଳ ସିଦ୍ଧାନ୍ତ ରଖାଗଲା । ସୁଭାଷ ଆଜାଦ୍ ହିନ୍ଦ୍ ଫୌଜର ମୁଖ୍ୟ ସେନାଧ୍ୟକ୍ଷ । ଜାପାନୀମାନେ ଇଂରେଜଙ୍କ ହାତରୁ ଆଣ୍ଡାମାନ ଦ୍ୱୀପପୁଞ୍ଜ ଛଡ଼ାଇନେଲେ । ସେଠାରେ ସୁଭାଷ ଅସ୍ଥାୟୀ ଆଜାଦ୍ ହିନ୍ଦ ସରକାର ଗଠନ କଲେ । ଆଜାଦ୍ ହିନ୍ଦ୍ ଫୌଜରେ ଗଠିତ ହେଲା ଝାନ୍ସିରାଣୀ ରେଜିମେଣ୍ଟ । ମୁଖ୍ୟ ଦାୟିତ୍ୱରେ ଡକ୍ଟର ଲକ୍ଷ୍ମୀ ସେହଗଲ । ତାହା ଥିଲା ବିଶ୍ୱର ପ୍ରଥମ ମହିଳା ସୈନ୍ୟବାହିନୀ । ମହିଳା ରେଜିମେଣ୍ଟରେ ମାଲେସିଆର ବହୁ ମହିଳା, ଏମାନେ ରବର ଚାଷୀଙ୍କର ପତ୍ନୀ ଅବା ଭଉଣୀ । ଏହି ମହିଳା ସୈନ୍ୟବାହିନୀ ଉଲ୍ଲେଖନୀୟ ଦେଶପ୍ରେମର ନିଦର୍ଶନ ।

ଆଜାଦ୍ ହିନ୍ଦ୍ ଅସ୍ଥାୟୀ ସରକାର । ଏହାର ମୁଖ୍ୟ କାର୍ଯ୍ୟାଳୟ ସିଙ୍ଗାପୁର । ସର୍ବପ୍ରଥମେ ଜାପାନଠାରୁ ସ୍ୱୀକୃତି ପାଇଲା । ପରେ ପରେ ଜର୍ମାନୀ, ଇଟାଲୀ, କ୍ରୋଏସିଆ, ସ୍ପେନ୍, ଆୟାର୍ଲାଣ୍ଡ, ବର୍ମା – ଏସବୁ ଦେଶ ସ୍ୱୀକୃତି ଦେଲେ । ଆଜାଦ୍ ହିନ୍ଦ୍ ଅସ୍ଥାୟୀ ସରକାରର ସଭାପତି ସ୍ୱୟଂ ସୁଭାଷ । ଶେଷରେ ସୁଭାଷ ଯୁକ୍ତରାଷ୍ଟ୍ର ଆମେରିକା, ବ୍ରିଟେନ ବିରୋଧରେ ଯୁଦ୍ଧ ଘୋଷଣା କଲେ । ଜାପାନ ଦ୍ୱାରା ଅଧିକୃତ ଆଣ୍ଡାମାନ ଆଉ ନିକୋବର ଦ୍ୱୀପପୁଞ୍ଜ । ଦ୍ୱୀପ ଦୁଇଟି ସୁଭାଷଙ୍କୁ ହସ୍ତାନ୍ତରିତ କରାଗଲା । ଆଣ୍ଡାମାନକୁ ଶହୀଦ୍, ନିକୋବରକୁ ସ୍ୱରାଜ – ଏଇ ନାମରେ ନାମିତ କଲେ ସୁଭାଷ । ଜାଭା, ବୋର୍ଣ୍ଣିଓ, ସୁମାତ୍ରା ଆଦି ଦ୍ୱୀପପୁଞ୍ଜ । ସେଠାରେ ନେତାଜୀ ଭାରତୀୟମାନଙ୍କୁ ସମ୍ବୋଧନ କଲେ । ତାଙ୍କ ସପକ୍ଷରେ ସମର୍ଥନ ଜୁଟାଇବେ ।

୧୯୪୪ ମସିହା ଜାନୁଆରୀ ୭ ତାରିଖ । ଆଜାଦ୍ ହିନ୍ଦ୍ ସରକାରଙ୍କ ମୁଖ୍ୟ କାର୍ଯ୍ୟାଳୟ, ସ୍ଥାନାନ୍ତରିତ ହେଲା ରେଙ୍ଗୁନ୍‌କୁ । ବ୍ରିଟିଶ ସୈନ୍ୟ ଯୁଦ୍ଧରେ ଆତ୍ମସମର୍ପଣ କରିଥିଲେ । ସେମାନଙ୍କ ଯୁଦ୍ଧ ସରଞ୍ଜାମ, ଟ୍ୟାଙ୍କ୍, କମାଣ, ମେସିନ୍ ଗନ୍, ବନ୍ଧୁକ, ନେବା ଆଣିବା ଗାଡ଼ି, ସବୁ ଅକ୍ତିଆର କଲେ ଜାପାନୀ ସୈନ୍ୟ । ନେତାଜୀ ସେଗୁଡ଼ିକ କମ୍ ଦାମ୍‌ରେ କିଣିଲେ । ଯୁଦ୍ଧ ପରିଚାଳନା ପାଇଁ ପାଞ୍ଚଟି ତାଲିମ କେନ୍ଦ୍ର, ସେଠାରେ ସୈନ୍ୟମାନଙ୍କୁ ହିନ୍ଦୀ ଭାଷାରେ ଶିକ୍ଷା ଦିଆଗଲା ।

ଆଜାଦ୍ ହିନ୍ଦ୍ ଫୌଜର ପ୍ରାୟ ୬୦,୦୦୦ ସୈନ୍ୟବଳ । ଝାନ୍‌ସୀ ରାଣୀ ରେଜିମେଣ୍ଟରେ ଅନ୍ୟୂନ ବାରଶହ ନାରୀ ସୈନ୍ୟ । ଆସିଲା ପ୍ରତୀକ୍ଷିତ ମୁହୂର୍ତ୍ତ । ୧୯୪୪ ମସିହା ଜାନୁଆରୀ ୨୭ ତାରିଖ, ଜାପାନର ସେନାନାୟକ କତାକୁରା, ତାଙ୍କ ସହ ନେତାଜୀ । ସିଦ୍ଧାନ୍ତଟେ ନିଆଗଲା । ଆଜାଦ୍ ହିନ୍ଦ୍ ଫୌଜ ଭାରତ ଆକ୍ରମଣ କରିବ, ଜାପାନ ସାହାଯ୍ୟ ଦେବ । ତା' ପରଦିନ ଘଟଣା । ରେଙ୍ଗୁନ୍ ସହରର କୋଚିନ୍ ସ୍କୁଲ୍ । ସୁଭାଷଙ୍କ ପ୍ରାୟ ୫୦,୦୦୦ ସୈନ୍ୟ ସେଠାରେ ଠୁଳ ହେଲେ । ପରସ୍ପରକୁ 'ଜୟ ହିନ୍ଦ୍'ରେ ସମ୍ବୋଧନ, ଅଭିନନ୍ଦନ । ସେଇ ସୈନ୍ୟଙ୍କ ମଧ୍ୟରେ ପାଞ୍ଚ ହଜାରରୁ ଅଧିକ ଓଡ଼ିଆ । ନେତାଜୀଙ୍କର ବ୍ୟକ୍ତିଗତ ଦେହରକ୍ଷୀ ପାଞ୍ଚଜଣ ଜେନେରାଲ । ଜାପାନ ନେତାଜୀଙ୍କୁ ଗୁପ୍ତ ସମ୍ବାଦଟେ ଦେଲା । ଜାପାନ ଇମ୍ଫାଲ ଉପରେ ଆକ୍ରମଣ କରିବ । ନେତାଜୀ ଆଉ କାଳକ୍ଷେପଣ କରି ନଥିଲେ । ଆଜାଦ୍ ହିନ୍ଦ୍ ଫୌଜର ନାଁ ଡାକ ଅଫିସରମାନେ । ସୈନ୍ୟସାମନ୍ତ ନେଇ ବର୍ମା ସୀମାନ୍ତରେ । ସିଙ୍ଗାପୁରରୁ ବର୍ମା । ଏକ ସୁଦୀର୍ଘ ପଥ । ଆଜାଦ୍ ହିନ୍ଦ୍ ଫୌଜର ସୈନ୍ୟମାନେ ପାଦରେ ଚାଲି ଚାଲି ଅତିକ୍ରମ କଲେ । ନେତାଜୀ ସାଥିରେ । ସୈନ୍ୟବଳଙ୍କ ମନୋବଳ ବଢ଼ାଉ ଥାଆନ୍ତି । 'ଦିଲ୍ଲୀ ଚଲୋ, ଦିଲ୍ଲୀ ଚଲୋ' – ନେତାଜୀଙ୍କ ଡାକରା । ତାଙ୍କ ପଦାତିକ ବାହିନୀର ଶତସିଂହର ହୁଙ୍କାର । ଆଜାଦ୍ ହିନ୍ଦ୍ ଫୌଜ ଭାରତ ସୀମାରେ ପ୍ରବେଶ କଲେ (୧୯୪୪ ମସିହା ମାର୍ଚ୍ଚ ୧୯) । ବ୍ରିଟିଶ ଫଉଜ ସଂଖ୍ୟାଧିକ । ଆଜାଦ୍ ହିନ୍ଦ୍ ଫୌଜଙ୍କ ଲଢୁଆ ପ୍ରଦର୍ଶନ ଥିଲା ଅତୀବ ପ୍ରଶଂସନୀୟ । ସେମାନେ ମଣିପୁର ମଏରାଙ୍ଗ ସହର ଦଖଲ କଲେ । କର୍ଣ୍ଣେଲ ମଲ୍ଲିକ ଉଡ଼ାଇଲେ ଭାରତୀୟ ତ୍ରିରଙ୍ଗା (୧୯୪୪ ମସିହା ଏପ୍ରିଲ ୧୪) । ମଣିପୁର ପାହାଡ଼ ଉପରେ ଉଡ଼ିଲା ୭୫ ଦିନ । ଇମ୍ଫାଲ ସହରକୁ ଜାପାନ ସବୁ ଦିଗରୁ ରାସ୍ତା ବନ୍ଦ କରି ଦେଇଥିଲା । ଲଢ଼େଇର ଚରମ ପ୍ରସ୍ତୁତି । ଇଂରେଜ ସରକାର ନିଜ ବାହିନୀକୁ ସହଯୋଗ ଯୋଗାଇ ଦେଲା । ଆକାଶ ମାର୍ଗରୁ ଖାଦ୍ୟ ପଦାର୍ଥ, ଅସ୍ତ୍ରଶସ୍ତ୍ର ପକାଇଲା । ଏ କ୍ଷେତ୍ରରେ ଜାପାନ ବାୟୁ ସେନା ଅସଫଳ ହେଲା । ଜାପାନୀ ସୈନ୍ୟଙ୍କ ସହ ଆଜାଦ୍ ହିନ୍ଦ୍ ଫୌଜ ପାଇଁ ଘୋର ଖାଦ୍ୟାଭାବ । ତେଣେ ଲଗାଣ ବର୍ଷା ଲାଗି ରହିଲା । ପ୍ରକୃତି ସହ ଭାଗ୍ୟ ହେଲା ପ୍ରତିକୂଳ । ଇମ୍ଫାଲକୁ ଜାପାନ ସୁରକ୍ଷା ଦେଇ ପାରିଲାନି । ଆସିଲା ଘୋର ଦୁର୍ଦ୍ଦିନ । ନେତାଜୀ ତାଙ୍କ ବାହିନୀଙ୍କୁ ଉତ୍ସାହ ଦେଉଥାଆନ୍ତି । ଭୋକ ଉପାସରେ ଅନେକ ସୈନ୍ୟ ମୃତ୍ୟୁବରଣ କଲେ । ପୁଣି ଏକ ଦୁର୍ଭାଗ୍ୟ । ଜାପାନୀ ସୈନ୍ୟ ତୁରନ୍ତ ଭାରତ ସୀମା ଛାଡ଼ିବାକୁ ନିର୍ଦ୍ଦେଶ ଆସିଲା (୧୯୪୪ ମସିହା ଜୁଲାଇ ୨୮) । ବୁଦ୍ଧିମାନ ନେତାଜୀ । ଯୁଦ୍ଧରେ ବୀରତ୍ୱ ପ୍ରଦର୍ଶନକାରୀ ସୈନ୍ୟସାମନ୍ତ । ସେମାନଙ୍କୁ ପୁରସ୍କୃତ କଲେ । ଜାପାନୀ ସୈନ୍ୟଙ୍କ ସହ ଆଜାଦ୍ ହିନ୍ଦ୍ ଫୌଜ ସମ୍ପୂର୍ଣ୍ଣ ରୂପେ ବର୍ମାରୁ ବିତାଡ଼ିତ ହେଲେ । ଏହାର ମୁଖ୍ୟ କାରଣ ଆମେରିକା–ବ୍ରିଟେନ୍ ଉଭୟଙ୍କ ମିଳିତ ଆକ୍ରମଣ । ଜାପାନୀ ସେନା, ଆଜାଦ୍ ହିନ୍ଦୀ ଫୌଜ ହେଲେ ଧ୍ୱସ୍ତ ବିଧ୍ୱସ୍ତ । ନେତାଜୀ ହାରିଯିବା ବ୍ୟକ୍ତି ନଥିଲେ । ପୁନଃ ସଂଗଠିତ କଲେ ଆପଣା ବାହିନୀକୁ । ପୁନଶ୍ଚ ଲଢ଼େଇ । ମାଣ୍ଡାଲେ ନିକଟବର୍ତ୍ତୀ ଇରାବତୀ ନଦୀ କୂଳ, ମୂକସାକ୍ଷୀ ଆଜାଦ୍ ହିନ୍ଦ୍ ଫୌଜର ଶେଷ ଲଢ଼େଇର । ନେତାଜୀ ଏଥିରେ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ ଥିଲେ । ସେ ଜିଦ୍‌ରେ ଅଟଳ । ତାଙ୍କ ସୈନ୍ୟଙ୍କ ସହ ରହିବେ । ନିଜ ଫୌଜର ମୁଖ୍ୟ ସେନାପତି କିଆନି । ତାଙ୍କରି ଉଦ୍ଦେଶ୍ୟରେ ବାର୍ତ୍ତାଟେ ପଠାଇଲେ– ''ମୁଁ ଏହିଠାରେ ହିଁ ମରିବି ।'' ଏ ଥିଲା ତାଙ୍କ ଦେଶପ୍ରେମର ଶ୍ରେଷ୍ଠ ନମୁନା । ବହୁ ବାଧ୍ୟରେ ନେତାଜୀ ରଣ ସମ୍ମୁଖରୁ ବିଦାୟ ନେଲେ । ବାହୁଡ଼ିଲେ ରେଙ୍ଗୁନ୍ ।

କାଳ ବଡ଼ ନିର୍ମମ । ସବୁ ନେଇଯାଏ ଆପଣା ଝୁଲିଲେ । ୧୯୪୫ ମସିହା ମଇ ମାସ ୫ ତାରିଖ । ହିଟଲର ଗ୍ଲାନିରେ ଆତ୍ମହତ୍ୟା କଲେ । ଜର୍ମାନୀ ଆତ୍ମସମର୍ପଣ କଲା । ଅକ୍ଷୟ ଶକ୍ତି ଏବେ ଦ୍ୱିତୀୟ ମହାସମର ପରାଜୟକୁ ଆଦରି ନେବେ । ତାହା ନେତାଜୀଙ୍କୁ ଅଜଣା ନଥିଲା । ଆଜାଦ୍ ହିନ୍ଦ୍ ଫୌଜର ବହୁ ବୀର ଆତ୍ମବଳି ଦେଲେ । ସିଙ୍ଗାପୁରରେ ନେତାଜୀ ସେମାନଙ୍କ ଉଦ୍ଦେଶ୍ୟରେ ଗଢ଼ିଲେ ସ୍ମୃତିସ୍ତମ୍ଭ । ପରେ ଲର୍ଡ଼ ମାଉଣ୍ଟବ୍ୟାଟେନ୍ ତାକୁ ଧୂଳିରେ ମିଶାଇ ଦେଲେ ।

ସେଇ ସ୍ମୃତିସ୍ତମ୍ଭ ପୁନଃ ନିର୍ମିତ ୧୯୯୪ ମସିହାରେ । ୧୯୪୫ ମସିହା ଅଗଷ୍ଟ ୬ ଆଉ ୯ ତାରିଖ । ଜାପାନର ହିରୋସୀମା, ନାଗାସାକି ଉପରେ କ୍ରମରେ ପରମାଣୁ ବୋମା ନିକ୍ଷେପ କଲା ଆମେରିକା । ମାନବ ସଭ୍ୟତାର ଏଇଟି କଳଙ୍କିତ ଅଧ୍ୟାୟ । ଅଗଷ୍ଟ ୧୫ ତାରିଖ ଜାପାନ ମିତ୍ର ଶକ୍ତି ନିକଟରେ ଆତ୍ମସମର୍ପଣ ଘୋଷଣା କଲା । ନେତାଜୀ ତଥା ଆଜାଦ୍ ହିନ୍ଦ୍ ଫୌଜର ସମସ୍ତ ଆଶା ମଉଳିଗଲା । ସେମାନଙ୍କ ଫିରିଙ୍ଗି ହଟାଅ ଯୋଜନା ଅଧୁରା ରହିଗଲା ।

ନେତାଜୀଙ୍କ ବୀରତ୍ୱ କାହାଣୀ ଇତିହାସର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସେ ଜଣେ ମହାନ୍ ସଂଗ୍ରାମୀ । କୌଣସି ସ୍ଥିତିରେ ନିଜକୁ ଦୁର୍ବଳ ମଣୁ ନଥିଲେ । ଜାତୀୟ ତ୍ରିରଙ୍ଗା ପ୍ରଥମ ଥର ଇମ୍ଫାଲରେ ଉଡ଼ିଲା । ଏ ଗୌରବର ଅଧିକାରୀ ନେତାଜୀ, ଆଉ ତାଙ୍କ ଫଉଜମାନେ । ସୁଭାଷଙ୍କ ଜନ୍ମଭୂମି ଓଡ଼ିଶା । ଏ କଥା କହି ସେ ଗର୍ବ ଅନୁଭବ କରୁଥିଲେ । ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ସହ ତାଙ୍କର ଦେଖା ସାକ୍ଷାତ୍ ହୁଏ । ସେ ଓଡ଼ିଆରେ କଥାବାର୍ତ୍ତା କରନ୍ତି । ସେମାନଙ୍କର ସୁଖ ଦୁଃଖ ବୁଝନ୍ତି । ଜନ୍ମଭୂମି ଓଡ଼ିଶା ପାଇଁ ତାଙ୍କର ଅତୁଟ ମୋହ । ଆଜାଦ୍ ହିନ୍ଦ୍ ଫୌଜର ରାମସିଂହ ଠାକୁର । ସେଦିନ ଲେଖିଥିଲେ ଦେଶାତ୍ମବୋଧକ ସଂଗୀତଟେ–

''କଦମ୍ କଦମ୍ ବଢ଼ାଏ ଯା,
ଖୁସି କେ ଗୀତ ଗାଏ ଯା
ୟହ ଜିନ୍ଦଗୀ ହେ କୌମ୍‌କୀ,
ତୁ କୌମ ପେ ଲୁଟାୟେ ଯା... ।''

ଭାରତୀୟ ସୈନ୍ୟବାହିନୀରେ ଏ ଗୀତର ମର୍ଯ୍ୟାଦା ଏବେବି ଚମକୁଛି । ସତରେ! ସୁଭାଷ ଜଣେ ସଚ୍ଚା ମୁକ୍ତିଯୋଦ୍ଧା ।

ରୌପ୍ୟନଗରୀ କଟକର ଓଡ଼ିଆ ବଜାର । ସେଇଠି ନେତାଜୀଙ୍କ ଜନ୍ମସ୍ଥାନ 'ଜାନକୀନାଥ ଭବନ' । ଏବେ ତାହା ନେତାଜୀ ଜନ୍ମସ୍ଥାନ ସଂଗ୍ରହାଳୟ (ନେଜାତୀ ବାର୍ଥ ପ୍ଲେସ୍ ମ୍ୟୁଜିୟମ୍) । ପରିଦର୍ଶକମାନଙ୍କ ପାଇଁ ଏଇଟି ଅନ୍ୟତମ ମୁଖ୍ୟ ଆକର୍ଷଣ । ସଂଗ୍ରହାଳୟରେ ନେତାଜୀଙ୍କର ପୋଷାକ, ପରିବାର ତଥା ଅନ୍ୟ ନେତାଙ୍କୁ ଲେଖିଥିବା ହାତଲେଖା ଚିଠି, ତାଙ୍କ ସମ୍ବନ୍ଧୀୟ ନାନାଦି ଫଟୋଚିତ୍ର – ଏମିତି ବହୁ ଦୁଷ୍ପ୍ରାପ୍ୟ ବସ୍ତୁ ସ୍ଥାନିତ । ସଂଗ୍ରହାଳୟରେ ପାଠାଗାରଟେ ଅଛି । ନେତାଜୀଙ୍କ ସମ୍ବନ୍ଧୀୟ ଅନ୍ୟୁନ ପାଞ୍ଚଶହ ପୁସ୍ତକ ଏଥିରେ ରହିଛି । ସେଇ ମହାନ୍ ମୁକ୍ତିଯୋଦ୍ଧାଙ୍କ ପ୍ରତି ଓଡ଼ିଶା ସରକାରଙ୍କ ବିନମ୍ର ଭକ୍ତିପୂତ ନବେଦନ । ମାତୃଭୂମି ପାଇଁ ଆତ୍ମବଳି ଦେବାକୁ ସୁଭାଷ ଶ୍ରେଷ୍ଠ ମଣିଥିଲେ । ନୈତିକତା ଆଉ ରାଜନୀତି, ତାହା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ରାଜନୀତିରୁ ନୈତିକତାକୁ ବାଦ୍ ଦିଆଯାଇ ନପାରେ । ନୀତିହୀନ ରାଜନୀତି, ରାଜନୀତି ନୁହେଁ । ଏହା ତାଙ୍କର କେବଳ କହିବା କଥା ନୁହେଁ । ତାହାକୁ ସେ କାର୍ଯ୍ୟରେ ଦେଖାଇଦେଲେ । ବାସ୍ତବରେ ସେ ଜଣେ ନୀତିନିଷ୍ଠ ସଚ୍ଚା ଦେଶଭକ୍ତ । ତାଙ୍କରି ପାଦରେ ଏ ଜାତିର ଶତ ପ୍ରଣାମ ।

ସା/ପୋ: ପୁରୁଷୋତ୍ତମପୁର
କେନ୍ଦ୍ରାପଡ଼ା – ୭୫୪୨୧୩





# ବିପ୍ଳବୀ ଅରବିନ୍ଦରୁ ଋଷି ଅରବିନ୍ଦ

ତାପସ କୁମାର ସାହା

ଦେବଭୂମି ଭାରତବର୍ଷ । ମୁନିଋଷିମାନଙ୍କର ଭୂମି ଭାରତବର୍ଷ । ଆଧୁନିକ ମାନବ ସଭ୍ୟତାର ଉନ୍ମେଷର ବହୁ ପୂର୍ବରୁ ଏହା ମୁନିଋଷିମାନଙ୍କର ଭୂମି ଭାବେ ପରିଗଣିତ ହୋଇଆସୁଛି । ପ୍ରାଚୀନତମ ଗ୍ରନ୍ଥ ବେଦରେ ଋଷିମାନଙ୍କର କଥା ଉଲ୍ଲେଖ ରହିଛି । ଅନ୍ୟପକ୍ଷରେ ମହାନ୍ ଋଷିମାନଙ୍କର ଉଚ୍ଚାରିତ ମନ୍ତ୍ର ହିଁ ବେଦ । ପୁରାଣ ଯୁଗରେ ରାମାୟଣ ଓ ମହାଭାରତରେ ଅନେକ ମୁନିଋଷିମାନଙ୍କର ଚରିତ୍ର ଅବତାରଣା କରାଯାଇଛି । ସେମାନେ ପୃଥିବୀକୁ ଏକ ନୂତନ ଆଲୋକବର୍ତ୍ତିକା ହୋଇଆସିଛନ୍ତି । ମାନବଜାତିକୁ ଅନ୍ଧକାରରୁ ଆଲୋକକୁ ନେଇଯିବା ପାଇଁ ନିଜେ ସଳିତା ହୋଇ ଜଳିଛନ୍ତି ।

ଋଷିମୁନିମାନଙ୍କ ଦ୍ୱାରା ରଚିତ ବେଦ ସାରା ବିଶ୍ୱକୁ ଆଲୋକ ଦେଖାଇଛି । ବେଦ ହେଉଛି ଜ୍ଞାନର ଭଣ୍ଡାର । ସୂର୍ଯ୍ୟ ଯେପରି ସକଳ ଶକ୍ତିର ଆଧାର ଠିକ୍ ସେହିପରି ବେଦ ହେଉଛି ସମସ୍ତ ଜ୍ଞାନ ଭଣ୍ଡାର । ଏହିଠାରୁ ହିଁ ସମସ୍ତ ଜ୍ଞାନର ଉତ୍ପତ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏମାନେ ସ୍ୱକୀୟ ସାଧନା ଓ ଯୋଗ ବଳରେ ଅସୀମ ଜ୍ଞାନର ଅଧିକାରୀ ହୋଇ ସେହି ଜ୍ଞାନାଲୋକରେ ମଣିଷକୁ ଉଦ୍‌ଭାସିତ କରି ସତ୍ୟ, ଅହିଂସା ମାର୍ଗରେ ପରିଚାଳିତ ହେବା ପାଇଁ ଉପଦେଶ ଦେଇଆସିଛନ୍ତି ।

ଇତିହାସ ପୃଷ୍ଠା ଅବଲୋକନ କଲେ ଗୌତମବୁଦ୍ଧ, ମହାବୀର ଜୈନଙ୍କଠାରୁ ଆରମ୍ଭ କରି ବହୁ ପରମପୁରୁଷ ଏହି ଦେବଭୂମି ଭାରତରେ ଜନ୍ମଗ୍ରହଣ କରି ମାନବ ସମାଜର କଲ୍ୟାଣ ନିମନ୍ତେ ଅହରହ ସାଧନ କରିଯାଇଛନ୍ତି । ଗୌତମ ବୁଦ୍ଧଙ୍କ ଜନ୍ମ ରାଜପରିବାରରେ । ସେ ଥିଲେ କପିଳବସ୍ତୁର ରାଜା । ଦିନେ ନିଶାର୍ଦ୍ଧରେ ରାଜ ସିଂହାସନ, ସ୍ତ୍ରୀ, ପୁତ୍ରଙ୍କୁ ଛାଡ଼ି ସତ୍ୟର ଅନ୍ୱେଷଣରେ ବାହାରି ପଡ଼ିଲେ ଗୌତମ । କଠୋର ତପସ୍ୟା ବଳରେ ପାଲଟି ଗଲେ ବୁଦ୍ଧଦେବ ।

ସେହିପରି ଖ୍ରୀଷ୍ଟପୂର୍ବ ୫୯୯ରେ ଭଗବାନ ମହାବୀରଙ୍କ ଜନ୍ମ ହୋଇଥିଲା ଆଉ ଏକ ରାଜ ପରିବାରରେ । ବୈଶାଳୀର ରାଜା ସିଦ୍ଧାର୍ଥ ଓ ରାଣୀ ତ୍ରିଶାଳାଙ୍କ କୋଳମଣ୍ଡନ କରିଥିଲେ ବର୍ଦ୍ଧମାନ ମହାବୀର । ସତ୍ୟର ଅନୁସନ୍ଧାନରେ ବର୍ଦ୍ଧମାନ ଛାଡ଼ିଲେ ସଂସାର । ଦୀର୍ଘ ବାରବର୍ଷ ଛଅମାସର କଠୋର ତପସ୍ୟା ପରେ କେବଳ ଜ୍ଞାନର ଅଧିକାରୀ ହେଲେ । ପରବର୍ତ୍ତୀ ୩୦ ବର୍ଷ ସାରା ଭାରତବର୍ଷ ଭ୍ରମଣ କରି ଜୈନଧର୍ମର ପ୍ରଚାର କଲେ ।

ଇତିହାସର ପୃଷ୍ଠା ଲେଉଟାଇଲେ ଏପରି ଆହୁରି ଅନେକ ଚରିତ୍ର ଆମେ ଦେଖିବାକୁ ପାଉ । ଆଦିଗୁରୁ ଶଙ୍କରାଚାର୍ଯ୍ୟ, ଶ୍ରୀଚୈତନ୍ୟ, ଗୁରୁନାନକ, ସ୍ୱାମୀ ବିବେକାନନ୍ଦ, କବୀର ଏବଂ ଆହୁରି ଅନେକ ଯେଉଁମାନେ କି କେବଳ ଭାରତବର୍ଷ ସାରା ବିଶ୍ୱର ଜନଗଣଙ୍କୁ ସତ୍ ଓ ଆଧ୍ୟାତ୍ମିକ ମାର୍ଗରେ ଜୀବନ ଜିଇଁବାର କଳା ଶିଖାଇ ଯାଇଛନ୍ତି ।

ଊନବିଂଶ ଶତାବ୍ଦୀରେ ଭାରତବର୍ଷରେ ଏପରି ଏକ ମହାତ୍ମାଙ୍କ ଆବିର୍ଭାବ ହୋଇଥିଲା, ଯାହାଙ୍କ ଜୀବନର ପ୍ରତ୍ୟେକଟି ଅଧ୍ୟାୟ ଘଟଣାବହୁଳ ଥିଲା । ସେ ଥିଲେ ପରମଯୋଗୀ ମହାନ୍ ଦାର୍ଶନିକ ଋଷି ଅରବିନ୍ଦ ।

ବିବର୍ତ୍ତନବାଦ ଧାରା ଅନୁସାରେ ଲକ୍ଷ ଲକ୍ଷ ବର୍ଷ ପୂର୍ବେ ଏ ଧରାପୃଷ୍ଠର ସର୍ବପ୍ରଥମେ ଏକକୋଷୀ ଜୀବ ଓ ତା'ପରେ ବହୁକୋଷୀ ଜୀବ ସୃଷ୍ଟି ହୋଇଥିଲା । କାଳକ୍ରମେ ବହୁକୋଷୀ ଜୀବରୁ ପଶୁ ଓ ଗରିଲା, ବଣ ମଣିଷ, ମାଙ୍କଡ଼ ଆଦି ବିବର୍ତ୍ତନବାଦର ପର୍ଯ୍ୟାୟ ଦେଇ ଆସି ବର୍ତ୍ତମାନ ମଣିଷ ଅବସ୍ଥାରେ ଉପନୀତ ହୋଇଛି ।

ମଣିଷର ମନ ଓ ବୁଦ୍ଧିର ବିକାଶ ହୋଇଥିବାରୁ ବିବର୍ତ୍ତନବାଦ ତତ୍ତ୍ୱରେ ମଣିଷ ଏ ସୃଷ୍ଟିର ସର୍ବଶ୍ରେଷ୍ଠ ଜୀବ ବୋଲି ପରିଗଣିତ ହୋଇଥାଏ ଏବଂ ମାନବ ଜନ୍ମ ଶ୍ରେଷ୍ଠ ଜନ୍ମ ବୋଲି ଧରାଯାଏ । ଏହି ତତ୍ତ୍ୱ ଅନୁଯାୟୀ ମଣିଷ ହେଉଛି ଏହି ଜୀବଚକ୍ରର ଶେଷ ଓ ଶ୍ରେଷ୍ଠ ଜୀବ । ଏହାପରେ ମନୁଷ୍ୟର ମନ, ପ୍ରାଣ ଓ ଶରୀରର ଆଉ ବିକାଶ ହୁଏ ନାହିଁ ।

କିନ୍ତୁ ମଣିଷ ଯେ ଏକ ଅର୍ଦ୍ଧ ବିକଶିତ ଜୀବ ଏବଂ ଏହାର ମଧ୍ୟ ବିକାଶ ଅଛି ଓ ଏହାର ଉର୍ଦ୍ଧ୍ୱରେ ଯେ ଆଉ ଏକ ସଂପୂର୍ଣ୍ଣ ବିକଶିତ ମନୁଷ୍ୟ ଜାତି ସମ୍ଭବ ଏ ଉଦ୍‌ଘୋଷଣା କରିଥିଲେ ଯୋଗୀପୁରୁଷ ଶ୍ରୀଅରବିନ୍ଦ । ସମ୍ଭବତଃ ମାନବଜାତିକୁ ଏହି ବାର୍ତ୍ତା ଦେବା ପାଇଁ ଶ୍ରୀଅରବିନ୍ଦଙ୍କ ଏ ଧରାପୃଷ୍ଠରେ ଆବିର୍ଭାବ ହୋଇଥିଲା ।

ଏହି ପରମଯୋଗୀ ଯୁଗପୁରୁଷ ଏବଂ ବିଂଶ ଶତାବ୍ଦୀର ମହାନ୍ ଦାର୍ଶନିକ ଯେ ଏକଦା ବିପ୍ଳବୀ ସଂଗ୍ରାମୀ ଥିଲେ ସେ କଥା ହୁଏତ ଅନେକଙ୍କୁ ଅଜଣା । ଭାରତକୁ ଇଂରେଜ କବଳରୁ ମୁକ୍ତ କରିବା ନିମନ୍ତେ ଯିଏ ଦିନେ ବିପ୍ଳବ ରଚିଥିଲା, ସେ ପୁଣି ପାଲଟିଛନ୍ତି ପରମଯୋଗୀ, ମହାନ୍ ଦାର୍ଶନିକ । ଏହାହିଁ ବୋଧେ ବିଧି ନିର୍ଦ୍ଦିଷ୍ଟ ଥିଲା । ଏହି ମହାନ୍ ଦାର୍ଶନିକ ତାଙ୍କର ଜୀବନକାଳ ମଧ୍ୟରେ ଯେତୋଟି ପର୍ଯ୍ୟାୟ ଦେଇ ଗତି କରିଛନ୍ତି ପ୍ରତ୍ୟେକ ପର୍ଯ୍ୟାୟରେ ସେ ତାଙ୍କର ସ୍ୱତନ୍ତ୍ର ଛାପ ଛାଡ଼ି ଯାଇଛନ୍ତି । ପ୍ରତ୍ୟେକ କ୍ଷେତ୍ରରେ ଅପାର ସଫଳତା ଲାଭ କରି ପୁଣି ପର ମୁହୂର୍ତ୍ତରେ ସବୁ ଛାଡ଼ି ଏକ ନୂତନ ଜୀବନ ଆରମ୍ଭ କରିଛନ୍ତି । ସେ ଯେଉଁ ଜୀବନ ଜିଇଁଛନ୍ତି ସବୁଥିରେ ଚରମ ଉତ୍କର୍ଷତା ଲାଭ କରିଛନ୍ତି ।

୧୮୭୨ ମସିହା ଅଗଷ୍ଟ ୧୫ ତାରିଖରେ ଶ୍ରୀରବିନ୍ଦଙ୍କ ଜନ୍ମ । ୧୯୫୦ ମସିହା ଡିସେମ୍ବର ୫ ତାରିଖରେ ମହାଯୋଗୀ ଶ୍ରୀଅରବିନ୍ଦ ପଣ୍ଡିଚେରୀଠାରେ ଇହଲୀଳା ସମ୍ବରଣ କରିଥିଲେ । ୭୮ ବର୍ଷର ଜୀବନକାଳ ନା କେବଳ ଘଟଣା ବହୁଳ ଥିଲା, ଏହା ଭାରତର ପ୍ରଶାସନ, ରାଜନୀତି, ସ୍ୱାଧୀନତା ସଂଗ୍ରାମ, ଆଧ୍ୟାତ୍ମିକତା ଓ ଦର୍ଶନ ଜଗତକୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

ଏ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତି ସଂପର୍କରେ ଯଦିଓ ଅନେକ ପ୍ରକାର ମତ ରହିଛି ଓ ଏ ଦିଗରେ ଏକ ଚୂଡ଼ାନ୍ତ ସିଦ୍ଧାନ୍ତରେ ପହଞ୍ଚିବା ନିମନ୍ତେ ଭୌତିକ ବିଜ୍ଞାନୀମାନେ ଅହରହ ଗବେଷଣା ଚଳାଇଛନ୍ତି, ତେବେ ସେହି ବିଶ୍ୱବ୍ରହ୍ମାଣ୍ଡର ପୃଥିବୀ ଗ୍ରହରେ ମଣିଷର ଉତ୍ପତ୍ତି ଓ ଆବିର୍ଭାବ ସଂପର୍କରେ ଅନେକଗୁଡ଼ିଏ ମତବାଦ ସାମ୍ନାକୁ ଆସିଥାଏ । ଊନବିଂଶ ଶତାବ୍ଦୀର ପ୍ରଖ୍ୟାତ ବୈଜ୍ଞାନିକ ଚାର୍ଲସ୍ ଡାର୍‌ୱିନ୍‌ଙ୍କ ବିବର୍ତ୍ତନବାଦ ତତ୍ତ୍ୱ ସେଥିମଧ୍ୟରୁ ଅନ୍ୟତମ ଓ ଅଧିକ ଗ୍ରହଣୀୟ ବୋଲି ମନେହୁଏ । ହିନ୍ଦୁ ଧର୍ମରେ ବର୍ଣ୍ଣିତ ଭଗବାନ ବିଷ୍ଣୁଙ୍କ ଦଶାବତାର ଅନେକାଂଶରେ ଏହି ବିବର୍ତ୍ତନବାଦକୁ ସୂଚାଇଥାଏ ।

**ଜୀବନରେ ଆହୁରି ଉଚ୍ଚତମ ବିକାଶ ସମ୍ଭବ । ମନ ଓ ପ୍ରାଣକୁ ବିକାଶର ପଥରେ ଆହୁରି ଉର୍ଦ୍ଧ୍ୱକୁ ଉନ୍ନୀତ କରାଯାଇପାରିବ । ବିବର୍ତ୍ତନବାଦ ତତ୍ତ୍ୱ ଅନୁଯାୟୀ ମାଙ୍କଡ଼ରୁ ଯଦି ମନୁଷ୍ୟ ସମ୍ଭବ, ତେବେ ମାନବରୁ ଅତିମାନବ ମଧ୍ୟ ସମ୍ଭବ । ଏହା ହିଁ ଥିଲା ଶ୍ରୀଅରବିନ୍ଦଙ୍କ ଦର୍ଶନ । ପ୍ରାଣକୁ ସୁନିୟନ୍ତ୍ରିତ କରିପାରିଲେ ଏହା ଆମକୁ ଉଚ୍ଚତର ଜୀବନ ଜିଇଁବାକୁ ବାଟ କଢ଼ାଇ ନେବ । ଆମର ସାଧାରଣ ମନ ଓ ବୁଦ୍ଧି ଏକ ଉଚ୍ଚତର ଜ୍ଞାନକୁ ଟେକି ଧରିବାରେ ସକ୍ଷମ ନୁହେଁ ।** ପ୍ରଥମେ ଆମ ମନ ମଧ୍ୟରେ ସୁପ୍ତ ଓ ଲୁକ୍କାୟିତ ଉଚ୍ଚତର ଚେତନା ଆମକୁ ଲାଭ କରିବାକୁ ପଡ଼ିବ । ଏଥିପାଇଁ ଆମକୁ ପ୍ରଥମେ ସଚେତନ ହେବାକୁ ପଡ଼ିବ । ଏଥିପାଇଁ ମନ ମଧ୍ୟରେ ପ୍ରବଳ ଆକାଂକ୍ଷା ଜାଗ୍ରତ ହେବା ଦରକାର ।

ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ପରିମଣ୍ଡଳକୁ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ଯୋଗଦାନ ଅନସ୍ୱୀକାର୍ଯ୍ୟ । ବେଦ–ଉପନିଷେଦ ଆଦି ଗ୍ରନ୍ଥ ଅଧ୍ୟୟନ ପୂର୍ବକ ସେ ବ୍ୟାଖ୍ୟା କରିବା ସହିତ ନିଜ ଲେଖନୀ ମୁନରେ ବିଶ୍ୱସମାଜ ପାଇଁ

ଯେଉଁ ମାର୍ଗଦର୍ଶନ ଦେଇଛନ୍ତି, ତାହା ଯୁଗେ ଯୁଗେ ମାନବ ସମାଜକୁ ଅନୁପ୍ରେରିତ କରୁଥିବ । ତାଙ୍କର ଦାର୍ଶନିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇ ଅନେକ ଛୁଟି ଆସିଛନ୍ତି ପଣ୍ଡିଚେରୀକୁ । ସେହିପରି ଦିନେ ଛୁଟି ଆସିଥିଲେ ଫରାସୀ ମହିଳା ମୀରା ଆଲ୍‌ଫାସା । ମଣିକାଞ୍ଚନର ଅପୂର୍ବ ସଂଯୋଗ ଘଟିଥିଲା । ମୀରା ଆଉ ପଛକୁ ଫେରି ଚାହିଁ ନଥିଲେ । ୧୯୨୦ ମସିହାରୁ ସେ ଶ୍ରୀମା' ନାମରେ ପରିଚିତ ହୋଇ ପଣ୍ଡିଚେରୀ ଆଶ୍ରମରେ ରହିଯାଇଥିଲେ ଶ୍ରୀଅରବିନ୍ଦଙ୍କ ଶିଷ୍ୟା ହୋଇ । ତାଙ୍କର ସହଯୋଗୀ ଭାବରେ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଦର୍ଶନ ଓ ବିଚାରଧାରାକୁ ସାରା ବିଶ୍ୱରେ ମାନବ ସମାଜର କଲ୍ୟାଣ ନିମନ୍ତେ ପ୍ରଚାର ପ୍ରସାର ଦିଗରେ ନିଜ ଜୀବନକୁ ନିୟୋଜିତ କରିଥିଲେ । ଶ୍ରୀଅରବିନ୍ଦଙ୍କ ଅତିମାନସର ଯୋଗର କାର୍ଯ୍ୟକାରିଣୀ ଶକ୍ତି ଭାବେ ଉଭା ହୋଇଥିଲେ ଶ୍ରୀମା । ଶ୍ରୀମାଙ୍କ ଉଦ୍ୟମରେ ଶ୍ରୀଅରବିନ୍ଦଙ୍କ ଦର୍ଶନ ଓ ଆଦର୍ଶ ତଥା ବିଚାରଧାରାର ପ୍ରଚାର ପ୍ରସାର ନିମନ୍ତେ ଭାରତର ବିଭିନ୍ନ ସ୍ଥାନରେ ଶ୍ରୀଅରବିନ୍ଦ ପାଠଚକ୍ର । ଏଥିସହିତ ପ୍ରତିଷ୍ଠା କରାଯାଇଛି ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର । **ଶ୍ରୀଅରବିନ୍ଦଙ୍କ ମତରେ, ଶିକ୍ଷାକୁ ପୂର୍ଣ୍ଣାଙ୍ଗ କରିବାକୁ ହେଲେ ପାଞ୍ଚଟି ଦିଗ ପ୍ରତି ଧ୍ୟାନ ଦେବା ଆବଶ୍ୟକ । ପାରମ୍ପରିକ ଶିକ୍ଷା ସହିତ ଦେହ, ମନ, ପ୍ରାଣ, ଅନ୍ତରାତ୍ମା ଓ ଅଧ୍ୟାତ୍ମ ଶିକ୍ଷା ସବୁଗୁଡ଼ିକ ଏକ ସଙ୍ଗରେ ହେବା ଉଚିତ । ଶାରୀରିକ ଶିକ୍ଷାରେ ଆସନ ପ୍ରାଣାୟମ, ଖେଳକୁଦ ଓ କର୍ମକୁ ବିଶେଷ ଗୁରୁତ୍ୱ ଦିଆଯାଇଛି । ମାନସିକ ଶିକ୍ଷାରେ ପଢ଼ିବା, ଲେଖିବା ବ୍ୟତୀତ ମନକୁ ଚିନ୍ତାଶୂନ୍ୟ କରି ନିରବ ରହିବା ପାଇଁ ପରାମର୍ଶ ଦିଆଯାଇଛି ।**

ପୂର୍ଣ୍ଣାଙ୍ଗ ଶିକ୍ଷାଦେବା ଉପରେ ଗୁରୁତ୍ୱ ଦେଇଥିବା ଶ୍ରୀଅରବିନ୍ଦଙ୍କ ଜନ୍ମ କୋଲକାତା ସହରରେ । କିନ୍ତୁ ତାଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୁଏ ଦାର୍ଜିଲିଂର ଲରେଟୋ କନ୍‌ଭେଣ୍ଟ ସ୍କୁଲ୍‌ରୁ । ପିତା କୃଷ୍ଣଧନ ଘୋଷଙ୍କ ଇଚ୍ଛା ପୁଅ ଇଂରାଜୀ ପାଠପଢ଼ି ବିଲାତି ସାହେବ ହେବ । ପୁଅକୁ ବଡ଼ ହାକିମ କରିବା ଇଚ୍ଛାରେ ମାତ୍ର ୭ ବର୍ଷ ବୟସରେ ଅରବିନ୍ଦ ଦୁଇଭାଇଙ୍କ ସହିତ ପାଠପଢ଼ିବା ପାଇଁ ଦାର୍ଜିଲିଂ ଛାଡ଼ି ବିଲାତ ଯାତ୍ରା କଲେ । ଲଣ୍ଡନରେ ପ୍ରଥମେ ସେଣ୍ଟପଲ୍ ସ୍କୁଲ୍, ପରେ କିଙ୍ଗସ୍ କଲେଜ୍, କେମ୍ବ୍ରିଜ୍‌ରେ ନାମ ଲେଖାଇଥିଲେ । ଶ୍ରୀଅରବିନ୍ଦ ଅତ୍ୟନ୍ତ ମେଧାବୀ ଓ ଧୀସଂପନ୍ନ ହୋଇଥିବାରୁ ସେ ଅତି ସହଜରେ ଓ ଉଚ୍ଚ ନମ୍ବର ରଖିବା ସହିତ ଲାଟିନ୍, ଗ୍ରୀକ୍, ଫରାସୀ, ଇଟାଲୀ, ଜର୍ମାନ୍ ଓ ସ୍ପାନିସ୍ ଭାଷା ଶିଖି ସାରିଥିଲେ । ବାପାଙ୍କ ଇଚ୍ଛା ସେତେବେଳର ସବୁଠାରୁ ମର୍ଯ୍ୟାଦାଜନକ ସରକାରୀ ଚାକିରି ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍‌ରେ ଉତ୍ତୀର୍ଣ୍ଣ ହୋଇ ପୁଅ ବଡ଼ ହାକିମ ହେବ । ବାପାଙ୍କ ଇଚ୍ଛା ଅନୁସାରେ ଶ୍ରୀଅରବିନ୍ଦ ଲଣ୍ଡନରେ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ । ମାତ୍ର ସେତେବେଳକୁ ଯୁବକ ଅରବିନ୍ଦଙ୍କ ମନରେ ଭାବାନ୍ତର ଘଟିସାରିଥିଲା । ଭାରତବର୍ଷ ଯେ ପରାଧୀନତାର ଶୃଙ୍ଖଳରେ ଆବଦ୍ଧ, ଏ କଥା ଅରବିନ୍ଦ ଘୋଷ ସ୍ପଷ୍ଟ ଭାବରେ ବୁଝି ପାରିଥିଲେ । ସ୍ୱାଧୀନତା ବିନା ଭାରତବର୍ଷର ପ୍ରଗତି ସମ୍ଭବ ନୁହେଁ ବୋଲି ଲଣ୍ଡନରେ ଥିବା ସମୟରେ ଅରବିନ୍ଦ ହୃଦୟଙ୍ଗମ କରିପାରିଥିଲେ । ତେଣୁ ହାକିମ ଚାକିରି ହେଉ ପଛେ ବ୍ରିଟିଶ ଅଧୀନରେ ଚାକିରି କରିବେ ନାହିଁ ବୋଲି ମନସ୍ଥ କଲେ । ଆଇ.ସି.ଏସ୍. ପରୀକ୍ଷାରେ କୃତିତ୍ୱ ହାସଲ କରିଥିଲେ ହେଁ ସେ ଜାଣିଶୁଣି ଘୋଡ଼ାଚଢ଼ା ପରୀକ୍ଷା ଦେଲେ ନାହିଁ । ଫଳତଃ ସେ ଆଇ.ସି.ଏସ୍. ପାଇଁ ମନୋନୀତ ହୋଇପାରିଲେ ନାହିଁ । ଲଣ୍ଡନରେ ଅବସ୍ଥାନ କାଳରେ ବରୋଦାର ମହାରାଜାଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ତାଙ୍କର ମେଧାରେ ମୁଗ୍ଧ ହୋଇ ବରୋଦାର ଗାଏକ୍ୱାଡ୍ ତାଙ୍କୁ ବରୋଦା ରାଜ୍ୟ ଚାକିରିରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ । ୧୮୯୩ ମସିହାରେ ଭାରତ ଫେରିଆସି ସେ ବରୋଦାରେ ଚାକିରି ଜୀବନ ଆରମ୍ଭ କରିଥିଲେ । ପରବର୍ତ୍ତୀ କାଳରେ ସେ ବରୋଦା କଲେଜ୍‌ରେ ଅଧ୍ୟାପନା ମଧ୍ୟ କରିଥିଲେ । ବରୋଦାରେ ପ୍ରାୟ ୧୨ ବର୍ଷ ରହଣି କାଳରେ ସେ ଭାରତର ଇତିହାସ ଓ ସଂସ୍କୃତି ବିଷୟରେ ବିଶେଷ ଭାବରେ ଜାଣିବାକୁ ସୁଯୋଗ ପାଇଲେ । ବିଲାତି ଢାଞ୍ଚାରେ ଗଢ଼ି ଉଠିଥିବା ଶ୍ରୀଅରବିନ୍ଦଙ୍କ ମନରେ ଭାରତୀୟ ଧର୍ମ, ପରମ୍ପରା, ଦର୍ଶନ ସଂପର୍କରେ ତାଙ୍କର ଆଗ୍ରହ ବୃଦ୍ଧି ପାଇବାକୁ ଲାଗିଲା ।

**ଶ୍ରୀଅରବିନ୍ଦ ଅନୁଭବ କରିଥିଲେ ଯେ ଯେତେଦିନ ପର୍ଯ୍ୟନ୍ତ ଭାରତ ସ୍ୱାଧୀନତା ହାସଲ କରିନାହିଁ,**

**ସେତେଦିନ ଯାଏଁ ଏ ଜାତିର ଉତ୍‌ଥାନ ସମ୍ଭବ ନୁହେଁ । ସମଗ୍ର ବିଶ୍ୱକୁ ଉଦ୍‌ଭାସିତ କରିବା ପାଇଁ ଭାରତବର୍ଷକୁ ବିଶ୍ୱରେ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିବାକୁ ପଡ଼ିବ ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା ।**

ବରୋଦାରେ ଚାକିରି କାଳ ସମୟରେ ତତ୍‌କାଳୀନ ଭାରତର ଦୃଶ୍ୟପଟ ତାଙ୍କୁ ଗଭୀର ଭାବରେ ଆନ୍ଦୋଳିତ କରିଥିଲା । ସେହି ସମୟରେ ଅରବିନ୍ଦ ବିଭିନ୍ନ ପତ୍ରିକାରେ ଜାତୀୟତାବାଦୀ ଆନ୍ଦୋଳନ ସଂପର୍କରେ ଲେଖା ପ୍ରକାଶ କରୁଥିଲେ ଏବଂ ବଙ୍ଗଳା ଓ ମଧ୍ୟପ୍ରଦେଶର ବିପ୍ଳବୀମାନଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ । ଲର୍ଡ କର୍ଜନଙ୍କ ଦ୍ୱାରା ବଙ୍ଗ ପ୍ରଦେଶକୁ ବିଭାଜିତ କରିବା ଓ ବଙ୍ଗଭଙ୍ଗ ଆନ୍ଦୋଳନ ଯୁବ ଅରବିନ୍ଦଙ୍କ ମନକୁ ମଧ୍ୟ ବିଶେଷ ଭାବରେ ଆନ୍ଦୋଳିତ କରିଥିଲା । ୧୯୦୬ ମସିହାରେ ସେ ବରୋଦା ଛାଡ଼ି ବଙ୍ଗଳାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପ୍ରକାଶ୍ୟରେ ଯଦିଓ ସେ କଂଗ୍ରେସର କାର୍ଯ୍ୟଧାରାକୁ ସମର୍ଥନ କରୁଥିଲେ ମାତ୍ର ଗୁପ୍ତରେ ସେ ବଙ୍ଗଳାର ବିପ୍ଳବୀ ସଂଗଠନ ସହିତ ଯୋଗସୂତ୍ର ରକ୍ଷା କରି ଭାରତବର୍ଷରେ ଏକ ବିପ୍ଳବର ବାତାବରଣ ସୃଷ୍ଟି କରିବାରେ ଲାଗିପଡ଼ିଲେ । ଅନୁଶୀଳନ ସମିତି ସମେତ ସେ ଅନେକଗୁଡ଼ିଏ ବିପ୍ଳବୀ ଅନୁଷ୍ଠାନର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

୧୯୦୬ ମସିହାରେ ଦାଦାଭାଇ ନାରୋଜୀଙ୍କ ସଭାପତିତ୍ୱରେ କୋଲକାତାଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦେଇଥିଲେ । ୧୯୦୭ ମସିହାରେ କଂଗ୍ରେସରେ ଦୁଇ ଗୋଷ୍ଠୀ ନରମପନ୍ଥୀ ଓ ଚରମପନ୍ଥୀଙ୍କର ଅଭ୍ୟୁଦୟ ହୋଇଥିଲା । ଅରବିନ୍ଦ ଚରମପନ୍ଥୀ ଗୋଷ୍ଠୀର ବାଲ ଗଙ୍ଗାଧର ତିଲକଙ୍କୁ ପୂର୍ଣ୍ଣ ସମର୍ଥନ ଯୋଗାଇ ପୁନା, ବରୋଦା, ବମ୍ବେ ଆଦି ବିସ୍ତୃତ ଭାବେ ବୁଲି ଜାତୀୟ ଆନ୍ଦୋଳନକୁ ସମର୍ଥନ ନିମନ୍ତେ ଲୋକମାନଙ୍କୁ ବୁଝାଇବାକୁ ଲାଗିଲେ ।

୧୯୦୮ ମସିହା ମେ ମାସରେ ମଜଃଫରପୁର ବୋମା ବିସ୍ଫୋରଣରେ ଦୁଇଜଣ ୟୁରୋପିୟାନ୍ ମହିଳା ନିହତ ହେବା ଘଟଣାରେ ଅରବିନ୍ଦ ଘୋଷଙ୍କୁ ଗିରଫ କରାଯାଇଥିଲା । ସେହିଦିନ ତାଙ୍କ ଜୀବନର ଗୋଟିଏ ଅଧ୍ୟାୟର ପରିସମାପ୍ତ ଘଟି ଏକ ନୂତନ ଅଧ୍ୟାୟ ଆଡ଼କୁ ମୁହାଁଇଥିଲା । ବିପ୍ଳବୀ ଅରବିନ୍ଦ ପାଲଟିବାକୁ ଲାଗିଲେ ଋଷି ଅରବିନ୍ଦ । ସଶସ୍ତ୍ର ବିପ୍ଳବ ରୂପ ନେଇଗଲା ଆଧ୍ୟାତ୍ମିକ ବିପ୍ଳବ । କେବଳ ଭାରତବର୍ଷ ଓ ଭାରତବାସୀଙ୍କୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ତାଙ୍କର ଲକ୍ଷ୍ୟ ଏକ ବ୍ୟାପକ ରୂପ ଧାରଣ କରିଥିଲା । ସେ ଚାହିଁଲେ ସମଗ୍ର ମାନବଜାତିର ମୁକ୍ତି । ଆଲିପୁରସ୍ଥିତ ଜେଲ୍‌ରେ ଏକ ବର୍ଷ ବନ୍ଦୀ ଜୀବନ କଟାଇବା ଶ୍ରୀଅରବିନ୍ଦଙ୍କ ଭାଷାରେ ତାଙ୍କ ପାଇଁ ବରଦାନ ସଦୃଶ ପ୍ରମାଣିତ ହୋଇଥିଲା । ବ୍ରିଟିଶର ଏକ ବର୍ଷର କାରାବାସ, ତାଙ୍କ ପାଇଁ ଏକ ବର୍ଷର ବନବାସ କିମ୍ବା ଏକ ବର୍ଷର ଆଶ୍ରମବାସ ଥିଲା । କାରାଗାରର ରୁଦ୍ଧ କୋଠରି ମଧ୍ୟରେ ସେ ସ୍ୱୟଂ ଭଗବାନଙ୍କ ସତ୍ତା ଅନୁଭବ କରିଥିଲେ । ହୃଦୟସ୍ଥ ନାରାୟଣଙ୍କୁ ସାକ୍ଷାତ୍ ଦର୍ଶନ ନିମନ୍ତେ ତାଙ୍କ ମନ ମଧ୍ୟରେ ଥିବା ଅନେକ ଦିନର ଇଚ୍ଛା ଫଳବତୀ ହୋଇଥିଲା । ଶତ୍ରୁମାନେ ତାଙ୍କର ଅନିଷ୍ଟ କରିବା ପାଇଁ ଚାହିଁଥିଲେ । କାରାବାସରେ ତାଙ୍କୁ ନିକ୍ଷେପ କରାଯାଇଥିଲା । ମାତ୍ର ଫଳ ହେଲା ଓଲଟା । ପ୍ରଖ୍ୟାତ ଓକିଲ ତଥା ସ୍ୱାଧୀନତା ସଂଗ୍ରାମୀ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଅରବିନ୍ଦଙ୍କ ପକ୍ଷରୁ ଓକିଲାତି କରିବାକୁ ଆଗେଇ ଆସିଥିଲେ । ପ୍ରମାଣ ଅଭାବରୁ ଅରବିନ୍ଦ ଯେତେବେଳେ ମୁକ୍ତ ହେଲେ ସେ ଆବିର୍ଭାବ ହେଲେ ଏକ ସଂପୂର୍ଣ୍ଣ ନୂତନ ଚରିତ୍ରରେ । ଏକ ନୂତନ ମଣିଷ, ନୂଆ ଚରିତ୍ର, ନୂତନ ବୁଦ୍ଧି, ନୂତନ ପ୍ରାଣ ଓ ନୂତନ ମନ ନେଇ ସେ ଆଲିପୁର ଜେଲ୍‌ରୁ ବାହାରି ଏକ ନୂତନ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ବରୋଦାରେ ଚାକିରି କାଳ ଅବସରରେ ସେ ଯେଉଁ ଯୋଗାଭ୍ୟାସ ପ୍ରତି ଆକର୍ଷିତ ହୋଇଥିଲେ, ଆଲିପୁର କାରାବାସ ସମୟରେ ସେ ତା'ର ପୂର୍ଣ୍ଣ ଉପଯୋଗ କରି ଏକ ଉଚ୍ଚତର ସୋପାନକୁ ଉନ୍ନୀତ ହୋଇପାରିଥିଲେ । ଆଲିପୁର ଜେଲ୍ କୋଠରିରେ ସେ ଶ୍ରୀକୃଷ୍ଣଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିଥିଲେ ବୋଲି ପ୍ରବାଦ ରହିଛି ।

ଭାରତ ପ୍ରତି ଶ୍ରୀଅରବିନ୍ଦଙ୍କ ଦୃଷ୍ଟିକୋଣ ତାଙ୍କର ପ୍ରଗାଢ଼ ଦେଶଭକ୍ତିକୁ ସୂଚାଇଥାଏ । ଭାରତବର୍ଷ କେବଳ

ଏକ ଭୂଖଣ୍ଡ ନୁହେଁ । ସାକ୍ଷାତ ଦେବୀ ସଦୃଶ ସକଳ ଶକ୍ତିର ଆଧାର । ଭାରତବର୍ଷକୁ ଅନ୍ୟମାନେ ଏକ ଜଡ଼ ପଦାର୍ଥ, ମାଟି, ବଣପାହାଡ଼ ନଦୀର ସମଷ୍ଟି ବୋଲି ଭାବନ୍ତି । ମାତ୍ର ଶ୍ରୀଅରବିନ୍ଦଙ୍କ ଦୃଷ୍ଟିରେ ଭାରତ ହେଉଛି ତାଙ୍କର ମା' । ସେହି ମା'ଙ୍କୁ ସେ ଭକ୍ତି କରନ୍ତି, ପୂଜା କରନ୍ତି ଏବଂ ଜଣେ ରକ୍ତମାଂସଧାରୀ ମମତାମୟୀ ଜନନୀ ଭାବରେ ହିଁ ହେଉଛନ୍ତି ଦୁର୍ଗା, କାଳୀ, ଲକ୍ଷ୍ମୀ ଓ ଆମ ସମସ୍ତଙ୍କର ଜନ୍ମଦାତ୍ରୀ ।

କେଉଁ ଅନାଦି କାଳରୁ ଭାରତବର୍ଷର ଯୋଗୀଋଷିମାନେ ଭାରତୀୟ ଦର୍ଶନ, ବିଜ୍ଞାନ ଓ ସାହିତ୍ୟ–ସଂସ୍କୃତିକୁ କଠୋର ସାଧନା ବଳରେ ପରିପୁଷ୍ଟ କରିଛନ୍ତି, ସେହି ଗ୍ରନ୍ଥଗୁଡ଼ିକ ଅଧ୍ୟୟନପୂର୍ବକ ସେସବୁର ବିଚାରବୋଧ ପୃଥିବୀବାସୀଙ୍କ ସମ୍ମୁଖରେ ତୋଳି ଧରିବାର ସଫଳ ପ୍ରୟାସ ଶ୍ରୀଅରବିନ୍ଦ କରିଛନ୍ତି । ଶ୍ରୀଅରବିନ୍ଦ ତାଙ୍କ ଅତି ମାନସ ବିଚାରବୋଧ ବଳରେ ଆଗାମୀ ଭବିଷ୍ୟତକୁ ଦେଖିପାରିଥିଲେ । ପୃଥିବୀ ଇତିହାସରେ ଭାରତର ଭୂମିକା ସମ୍ପର୍କରେ ସେ ଦୃଢ଼ ସ୍ୱରରେ ଘୋଷଣା କରିଥିଲେ ଯେ ଭାରତ ହେଉଛି ପୃଥିବୀର ଗୁରୁ । ଭାରତ ହେଉଛି ପୃଥିବୀବାସୀଙ୍କ ଆଶା ଓ ବିଶ୍ୱାସ । ସମଗ୍ର ବିଶ୍ୱକୁ ଏକ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରିବାର ଯୋଗ୍ୟତା ଭାରତବର୍ଷରେ ରହିଛି । ତାଙ୍କ ଦୃଷ୍ଟିରେ ସତ୍ୟ ଓ ଅହିଂସା ଭାରତବର୍ଷର ମୂଳମନ୍ତ୍ର । ଏହି ମୂଳମନ୍ତ୍ରକୁ ପାଥେୟ କରି ଯେକୌଣସି ଅସାଧ୍ୟ ମନେ ହେଉଥିବା କାର୍ଯ୍ୟରେ ମଧ୍ୟ ସିଦ୍ଧିଲାଭ କରିହେବ ।

ଆଲିପୁର ଜେଲ୍‌ରୁ ଖଲାସ ହେବା ପରେ ଅରବିନ୍ଦଙ୍କ ଆତ୍ମୋପଲବ୍ଧି ହୋଇଥିଲା ଯେ ସେ ଅନ୍ୟ ଏକ ମହାନ୍ କାର୍ଯ୍ୟ ପାଇଁ ପ୍ରେରିତ । ଦେଶକୁ ସ୍ୱାଧୀନ କରିବାର ଆନ୍ଦୋଳନରେ ତାଙ୍କର ପ୍ରଥମ ଭୂମିକା ସରିଯାଇଛି । ବର୍ତ୍ତମାନ ଏକ ବୃହତ୍ତର ସ୍ୱାର୍ଥସାଧନ ନିମନ୍ତେ ତାଙ୍କର ଜୀବନ ଉଦ୍ଦିଷ୍ଟ । ସେହି ମହତ୍ ଉଦ୍ଦେଶ୍ୟର ସାଧନା ନିମନ୍ତେ ୧୯୧୦ ମସିହାରେ ସେ ଅତ୍ୟନ୍ତ ସତର୍କତାର ସହିତ ବ୍ରିଟିଶ ଅଧିକୃତ ଭାରତ ଭୂଖଣ୍ଡ ଛାଡ଼ି ଫରାସୀ ଶାସନାଧୀନ ପଣ୍ଡିଚେରୀରେ ଅବସ୍ଥାନ କରିବାକୁ ମନସ୍ଥ କଲେ । ପଣ୍ଡିଚେରୀରେ ଦୀର୍ଘ ୪ ବର୍ଷ ନିଜର ସାଧନାରେ ମଗ୍ନ ହୋଇଥିଲେ । ଭାରତବର୍ଷର ମୁକ୍ତି ପାଇଁ ସଂଗ୍ରାମରେ ଝାସ ଦେଇଥିବା ଯୁବକ ଅରବିନ୍ଦ ବିଶ୍ୱବାସୀଙ୍କ ମୁକ୍ତି ପାଇଁ କଠୋର ସାଧନା ଆରମ୍ଭ କରିଥିଲେ ।

ଭାରତ ତା'ର ମୁକ୍ତିସଂଗ୍ରାମରେ ବିଜୟ ହାସଲ କରିଥିଲା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଶ୍ରୀଅରବିନ୍ଦଙ୍କ ଜନ୍ମତିଥିରେ । ଏହା ସଂଯୋଗ ହୋଇପାରେ ଅଥବା ହୋଇପାରେ ବିଧି ନିର୍ଦ୍ଦିଷ୍ଟ । ତାଙ୍କର ସଂଗ୍ରାମ ଫଳବତୀ ହୋଇଥିଲା । ତାଙ୍କର ସାଧନା ଭାରତବର୍ଷରେ ଏକ ନବଜାଗରଣର ଉନ୍ମେଷ ଘଟାଇଥିଲା ।

ବିଲାତି ଢାଞ୍ଚାରେ ଗଢ଼ି ଉଠିଥିବା ଅତ୍ୟନ୍ତ ମେଧାସମ୍ପନ୍ନ ବାଳକ ଅରବିନ୍ଦ ଆଇ.ସି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧ୍ୟ ତାକୁ ପ୍ରତ୍ୟାଖ୍ୟାନ କରିବା, ଯୁବା ବୟସରେ ଇଂରେଜ ଶାସନ ବିରୁଦ୍ଧରେ ବିପ୍ଳବୀ ସଂଗ୍ରାମୀ ଭୂମିକାରେ ଅବତରଣ ହେବା, ବୋମା ବିସ୍ଫୋରଣ ମାମଲାରେ ଏକ ବର୍ଷର କାରାବାସ ଓ ଶେଷରେ ପରମ ସାଧକ, ପରମଯୋଗୀ,ଋଷି ଅରବିନ୍ଦ ଭୂମିକାରେ ଅବତୀର୍ଣ୍ଣ ହୋଇ ପୂର୍ଣ୍ଣଯୋଗର ମାର୍ଗ ପ୍ରଦର୍ଶନ କରିବା ଏସବୁ ଅବିଶ୍ୱସନୀୟ ମନେହେଲେ ହେଁ ଶ୍ରୀଅରବିନ୍ଦଙ୍କ ଜୀବନରେ ଘଟିଥିଲା । ଯେଉଁଥିପାଇଁ ସେ ଆଜି ଆମ ସମସ୍ତଙ୍କ ନିମନ୍ତେ ପ୍ରାତଃସ୍ମରଣୀୟ । ଆଲୋଚନା ପ୍ରଥମରୁ ଅବତାରଣା କରାଯାଇଛି ଏହି ପୁଣ୍ୟଭୂମି ଭାରତବର୍ଷରେ ଗୌତମ ପାଲଟିଥିଲେ ବୁଦ୍ଧ । ବର୍ଦ୍ଧମାନ ମହାବୀରରେ ରୂପାନ୍ତରିତ ହୋଇଥିଲେ । ଆଉ ବିଂଶ ଶତାବ୍ଦୀରେ ବିପ୍ଳବୀ ଅରବିନ୍ଦ ପାଲଟିଥିଲେ ଋଷି ଅରବିନ୍ଦ । ନିଜ ସୁଖ ପାଇଁ ନୁହେଁ, ଏ ଦୁର୍ଲଭ ମଣିଷ ଜନ୍ମ ଏକ ବୃହତ୍ତର ମାନବ ସମାଜର ମଙ୍ଗଳ ନିମନ୍ତେ ଅଭିପ୍ରେରିତ ହୋଇଛି, ଏ ସତ୍ୟ ଆମେ ଶୀଘ୍ର ଉପଲବ୍ଧ କରିପାରିଲେ ମାନବ ସମାଜର ଅଶେଷ କଲ୍ୟାଣ ସାଧନ ହେବା ସହିତ ଜୀବନ ସାର୍ଥକ ହେବ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଭୁବନେଶ୍ୱର

# ଗାନ୍ଧିଜୀଙ୍କ ତପସ୍ୟା : ଅସ୍ପୃଶ୍ୟତା ନିବାରଣ

ଡକ୍ଟର ନିର୍ମଳା କୁମାରୀ ମହାପାତ୍ର

ମହାତ୍ମା ଗାନ୍ଧୀଙ୍କର ୧୫୦ତମ ଜୟନ୍ତୀ ସାରା ଦେଶରେ ଦୁଇବର୍ଷ (୨୦୧୭ – ୨୦୧୯) ଧରି ପାଳନ କରାଯାଉଛି । ସାମାଜିକ ଅନ୍ୟାୟ ଓ ଦାରିଦ୍ର୍ୟତା ବିରୋଧରେ ଲଢ଼ିବାକୁ ଯାଇ ସେ ଧରିଥିଲେ ଦୁଇଟି ମୁଖ୍ୟ ଅସ୍ତ୍ର । ସେଗୁଡ଼ିକ ହେଲେ – (୧) ସତ୍ୟ, (୨) ଅହିଂସା । ସତ୍ୟରୁ ସତ୍ୟ ପ୍ରତି ଆଗ୍ରହକାରୀ ସତ୍ୟାଗ୍ରହୀ । ଛୁଆଁ–ଅଛୁଆଁ, ଜାତିଭେଦ ଉଠାଇବା ପାଇଁ ସେ ୧୯୩୨, ସେପ୍ଟେମ୍ବର ମାସରେ ସମଗ୍ର ଦେଶବାସୀଙ୍କୁ ବିନତି କରିଥିଲେ ଯେ– ମଠ, ମନ୍ଦିର ଆଦି ଧର୍ମାନୁଷ୍ଠାନ, ଶିକ୍ଷାନୁଷ୍ଠାନ, ହୋଟେଲ ଆଦିରେ ସମସ୍ତଙ୍କର ପ୍ରବେଶ ଅଧିକାର ରହିଅଛି । ଏଥିରେ କୌଣସି ବାରଣ–ଚାରଣ ନରହୁ । ବିବାହ–ବ୍ରତ–ପର୍ବପର୍ବାଣି, ଭୋଜିଭାତରେ ସମସ୍ତେ ଏକାଠି ଖାଇବା । ସାମାଜିକ କାର୍ଯ୍ୟରେ କୌଣସି କଟକଣା ନରହୁ । ସମସ୍ତେ ମିଳିମିଶି ଚଳିବା ।



ଅସ୍ପୃଶ୍ୟତା ଏକ କଳଙ୍କ । ଏହାକୁ ଉଠାଇଦେବା ପାଇଁ ୧୯୩୨, ସେପ୍ଟେମ୍ବର ୨୦ ତାରିଖରେ ଗାନ୍ଧିଜୀ ଆରମ୍ଭ କରିଥିଲେ ଅନଶନ । ଏହା ତତ୍‌କାଳୀନ ଭାରତ ଓ ବିଲାତ ପ୍ରତି ଚମକ ସୃଷ୍ଟି କରିଥିଲା । ଜଣେ କ୍ଷୀଣକାୟ ସତ୍ୟାଗ୍ରହୀଙ୍କ ଅନଶନକାଳୀନ ପ୍ରାର୍ଥନା ଫଳରେ ଦୀର୍ଘ ଦିନର କୁସଂସ୍କାର ପ୍ରାୟ ଭାଙ୍ଗି ଯାଇଥିଲା । ଇତିହାସରେ ଏହା ଥିଲା ଏକ ଅଭିନବ ବିଜୟ । ସେ ସଂଗ୍ରାମରେ ଦୁର୍ବଳ ଜନତାର କ୍ରନ୍ଦନ ନ ଥିଲା ବା ସବଳର ଅହଂକାର ନଥିଲା । ଯୁଗଯୁଗର ଭ୍ରାନ୍ତି ମଣିଷ ମନରୁ ଲୋପପାଉ– ଏହା ଥିଲା ସତ୍ୟାଗ୍ରହୀମାନଙ୍କର ଉଦ୍ଦେଶ୍ୟ । ତଦ୍ଦ୍ୱାରା ଦଳିତ–ଅନାଦୃତ–ମଣିଷର ମାନ ଉତ୍ତୋଳିତ ହୋଇଥିଲା । ଅନଶନର ପୂର୍ବଦିନ ପ୍ରୟାଗର ହିନ୍ଦୁମନ୍ଦିରରେ ସମସ୍ତେ ପ୍ରବେଶ କରିଥିଲେ । ତା' ପରବର୍ତ୍ତୀ କାର୍ଯ୍ୟକ୍ରମ ସବୁ ଥିଲା ବେଶ୍ ଚମକପ୍ରଦ । ବାରଣାସୀର ଶ୍ରୀରାମ ମନ୍ଦିର ଓ କଲିକତାର କାଳୀମନ୍ଦିରରେ ଦଳିତ ଜାତିର ଲୋକେ ପ୍ରବେଶ କଲେ । ୧୯୩୨, ସେପ୍ଟେମ୍ବର ୨୦ରୁ ଅକ୍ଟୋବର ୨ (ଗାନ୍ଧୀ ଜୟନ୍ତୀ) ମଧ୍ୟରେ ପ୍ରାୟ ଅଧିକାଂଶ ଦେଶୀୟ ରାଜ୍ୟ

(Federal States)ର ପୂଜାପୀଠ ସର୍ବସାଧାରଣଙ୍କ ପାଇଁ ମୁକ୍ତ ହେଲା । ସେଥିମଧ୍ୟରୁ ବରୋଦା, କାଶ୍ମୀର, କୋହଲାପୁର ଆଦିର ନାମ ଉଲ୍ଲେଖଯୋଗ୍ୟ । ସବୁ ବର୍ଗର ଲୋକେ ଧର୍ମାନୁଷ୍ଠାନକୁ ଯାଇପାରିଲେ । ସେକାଳର ଗଣମାଧ୍ୟମ (ଖବରକାଗଜ) ସେସବୁ ପ୍ରସଙ୍ଗ ନେଇ ପ୍ରତିଦିନ ବାର୍ତ୍ତା ପ୍ରଚାର କରୁଥିଲା ।

ଏହାର ପରବର୍ତ୍ତୀ କଥା ଥିଲା ପଙ୍‌କ୍ତି ଭୋଜନରେ ସବୁବର୍ଗର ଲୋକଙ୍କ ଯୋଗଦାନ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ମାଆ ଶ୍ରୀମତୀ ସ୍ୱରୂପାରାଣୀ ଦେବୀ ଏକ ଧାଡ଼ିରେ ସମସ୍ତଙ୍କ ସହ ଭୋଜନ କରିଥିଲେ । ସେମାନଙ୍କୁ ପରଷୁ ଥିଲେ ହରିଜନ ଓ ସେମାନଙ୍କ ସହ ଭୋଜନରେ ମଧ୍ୟ ବସିଥିଲେ ସବୁବର୍ଗର ଲୋକେ । ସେତେବେଳେ କାଶୀ ବିଶ୍ୱବିଦ୍ୟାଳୟ (ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ)ର ଅଧ୍ୟକ୍ଷ ମହାଶୟ ବହୁ ଅସବର୍ଣ୍ଣ ଓ ସବର୍ଣ୍ଣଙ୍କ ସହ ପଙ୍‌କ୍ତି ଭୋଜନ କରିଥିଲେ । ବମ୍ବେ (ବର୍ତ୍ତମାନର ମୁମ୍ବାଇ) ମହାନଗରରେ ଏକ ନୂଆଧରଣର ସଚେତନତା ସୃଷ୍ଟି କରାଯାଇଥିଲା । ଏକ ସଂଗଠନ ତରଫରୁ ମନ୍ଦିର ପାଖରେ ବାକ୍ସ ବସାଇ ଦିଆଗଲା । ସ୍ୱେଚ୍ଛାସେବୀଗଣ ମନ୍ଦିରରେ ଅସବର୍ଣ୍ଣଙ୍କ ପ୍ରବେଶ ସପକ୍ଷ ଓ ବିପକ୍ଷରେ ସ୍ୱକୀୟ ମତ ରଖିବା ପାଇଁ ଅନୁରୋଧ କରିଥିଲେ । ଶେଷରେ ଦେଖାଗଲା ଯେ ହରିଜନଙ୍କ ମନ୍ଦିର ପ୍ରବେଶ ସପକ୍ଷରେ ମତ ଥିଲା । ଦକ୍ଷିଣ ଭାରତରେ ଶିକ୍ଷାନୁଷ୍ଠାନରେ ସବୁବର୍ଗର ପିଲାଏ ପାଖାପାଖି ବସି ପାଠ ପଢ଼ିଲେ । ସବୁବର୍ଗର ଲୋକେ କୂଅ–ପୋଖରୀରୁ ଜଳସଂଗ୍ରହ କରି ପାରିଲେ । ଏହିପରି ଭେଦଭାବ ତୁଟିଯିବାର ସମ୍ବାଦ ଚିଠିପତ୍ର ଜରିଆରେ ଗାନ୍ଧିଜୀଙ୍କ ପାଖରେ ଜମାହେଲା । ଛୁଆଁଛୁତି ପୂରାପୂରି ଉଠି ଯାଇ ନ ଥିଲେ ହେଁ ତା'ପରେ ଯିଏ ବାରଣ କଲେ ତାଙ୍କୁ ହିଁ ହିଁ ଦୋଷାରୋପ କରାଯାଇଥିଲା । ଏ ସଂପର୍କରେ ଗାନ୍ଧିଜୀ ତାଙ୍କର କନ୍ୟାତୁଲ୍ୟା ମୀରାବେନ୍‌ଙ୍କୁ ଲେଖିଥିବା ଚିଠିର କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ । ଯଥା– ''ପ୍ରଭୁଙ୍କର କରୁଣା ଅସୀମ । ଅଛୁଆଁ ରାକ୍ଷସକୁ ଧ୍ୱଂସ କରିବାରେ ସେ ହିଁ ଏକମାତ୍ର ସହାୟ । ମୋର ଅନଶନ କିଛି ନୁହେଁ ।'' ପ୍ରକାଶ ଥାଉ କି, ଗାନ୍ଧିଜୀ ଏଇ ଅନଶନ କଲାବେଳେ ଜେରଓ୍ୱାଡ଼ା ଜେଲରେ ଥିଲେ । ଏଣୁ ସରକାରଙ୍କ ପକ୍ଷରେ ଏହା ଥିଲା ବେଶ୍ ଉଦ୍‌ବେଗର କାରଣ । ଏଣୁ ସରକାରଙ୍କ ବୁଝାମଣାରେ ମାନ୍ୟବର ସାପ୍ରୁ ଓ ଜୟକାରଙ୍କ ପରି ନେତା ଜେଲରୁ ଆସି ଗାନ୍ଧିଜୀଙ୍କର ଯତ୍ନନେଲେ । ମହିଳା ବନ୍ଦୀଶାଳାରୁ ସରୋଜିନୀ ନାଇଡୁ ଆସି ବାପୁଙ୍କ କଥା ବୁଝିଲେ । କସ୍ତୁରବା ଗାନ୍ଧୀ ସେତେବେଳେ ସାବରମତୀ ଜେଲରେ ଥିଲେ । ତାଙ୍କୁ ମଧ୍ୟ ଗାନ୍ଧିଜୀଙ୍କ ପାଖକୁ ଅଣାଗଲା । ଗାନ୍ଧିଜୀଙ୍କୁ କସ୍ତୁରବା ଓ ସରୋଜିନୀ ନାଇଡୁ ସରବତ୍ ପିଇବାକୁ ଦେଇଥିଲେ । ଗାନ୍ଧିଜୀଙ୍କୁ ମଧ୍ୟ ସରକାର ବନ୍ଦୀଶାଳାରୁ ଚୁକ୍ତିସହ ଖଲାସ କରି ଦେଇଥିଲେ ।

ବିଶ୍ୱବିଖ୍ୟାତ ସାମ୍ବାଦିକ ଲୁଇଫିସର ଗାନ୍ଧିଜୀଙ୍କର କାର୍ଯ୍ୟାନୁଷ୍ଠାନର ଗୁରୁତ୍ୱ ଓ ଅସ୍ପୃଶ୍ୟତା ନିବାରଣରେ ତାହା ଯେ ଖୁବ୍ ପ୍ରଭାବଶାଳୀ ବୋଲି ମନ୍ତବ୍ୟ ରଖିଥିଲେ । ପରବର୍ତ୍ତୀ କାଳରେ ୧୯୩୪ରେ ଅସ୍ପୃଶ୍ୟତା ନିବାରଣ, ମନ୍ଦିର ପ୍ରବେଶ, ହରିଜନ ପାଣ୍ଠିସଂଗ୍ରହ ଉଦ୍ଦେଶ୍ୟରେ ଗାନ୍ଧିଜୀ ଓଡ଼ିଶାରେ ପଦଯାତ୍ରା କରିଥିଲେ । ତାଙ୍କର ଏଇ ପଦଯାତ୍ରାକୁ ଧର୍ମଯାତ୍ରା ବା ତୀର୍ଥଯାତ୍ରାରେ ମାନ୍ୟତା ଦିଆଯାଇଥିଲା । ଉଦ୍ଦେଶ୍ୟ ଅତ୍ୟନ୍ତ ମହତ୍ । ପଦଯାତ୍ରାର ମୁଖ୍ୟ ବ୍ୟବସ୍ଥାପକ ଥିଲେ ଅମୃତଲାଲ ବିଠଲଦାସ ଠକ୍‌କର ବାପା । ସଂକ୍ଷେପରେ ସନ୍ଥ ଠକ୍‌କର ବାପା । ତାଙ୍କ ସହିତ ପୂର୍ଣ୍ଣପ୍ରାଣରେ ସହଯୋଗ କରିଥିଲେ ଗୋପବଂଧୁ ଚୌଧୁରୀ । ଏଇ ପଦଯାତ୍ରା ପୁରୀରୁ ଆରମ୍ଭ ହୋଇଥିଲା । ଗାନ୍ଧିଜୀଙ୍କ ସହ ଚାଲୁଥିଲେ ମୀରାବେନ୍, ଜୟପ୍ରକାଶଙ୍କ ପତ୍ନୀ ପ୍ରଭାବତୀ ଦେବୀ, ଯମୁନାଲାଲଙ୍କ ସାନଝିଅ ଉମା, ଜନୈକ ଆଶ୍ରମବାସିନୀ ସୁଶୀଳା ବାଇ ଓ ଅନ୍ୟ ଦଶଜଣ । ସାଙ୍ଗରେ ରହିଥାଏ ସଫେଇ ସରଂଜାମ । ଯଥା– ଝାଡୁ, ଝୁଡ଼ି, କୋଦାଳ ଆଦି । ଅଧିକ ଜିନିଷ ପାଇଁ ଶଗଡ଼ ବରାଦ ହେଉଥାଏ । ଯେଉଁ ଗ୍ରାମ / ଜନପଦରେ ଯାହା ମିଳିଲା, ପଦଯାତ୍ରୀଗଣ ତାହା ଖାଉଥିଲେ । ଗାନ୍ଧିଜୀଙ୍କୁ ପଇଡ଼ ପିଇବାକୁ ଭଲ ଲାଗୁଥିଲା । ଛେଳିକ୍ଷୀର ପିଇବାର ଅଭ୍ୟାସ ତାଙ୍କର ଥିଲା । ଯେଉଁଠି ଛେଳିକ୍ଷୀର ମିଳୁଥିଲା ସେ

ପିଉଥିଲେ । ଅଧିକ ଛେଳିଦୁଧ ମିଳୁଥିଲେ ତାଙ୍କୁ ରାବିଡ଼ିପରି ବାଟକୁ ରଖାଯାଉଥିଲା । ଦିନକୁ ପ୍ରାୟ ୮–୧୦ ମାଇଲ ବାଟ ଚାଲୁଥିଲେ । ଅତି ସକାଳୁ ଦିନ ୧୧ଟା ଯାଏ । ପୁଣି ଛାଇଲେଉଟା ବେଳରୁ ସଂଜ ବେଳଯାଏ । ସବୁଠି ସଭାକରି ଜାତି–ଭେଦଭାବ ଉଠାଇ ଦେବା ପାଇଁ ଗାନ୍ଧିଜୀ କହୁଥିଲେ । ଲୋକେ ବଦଳୁ ଥିଲେ ।

ଏଇ କାମ ପାଇଁ ଲୋକେ ଚାନ୍ଦା ଦେଉଥିଲେ । ବିବିଧ ମୂଲ୍ୟବାନ୍ ଦ୍ରବ୍ୟ ଗାନ୍ଧିଜୀଙ୍କୁ ଦିଆଯାଉଥିଲା । ସେଗୁଡ଼ିକୁ ନିଲାମ କରାଯାଇ ସେ ଅର୍ଥକୁ ହରିଜନ ଉନ୍ନୟନ ପାଣ୍ଠିରେ ରଖାଯାଉଥିଲା । ଯଥା– ଯାଜପୁର ଜିଲ୍ଲାର ତତ୍‌କାଳୀନ ବିଶିଷ୍ଟ କାଠ କାରିଗର ଶ୍ରୀ ଧନେଶ୍ୱର ମହାରଣା ଚନ୍ଦନକାଠର ବାକ୍ସ କରିଥିଲେ । ସେଥିରେ ଯାଜପୁରବାସୀଙ୍କ ତରଫରୁ ଅଭିନନ୍ଦନ ପତ୍ର ଗାନ୍ଧିଜୀଙ୍କୁ ଦିଆଯାଇଥିଲା । ସେ ଆନନ୍ଦରେ ତାହା ଗ୍ରହଣ କରିଥିଲେ । ପରେ ଚନ୍ଦନକାଠର ବାକ୍ସଟି ପାଞ୍ଚଶତ ଟଙ୍କାରେ ନିଲାମ ହୋଇଥିଲା । ସେହିଧନ ହରିଜନ ଉନ୍ନୟନ ପାଣ୍ଠିକୁ ଯାଇଥିଲା । ପ୍ରକାଶ ଥାଉ କି, ନିଲାମରେ ବାକ୍ସଟି କିଣିଥିଲେ ବିରଳା ପରିବାରର ଜଣେ ଦର୍ଶକ ।

ଏଇ ପଦଯାତ୍ରାର ପ୍ରଥମ ପର୍ଯ୍ୟାୟର ରହଣୀସ୍ଥଳ ଥିଲା– ପୁରୀ, ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳର କାଦୁଆ ଆଶ୍ରମ, ବୀର ପୁରୁଷୋତ୍ତମପୁର, ଦାଣ୍ଡମୁକୁନ୍ଦପୁର, ତେଲେଙ୍ଗାପେଣ୍ଠ, କାଜୀପାଟଣା ଓ କଟକ ଆଦି । ଏହାର ଦ୍ୱିତୀୟ ପର୍ଯ୍ୟାୟର ରହଣିସ୍ଥଳ ଥିଲା ଚଂପାପୁର, ଭେଡ଼ା, ସତ୍ୟଭାମାପୁର, ବହୁକୁଦ, ଶିଶୁଆ, ସାଲେପୁର, ନିଶ୍ଚିନ୍ତକୋଇଲି (ପଣସପଡ଼ିଆ), କେନ୍ଦ୍ରାପଡ଼ା, ବାରିମୂଳ, ଇନ୍ଦୁପୁର, ବରୀ, ଯାଜପୁର ଓ ଭଦ୍ରକ ଆଦି । ପଦଯାତ୍ରାର ବିବରଣୀ ପ୍ରସ୍ତୁତ କରି ଦୈନିକ 'ସମାଜ' ସମ୍ବାଦପତ୍ରକୁ ପଠାଉଥିଲେ ଶ୍ରୀ ବିନୋଦ କାନୁନ୍‌ଗୋ ।

କ୍ରମେ ପରିଣତ ବୟସରେ ଚାଲିବାକୁ, ସଭାରେ ଲୋକଙ୍କୁ ପ୍ରେରଣା ଦେବାକୁ ଏତେ ଶକ୍ତି କିଏ ଦେଉଛି ବୋଲି ପ୍ରଶ୍ନର ଉତ୍ତର ସେ ଦେଇଥିଲେ– ''ଈଶ୍ୱରଙ୍କ କରୁଣା'' । ଗାନ୍ଧିଜୀଙ୍କ ମତରେ ସତ୍ୟ ହିଁ ଈଶ୍ୱର ଓ ଈଶ୍ୱର ହିଁ ସତ୍ୟ ।

ମହାତ୍ମାମାନଙ୍କର କର୍ମ–ସାଧନ ଅକାରଣରେ ଯାଏ ନାହିଁ । ଗାନ୍ଧିଜୀଙ୍କର ତପସ୍ୟା ଆଜି ଫଳପ୍ରଦ ହୋଇଛି । ଜାତିଭେଦ ପ୍ରାୟ ନାହିଁ କହିଲେ ଚଳେ ।

ସେକ୍ଟର ୨/୪୨୬, ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧



# ବାମାବାଦ ଓ କଥାକାର ଫକୀର ମୋହନ

ଦୀପ୍ତିମୟୀ ସାହୁ

ଅପ୍ରତିଦ୍ୱନ୍ଦ୍ୱୀ କଥାକାର ଫକୀର ମୋହନ ସେନାପତିଙ୍କର ସୃଷ୍ଟିରେ ଦୁର୍ଲ୍ଲଭ ପରିକଳ୍ପନା ହେଉଛି 'ନାରୀ' । ସେ ପୁରୁଷଠାରୁ ଶାରୀରିକ ଗଠନ ଦୃଷ୍ଟିରୁ ଭିନ୍ନ ହୋଇପାରେ ସତ, ମାତ୍ର ତା'ର ଜ୍ଞାନ, ବୁଦ୍ଧି, ବିଦ୍ୟାର ପରିପକ୍ୱତା ଦୃଷ୍ଟିରୁ ସେ ମଧ୍ୟ ପୁରୁଷଙ୍କ ସହ ସମତାଳରେ ଗତି କରିପାରେ, ଆପଣାର ବିଚାରବୋଧ, ସ୍ୱାତନ୍ତ୍ର୍ୟ, ସ୍ୱାଧୀନତାର ମୂଲ୍ୟବୋଧକୁ ଅକ୍ଷୁଣ୍ଣ ରଖି ନିଜର ପ୍ରତିଭା ତଥା ଯୋଗ୍ୟତାର ପ୍ରତିପାଦନ ନିମିତ୍ତ ସମାଜର ମଶାଲ ହୋଇ ନୂତନ ଦିଗନିର୍ଣ୍ଣୟ କରିପାରେ । ଏହା ହିଁ ବାମାବାଦୀ ଚେତନାଭୁକ୍ତ ପ୍ରମୁଖ ଲକ୍ଷଣ । ନାରୀ, ପୁରୁଷଙ୍କ ସହ ସମାସ୍କନ୍ଧ ହୋଇ ରାଜନୈତିକ, ସାମାଜିକ, ଶିକ୍ଷାଦୀକ୍ଷା, ଚାକିରି ପ୍ରଭୃତି କ୍ଷେତ୍ରରେ ସମାଧିକାର ପାଇବାର ଚିନ୍ତା ବା ଭାବନାକୁ ନାରୀବାଦ ବା ବାମାବାଦ ବୋଲି କୁହାଯାଇଥାଏ ।

ଇଂରାଜୀ 'Feminism'ଶବ୍ଦଟିକୁ ଓଡ଼ିଆରେ 'ନାରୀବାଦ' ବା 'ବାମାବାଦ' ଭାବରେ ଆଲୋଚକଗଣ ଗ୍ରହଣ କରିଛନ୍ତି, ଯାହାକୁ ପ୍ରଥମେ ସମାଜବାଦୀ ତଥା ଫ୍ରାନ୍ସର ଦାର୍ଶନିକ 'Charles Fourier' ସୃଷ୍ଟି କରିଥିଲେ । ୧୮୩୭ ପରେ ଏହି ଶବ୍ଦଟି ୧୮୭୨ ରେ ନେଦରଲ୍ୟାଣ୍ଡ, ଗ୍ରେଟ୍ ବ୍ରିଟେନ୍, ୟୁନାଇଟେଡ୍ ଷ୍ଟେଟ୍ସ ଅଫ୍ ଆମେରିକାରେ ତଥା ୧୮୯୨ରେ Oxford English Dictionaryରେ ସ୍ଥାନ ପାଇଥିଲା । ପାଶ୍ଚାତ୍ୟ ସାହିତ୍ୟରେ ନାରୀମାନଙ୍କର ଅଧିକାରର ସୁରକ୍ଷା ତାଙ୍କ ସୃଜନଶୀଳ ସମ୍ଭାବନା, ଶାରୀରିକ, ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣର ବିଶଦ ଆଲୋଚନା ଆଦି ନାରୀବାଦକୁ ନେଇ ଉଜ୍ଜୀବିତ । ଫ୍ରାନ୍ସର Simonede Beauvoirଙ୍କ 'The Second Sex' (1949)ରେ ନାରୀବାଦୀ ଦୃଷ୍ଟିକୋଣ ନେଇ ମଣିଷ ସଭ୍ୟତାକୁ ବିଚାର କରିବା ନିମିତ୍ତ ଏକ ଉତ୍ତମ ପୁସ୍ତକ । ତାଙ୍କ ପୁସ୍ତକର ବହୁ ଚର୍ଚ୍ଚିତ ଧାଡ଼ି – 'One is not born, but rather becomes, woman; ଏଇ ନାରୀତ୍ୱର ପାର୍ଥକ୍ୟ ଶାରୀରିକ, ମାନସିକ କିମ୍ବା ବୌଦ୍ଧିକ କାରଣରୁ ଆସେ ନାହିଁ ବରଂ ସମାଜ, ଅବା କେଉଁ ପ୍ରାଚୀନ କାଳରୁ ପୁରୁଷ ଏବଂ ନାରୀ ମଧ୍ୟରେ ଏ ପାର୍ଥକ୍ୟକୁ ସୃଷ୍ଟି କରିଛି । ନାରୀକୁ ଦୁର୍ବଳା, ଅବଳା ସଜେଇ ଆପଣା ସାମ୍ନାରୁ ଦୂରେଇ ରଖିଛି ।

ବେଦ ବେଦାନ୍ତ କାଳରୁ ଆମ ଭାରତବର୍ଷରେ କୁନ୍ତୀ, ସାବିତ୍ରୀ, ସୀତା, ଦ୍ରୌପଦୀ, ଅହଲ୍ୟା, ମନ୍ଦୋଦରୀ, ତାରା ଭାବରେ ଯିଏ ଚିର ପୂଜ୍ୟା । ବେଦ, ଶାସ୍ତ୍ର, ପୁରାଣ ଆଦିରେ ଯାହାର ନାମ ଉଚ୍ଚାରଣ ମାତ୍ରେ ପବିତ୍ରତା ତଥା ଶୁଦ୍ଧତା ମିଳିଥାଏ, ଏଭଳି ମହିୟସୀଙ୍କ ଗର୍ଭସମ୍ଭୂତା ଏ ନାରୀଜାତି ମୋଗଲ, ମରହଟ୍ଟା ଆଦିଙ୍କ କୁଦୃଷ୍ଟି ତଥା ଅତ୍ୟାଚାରରୁ ବର୍ତ୍ତିବା ନିମନ୍ତେ ହୋଇଯାଇଥିଲେ ଅସୂର୍ଯ୍ୟଂପଶ୍ୟା । ଏମାନେ ଆପଣାର ଇଚ୍ଛା, ଆକାଂକ୍ଷାକୁ ଚାପି ରଖି ସତୀପ୍ରଥା, ବାଲ୍ୟବିବାହ, ପରଦାପ୍ରଥା ଆଦି ମାଧ୍ୟମରେ ଘରର ଦେହଳୀ ତଥା ଏରୁଣ୍ଡି ବନ୍ଧ ଭିତରେ ଆପଣାକୁ ସଂକୁଚିତ କରି ରଖିଥିଲେ ।

ଇଂରେଜ ଶାସନ, ରେନେସାଁ, ନ'ଅଙ୍କ ଦୁର୍ଭିକ୍ଷ, ଭାଷା ବିଲୋପ ଆନ୍ଦୋଳନ ପ୍ରଭୃତି କାରଣରୁ ଊନବିଂଶ

ଶତକର ଶିକ୍ଷା–ଦୀକ୍ଷା, ସାମାଜିକ, ସାଂସ୍କୃତିକ, ରାଜନୈତିକ ତଥା ପାରିପାର୍ଶ୍ୱିକ ଚିନ୍ତା ଚେତନାରେ ପାଶ୍ଚାତ୍ୟ ଭାବମାନ ଉଙ୍କିମାରିଛି । ନୂଆ ଚେତନାର ପ୍ଲାବନରେ ପ୍ଲାବିତ ହୋଇଛି ଓଡ଼ିଆ ଯୁବମାନସ । ଫଳସ୍ୱରୂପ, ସେମାନେ ସମାଜର ଧରବନ୍ଧା ନୀତିନିୟମ ତଥା ସଂସ୍କାରରେ ପରିବର୍ତ୍ତନ ପାଇଁ ହୋଇଛନ୍ତି ସଚେଷ୍ଟ । ଏ କ୍ଷେତ୍ରରେ ଆଧୁନିକ ଓଡ଼ିଆ କଥା ସାହିତ୍ୟର ସ୍ରଷ୍ଟା, ବାମାପନ୍ଥୀ ଚିତ୍ରକାର, 'ବ୍ୟାସକବି ସରସ୍ୱତୀ ଫକୀର ମୋହନ'ଙ୍କ ନାମ ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ଊନବିଂଶ ଶତକର ଏହି ପ୍ରବୀଣ ସାହିତ୍ୟିକ ଓଡ଼ିଆ ଜନଜୀବନ, ପଲ୍ଲୀ–ପ୍ରକୃତି, ତା'ର ଭାଷା, ହୃଦୟର ସ୍ପନ୍ଦନକୁ ହୃଦ୍‌ବୋଧ କରିବାର ଜଣେ ନିଆରା କଥାକାର । ଧୂଳିମାଟିରୁ ଶବ୍ଦ ସାଉଁଟି ସାଧାରଣ ଗ୍ରାମ୍ୟ ଲଳନାଙ୍କର ତଥା ଜନଜୀବନଙ୍କ ବାସ୍ତବ ଛବି ଅଙ୍କନ କରିବାରେ ସେ ପ୍ରଥମ ସଫଳ ଓଡ଼ିଆ ମାର୍ଗଦର୍ଶକ ।

ତାଙ୍କର ଅନୁବାଦ, ପାଠ୍ୟପୁସ୍ତକ, କାବ୍ୟ–କବିତା, ଗଳ୍ପ, ଉପନ୍ୟାସ ଆଦି ଓଡ଼ିଆ ସାହିତ୍ୟର ମୂଳଭିତ୍ତି ପାଇଁ ଏବଂ ସଂସ୍କାରିତ, ପଲ୍ଲୀପ୍ରାଣତା, ବୌଦ୍ଧିକତା ତଥା ଜାତି–ଜନ–ପ୍ରୀତିର ମହାର୍ଘ ଅବଦାନ କହିଲେ ଭୁଲ୍ ହେବ ନାହିଁ ।

ଚିରବରେଣ୍ୟ କଥାଶିଳ୍ପୀ ଫକୀର ମୋହନଙ୍କ ସାହିତ୍ୟର ସମସ୍ତ ଦିଗମାନଙ୍କ ମଧ୍ୟରୁ ଅନ୍ୟତମ ପ୍ରମୁଖ ବାମାବାଦୀ ଚିନ୍ତାର ପରିପ୍ରକାଶ ଏଠାରେ ଆଲୋଚ୍ୟ ବିଷୟ ।

ସମଗ୍ର ଗଳ୍ପ ସାହିତ୍ୟ ତଥା ଚାରୋଟି ଉପନ୍ୟାସ ମଧ୍ୟରେ ଫକୀର ମୋହନ ସେନାପତି କୋଟି କୋଟି ଓଡ଼ିଆ ନାରୀଙ୍କ ଭାବ–ଭାବନା, ଚିନ୍ତା–ଚେତନା, ଦୁଃଖ–ସୁଖ ଓ ଅଭାବ–ସ୍ୱଭାବ ଆଦିର ବାସ୍ତବ ରୂପାୟନ କରିଛନ୍ତି । ନାରୀ ହୃଦୟର ମନର, ଅକୁହା ବାଣୀ ତାଙ୍କ ସୃଷ୍ଟିକୁଞ୍ଜରେ ଗୁଞ୍ଜରି ଉଠିଛି । ସେ ଓଡ଼ିଆ ସାହିତ୍ୟର ପ୍ରଥମ ସାହିତ୍ୟିକ, ଯେ କି ଆପଣା ସାହିତ୍ୟ ମଧ୍ୟରେ ପଲ୍ଲୀ ଓଡ଼ିଆଣୀଙ୍କ ଓଢ଼ଣା ତଳର ଭୟ, ବ୍ୟଥା, ଦୁଃଖ, ଶୋକର ମାନ ଅଭିମାନଙ୍କୁ ପ୍ରତ୍ୟକ୍ଷ ଭାବେ ତନ୍ନତନ୍ନ କରି ପ୍ରଥମେ ପରିବେଷଣ କରିଛନ୍ତି । ସଞ୍ଜୟ ହୋଇ ଧର୍ମାନ୍ଧ ସାମାଜିକ ଅର୍ଗଳିରେ ବନ୍ଧା ଶିକ୍ଷିତ–ଅଶିକ୍ଷିତ ଧୃତରାଷ୍ଟ୍ରଙ୍କୁ କନ୍ୟା, ଭଗିନୀ, ଜାୟା, ଜନନୀଙ୍କ କଷଣ, ଶୋଷଣ, ନିର୍ଯାତନା, ଅତ୍ୟାଚାରର ଭୟାବହତାକୁ ଦେଖି ଦେଖାଇ ଦେଇଛନ୍ତି କଥା ସାହିତ୍ୟ ମାଧ୍ୟମରେ । ଫଳସ୍ୱରୂପ ଏଇ ସମାଜ ତାଙ୍କ ସ୍ୱତନ୍ତ୍ରତା, ଶିକ୍ଷା–ଦୀକ୍ଷାଦି ପ୍ରତି ସୁ–ସଚେତନ ହେବାକୁ ଅଣ୍ଟାରେ ଗାମୁଛା ଭିଡ଼ି ଆଖିକୁ ହୃଦୟକୁ ମନକୁ ଖୋଲା କରିଛି । ସମୟ ସହ ସମତାଳରେ ଗତି କରିବା ନିମନ୍ତେ ହୋଇଛି ବଦ୍ଧପରିକର ।

ବୁଦ୍ଧିଜୀବୀମାନଙ୍କର ସହୃଦୟତାର ଦୃଷ୍ଟିପାତ ନିମନ୍ତେ ତାଙ୍କର ଆଦ୍ୟଶଙ୍ଖନାଦ, ବହୁଚର୍ଚ୍ଚିତ ତଥା ଜନାଦୃତ ଗଳ୍ପ ହେଉଛି 'ରେବତୀ' । ଆଜିର ଏକବିଂଶ ଶତାବ୍ଦୀରେ ନାରୀଶିକ୍ଷା, ସ୍ୱତନ୍ତ୍ରତା ତଥା ଜାଗରଣର ଯେଉଁ ବିରାଟ ବୃକ୍ଷମାନ ଶାଖାପ୍ରଶାଖା ମେଲି ଚକାମାଡ଼ି ବସିଛନ୍ତି, ତାହା ଯେ ଆଜକୁ ପ୍ରାୟ ୧୨୦ ବର୍ଷ ତଳେ ଫକୀର ମୋହନଙ୍କ ଗୋଟିଏ ସାଧାରଣ ଝିଅ 'ରେବତୀ' ଚରିତ୍ର ମାଧ୍ୟମ ଦେଇ ବୀଜବପନ ହୋଇଥିଲା, ତାହା କୌଣସି ବୁଦ୍ଧିଜୀବୀ ଅସ୍ୱୀକାର କରିପାରିବେ ନାହିଁ ବରଂ ଆଶ୍ଚର୍ଯ୍ୟାନ୍ୱିତ ହେବେ ।

ପରିବାରର ଦୁର୍ଗତି, ବାପା, ମାଆ, ଶିକ୍ଷକ ବାସୁଦେବର ମୃତ୍ୟୁ ତଥା ସମସ୍ତ ସର୍ବନାଶର କାରଣ ମନେକରି ଆମ ପ୍ରାଚୀନ ପରଂପରାର ପ୍ରତୀକ ଜେଜୀମା ତାକୁ ଅଭିମାନଭରା, ଦରଦମିଶା, ଗାଳି, ଭର୍ତ୍ସନା – 'ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୂଲି' ଦେବାର ପ୍ରତିବଦଳରେ ଗାଳ୍ପିକ ତା'ର ନିର୍ଦ୍ଦୋଷ ପଣିଆକୁ ସୂଚିତ କରିଛନ୍ତି । ସମୟ ନେଇ ଫଳଦୃଷ୍ଟିରୁ ତତ୍‌କାଳୀନ ସମୟ ତଥା ସମାଜିକ ଧର୍ମାନ୍ଧ ମଣିଷର ହୃଦୟ ପରିବର୍ତ୍ତନ ନିମନ୍ତେ ଗଳ୍ପର ପରିଣତିରେ 'ରେବତୀର' ମୃତ୍ୟୁ ହୋଇଛି । ଏହି କରୁଣ ପରିସ୍ଥିତି ସୃଷ୍ଟି ନିମନ୍ତେ ଗାଳ୍ପିକଙ୍କ ପଦକ୍ଷେପ ସୁଚିନ୍ତିତ ତଥା ଅନିବାର୍ଯ୍ୟ ମନେହୁଏ । ଝିଅ ଯେ ପଢ଼ିଲେ ଦୁର୍ଗତି ମାଡ଼ିଆସେ ଏଭଳି କୁତ୍ସିତ ଅନ୍ଧବିଶ୍ୱାସ ତଥା ମନର ମିଛ ମଇଳାରେ ଆମେ ଆମ ସମାଜର ନିଷ୍ପାପ କଳିମାନଙ୍କୁ ଫୁଲ ଫୁଟି ସୁରଭି ବାଣ୍ଟିବା ଆଗରୁ ଦଳି ଦେଉଥିଲୁ ଜାଣି ଲଜ୍ଜା ଅନୁଭବ ହୁଏ । ଯାହାକୁ ଗଳ୍ପ ମାଧ୍ୟମରେ କେଡ଼େ କୌଶଳରେ ହୃଦୟସ୍ପର୍ଶୀ କରାଇଛନ୍ତି ଗାଳ୍ପିକ ।

କେତେକ କ୍ଷେତ୍ରରେ ନାରୀ ପୁରୁଷଠାରୁ ବି ଆଗୁଆ । କେବଳ ଗୃହକର୍ମରେ ନୁହଁ, ଦେଶ ସମ୍ଭାଳିବାରେ ମଧ୍ୟ ତା'ର ପାରିଲାପଣ ସାରା ଦୁନିଆ ଦେଖିସାରିଛି । ଦାୟିତ୍ୱ ନିର୍ବାହ କରିବାରେ ତା'ର ବ୍ୟକ୍ତିତ୍ୱର ସୁପ୍ରଭା କୋଣେକୋଣେ ବିଚ୍ଛୁରିତ । ଖୁବ୍ ସରଳ ଭାବେ ଫକୀର ମୋହନ, 'ପେଟେଣ୍ଟ ମେଡ଼ିସିନ୍' ଗଳ୍ପ ଜରିଆରେ ଏହି ଚେତନାର ରୂପାୟନ କରିଛନ୍ତି । ନାରୀ ସ୍ୱତନ୍ତ୍ରତା ତଥା ସ୍ୱାଧୀନତାର ମଶାଲ୍ ଏଠାରେ ଗଳ୍ପ ନାୟିକା 'ସୁଲୋଚନା ଦେଈ' ।

ଶ୍ୟାମ ପଟ୍ଟନାୟକ ନିଜର ଅଯୋଗ୍ୟ, ଦୁଶ୍ଚରିତ୍ର, ନିଶାଖୋର ପୁତ୍ର 'ଚନ୍ଦ୍ରମଣି ବାବୁ'ଙ୍କ ପରିବର୍ତ୍ତେ ଆପଣା ବୋହୂ ସୁଲୋଚନା ଦେଈଙ୍କୁ ସଂପତ୍ତି ସମ୍ଭାଳିବାର ଗୁରୁଦାୟିତ୍ୱ ଅର୍ପଣ କରିଥିଲେ । ଏ ଗଳ୍ପନାୟିକା ସୁନ୍ଦରୀ, ଶିକ୍ଷିତା, 'ସୁଲୋଚନା' କେବଳ କାରବାର ଅଥବା ଘର ଚଳାଇପାରେ, ତାହା ନୁହଁ, ଦରକାର ବେଳେ ଅସତ୍‌ପଥର ପଥିକ ସ୍ୱାମୀ ଚନ୍ଦ୍ରମଣିଙ୍କୁ ପେଟେଣ୍ଟ ମେଡ଼ିସିନ୍ ରୂପକ ଝାଡୁ ପାହାର ଦେଇ ସଠିକ୍ ମାର୍ଗ ମଧ୍ୟ ଦେଖାଇ ଦେଇପାରେ । ବିଚାର ଦୃଷ୍ଟିରୁ ଏଠାରେ ନାରୀ ସ୍ୱାଧୀନତା ନାରୀ ସ୍ୱତନ୍ତ୍ରତା, ନାରୀବାଦୀ ଚେତନା, ଉଚ୍ଛୃଙ୍ଖଳିତ ହୋଇନି ବରଂ ଜଣେ ବୁଦ୍ଧିମତୀ, ପତିବ୍ରତା, ସ୍ୱାମୀ ସୋହାଗିନୀ, ନିତ୍ୟନୂତନ ସୁଶୃଙ୍ଖଳିତ ନାୟିକାଟିଏ ସହ ପାଠକେ ପରିଚିତ ହୁଅନ୍ତି । ହେ ସୁଧୀବୃନ୍ଦ ! ଟିକିଏ ନିରିଖେଇ ଦେଖନ୍ତୁନା, ଏହି ସୁଲୋଚନା ଚରିତ୍ର ଦେଇ ଓଡ଼ିଆଣୀ ଗୃହିଣୀ ମଧ୍ୟରେ ଯେଉଁ ନାରୀବାଦୀ ଉଚ୍ଛ୍ୱସିତ ପ୍ରଚ୍ଛନ୍ନ ଆହ୍ୱାନ ଉଙ୍କି ମାରୁଛି, ତାହା କ'ଣ ଫକୀର ମୋହନୀୟ ବାମାବାଦୀ ଚେତନାର ଆଦ୍ୟାନ୍ଦୋଳନ ନୁହେଁ କି !!!

ନାରୀ ଚରିତ୍ର ଉତ୍ତରଣ ପର୍ଯ୍ୟାୟରେ ସ୍ନେହମୟୀ ଜନନୀର ଅକପଟ ସ୍ନେହ, ପ୍ରେମର ମମତ୍ୱ ଫଲ୍‌ଗୁରେ ସ୍ରୋତସ୍ୱତୀ ହୋଇ ସାମ୍ନାକୁ ଆସନ୍ତି 'ରାଣ୍ଡୀପୁଅ ଅନନ୍ତା' ଗଳ୍ପର ନାୟକ 'ଅନନ୍ତା'ର ମାଆ 'ସିଂହାଣୀ' । ସୁବଳା ମହାକୁଦ ସିଂହର ପତ୍ନୀ 'ମହାକୁଡାଣୀ ଦେବକୀ'ର ପୁତ୍ର– 'ଅନନ୍ତା' ପ୍ରତି ଅତୁଳନୀୟ ମମତାର ଦୀପ୍ତି ପାଠକ ଲକ୍ଷ୍ୟ କରନ୍ତି । ସ୍ୱାମୀ ଅନ୍ତେ ଏକମାତ୍ର ପୁତ୍ର ଅନନ୍ତାର ମୁଖ ଚାହିଁ ବଞ୍ଚି ରହିଛି । ଆଖିର ତାରା, ନୟନର ପିତୁଳା, ଅନନ୍ତା ନିଜ ଗାଁ ପାଇଁ ଆତ୍ମୋତ୍ସର୍ଗରେ ସେ ଜଡ଼ ପାଲଟି ଯାଇଛି । କେତେବେଳେ ଯେ ବୟୋବୃଦ୍ଧା ମାତୃତ୍ୱ–ପ୍ରୀତି–ଶିଖା ଦଗ୍ଧ ହୃଦୟର ସ୍ପନ୍ଦନ ପୁତ୍ର ସହ ଜଳରେ ସମାଧିସ୍ଥ ହୋଇଯାଇଛି ତାହା ସେ ଜାଣିପାରିନି ।

ବର୍ତ୍ତମାନର ଆମ ସମାଜ, ଆମ ଜନଜୀବନ, ଯୁବଗୋଷ୍ଠୀ ଜୀବନସାଥୀ ରୂପେ ଶିକ୍ଷିତା, ସୁଶୀଳା, ଚତୁରୀ, ବୁଦ୍ଧିମତୀ, ମେଳାପୀ, ସୁନ୍ଦରୀ କନ୍ୟାମାନ ଇଚ୍ଛା କରୁଛନ୍ତି । ଏସବୁ ଗୁଣ ମଧ୍ୟରୁ ଝିଅ ସୁନ୍ଦରୀ ହେଉ କି ନ ହେଉ କିନ୍ତୁ ଶିକ୍ଷିତା ହେଇଥିବା ଅନିବାର୍ଯ୍ୟ । ସାଂପ୍ରତିକ ସମୟର ଇଣ୍ଟରନେଟ୍ ଯୁଗରେ ଫେସ୍‌ବୁକ୍, ହ୍ୱାଟ୍‌ସଅପ୍, ମ୍ୟାଟ୍ରିମନି ଆଦି ମାଧ୍ୟମରେ ପୁଅ ଝିଅ ପରସ୍ପର ସହ ବୈଦ୍ୟୁତିକ ବାର୍ତ୍ତାଳପ, ପରସ୍ପର ସମ୍ବନ୍ଧୀୟ ତଥ୍ୟ ଓ ଗୁଣାବଳୀ ସମ୍ବନ୍ଧରେ ଅବଗତ ହୋଇ ଜୀବନସାଥୀ ଚୟନ କରୁଛନ୍ତି । ବର୍ତ୍ତମାନର ଏହି ଭବ୍ୟଭାବନା ବିଂଶ ଶତାବ୍ଦୀର ଆଦ୍ୟପାଦରେ 'ପାଠୋଇ ବୋହୂ' ଗଳ୍ପ ନାୟକଙ୍କ ମଧ୍ୟ ଦେଇ ସୁପ୍ରକାଶ୍ୟ । ମୁକ୍ତାରା ବାବୁଙ୍କ ଚରିତ୍ର ମଧ୍ୟ ଦେଇ ଗାଳ୍ପିକଙ୍କ ଚିନ୍ତା ଚେତନାର ନିତ୍ୟ ନୂତନତାକୁ ଟିକେ ଠଉରାନ୍ତୁ– 'ବସାରେ ଖର୍ଚ୍ଚପତ୍ର ହିସାବ ବୁଝିପାରିବ, ଭାଷାପତ୍ର ଖଣ୍ଡେ ଲେଖିପାରୁଥିବ, ଏପରି ପାଠୋଇ କନ୍ୟାଟିଏ ପାଇଲେ ବିଭାହେବେ । ମୂର୍ଖ କନ୍ୟାଟିଏ ବିଭାହେଲେ କ'ଣ ହେବ ।'

ଏଇ ଦୁଇଟି ପଂକ୍ତିରୁ ତତ୍‌କାଳୀନ ସମାଜରେ ଶିକ୍ଷିତା ନାରୀ ତଥା କନ୍ୟାର ବିବାହ ଉପଯୋଗିତାକୁ ଗାଳ୍ପିକ ନୂଆ ଦୃଷ୍ଟିରେ ଦର୍ଶନ କରାଇଛନ୍ତି ସାମାଜିକ ପ୍ରାଣୀଙ୍କୁ ।

ସେ ପରଂପରାକୁ ଭଲ ପାଆନ୍ତି, କିନ୍ତୁ ଯେଉଁ ଅନ୍ଧବିଶ୍ୱାସ, କୁସଂସ୍କାରାଚ୍ଛନ୍ନ ସାମାଜିକ ପରଂପରା ନାରୀର ସ୍ୱାଧୀନତା, ତା'ର ଇଚ୍ଛା, ଅନିଚ୍ଛାକୁ ପଦାଘାତ କରି, କଣ୍ଢେଇ ଭଳି ତାକୁ ଘରେ ସଜାଇ ରଖନ୍ତି, ସେଭଳି ସାମାଜିକ ନାରୀର ଅବସ୍ଥା ପ୍ରତି ସଚେତ କରାଇ ବ୍ୟଙ୍ଗାକାରରେ ସେ ଆପଣାର ଆଭିମୁଖ୍ୟ ମଧ୍ୟ ରଖିପାରନ୍ତି ।

ଏଇ କେଇ ଧାଡ଼ିରୁ ଦେଖନ୍ତୁନା –

‘କୁଜିପରି ନଇଁ ନଇଁ ଗୋଡ଼ ଟିପି ଗମନା
ମୁଖ ଚନ୍ଦ୍ର ଆବୃତ ହାତେ ଲମ୍ବ ଓଢ଼ଣା
ଚୁ ଚୁ କଥା କହେ ହାଉଡ଼ୀ ସମାନା
ଘରକୋଣ ବାସିନୀ ବିରସ ବଦନା
ମାର୍ଜାର ଶିଶୁ ପରି ମୁଦ୍ରିତ ନେତ୍ରା
ତୈଳ ହରିଦ୍ରା ବିଲେପିତ ଗାତ୍ରା ।’

ଏହିଭଳି ନାରୀଙ୍କ ଦୁର୍ଦ୍ଦଶା ପ୍ରତି ଆମ ନିତ୍ୟ ଶିକ୍ଷିତ ଯୁବକମାନଙ୍କର ଭାବନାରେ ଫକୀର ମୋହନଙ୍କର ନାରୀ ଦରଦୀୟ– ହୃଦୟବତ୍ତାକୁ ଲକ୍ଷ୍ୟକରିବା – ‘ହାୟ ହାୟ ! ଦର ଫୁଟିଲା ପଦ୍ମଟିକୁ ବୋରଝାଞ୍ଜରେ ଘୋଡାଇ ପକାନ୍ତି । ଦେଶର କି କୁପ୍ରଥା ! କି କୁସଂସ୍କାର ! ଛି ଛି ଛି ! ଏପରି କାଠ କଣ୍ଢେଇଟାକୁ କିଏ ବାହା ହେବ ମ ! ମୁଁ ନ ହେବି ନାହିଁ ପଛକେ ବାହା ।’

ଏଇ ଉଦ୍ଧୃତିଟି ଜମିଦାର ଗୋଲାପ ଲୋଚନ ପଟ୍ଟନାୟକଙ୍କ ପୁତ୍ର ‘ମଦନମୋହନ’ଙ୍କ ଭାବନାରେ ଫକୀର ମୋହନଙ୍କ ଭାଷା । ଆମ ସମାଜର ଓଡ଼ିଆ ଝିଅମାନେ ଯେ ଶିକ୍ଷିତ ହୁଅନ୍ତୁ, ଆପଣା ଭାବନକୁ ଖୋଲାଖୋଲି ପ୍ରକାଶ କରିପାରିବାର ଦୃଢ଼ ମାନସିକତା ରଖନ୍ତୁ, ନିଜକୁ ନିତ୍ୟନୂତନ ଭାବରେ ପ୍ରକାଶ କରନ୍ତୁ, ଏହା ହିଁ ତ ଫକୀର ମୋହନଙ୍କ ଉଚ୍ଛ୍ୱସିତ ଭାବନା ତଥା ମହାନ୍ ଇଚ୍ଛା ଥିଲା, ଏକଥା କ’ଣ ଅସ୍ୱୀକାର କରିପାରିବା । ଆମ ନାରୀ ସ୍ୱତନ୍ତ୍ରତା ହେଉ, ଅନନ୍ୟା ହେଉ, ବିଚାରଶୀଳା ତଥା ସ୍ୱାଧୀନା ହେଉ, ଏହା ହିଁ ତ ତାଙ୍କ କାଳଜୟୀ ଗଳ୍ପମାନସର ଆହ୍ୱାନ ।

କେବଳ ଗଳ୍ପ ନୁହେଁ, ଓଡ଼ିଆ କଥା ସାହିତ୍ୟର ଚାରୋଟି ଅମ୍ଳାନ କୃତି– ‘ଛ’ମାଣ ଆଠଗୁଣ୍ଠ’, ‘ଲଛମା’, ‘ମାମୁଁ’, ‘ପ୍ରାୟଶ୍ଚିତ’ ଉପନ୍ୟାସରେ ମଧ୍ୟ ନାରୀଚେତନାର ପ୍ରଚ୍ଛନ୍ନ ମୂର୍ଚ୍ଛନା ସଂଚାରିତ ହୋଇଛି । ଏଇ ଚରିତ୍ରମାନଙ୍କ ମଧ୍ୟରେ ବାମାବାଦୀ ସାହିତ୍ୟାନ୍ଦୋଳନର ଆଭା ଲକ୍ଷଣୀୟ । ଭିନ୍ନ ଭିନ୍ନ ପ୍ରକୃତି ତଥା ସ୍ୱଭାବର ନାରୀ ତାଙ୍କ ଲେଖନୀରେ ରୂପ ପାଇଛନ୍ତି । ଖଳ, ସରଳ ଅଥବା ଗୌଣ ନାରୀ ଚରିତ୍ରମାନଙ୍କର ସୂକ୍ଷ୍ମାତିସୂକ୍ଷ୍ମ, ନିଖୁଣ ପର୍ଯ୍ୟବେକ୍ଷଣ, ସାହିତ୍ୟରେ ଉଚିତ ସଂସ୍ଥାପନ, ସେମାନଙ୍କ ବ୍ୟକ୍ତିତ୍ୱର ମୂଲ୍ୟାୟନ ତାଙ୍କ ଲେଖକୀୟ ଜୀବନର ବଡ଼ ସଫଳତା ।

ସ୍ୱେଚ୍ଛାଚାରୀ, କଳହୀ, ନଷ୍ଟ ପ୍ରକୃତି ଧାରୀ ଧୂର୍ତ୍ତା, ଭୟଙ୍କରୀ, ଦୁଷ୍ଟାନାରୀର ପରିଣତି ତାଙ୍କ ଲେଖନୀରେ ଅତୀବ ଭୟାବହ । ଛ’ମାଣ ଆଠଗୁଣ୍ଠର ‘ଚମ୍ପା’, ମାମୁଁର ‘ଚିତ୍ରକଳା’ ମଧ୍ୟରେ ଚିତ୍ରକଳାର ମନ୍ଦକୃତ୍ୟ ପାଇଁ ଦଣ୍ଡ ସ୍ୱରୂପ ପରିଣାମକୁ ଜେଲ୍‌ଦଣ୍ଡ ତଥା ଆଇନ୍ ମଧ୍ୟରେ ସୀମିତ କଲାବେଳେ, ‘ଚମ୍ପା’ ପରି ମହାଧୂର୍ତ୍ତା, କପଟୀ, ବିଶ୍ୱାସଘାତିନୀର ପରିଣତିକୁ କର୍ମ ଘେନି ଫଳ ପ୍ରଦାନ କରିଛନ୍ତି । ଏ କ୍ଷେତ୍ରରେ ଫକୀର ମୋହନଙ୍କ ସାର୍ଥକ ପ୍ରତିଲିପକୁ ଦୃଷ୍ଟି ଦିଆଯାଇପାରେ–

‘ଶୂକରୀ ଉପରେ କେନ୍ଦୁଆ ଯେପରି ଝାମ୍ପି ପଡ଼େ, ସେହିପରି, ଚମ୍ପା ଉପରକୁ ଝାମ୍ପିପଡ଼ିଲା । ଠିକ୍ ସେହି ସମୟରେ ଦୀପଟା ଗର୍ଭକୁ ପଡ଼ିଯାଇ ଦପ୍ କରି ଜଳି ଉଠି ନିଭିଯିବାରୁ କିଛି ଦିଶିଲା ନାହିଁ ।’ଗୋବିନ୍ଦା ଭଣ୍ଡାରୀ କ୍ଷୁରରେ ଚମ୍ପାର ଛଟପଟ ମୃତ୍ୟୁପରେ ମଧ୍ୟ ପାଠକ ହୃଦୟରେ ତା’ ପ୍ରତି ଟିକେ ଦୟା ଭାବ ଜାତ ହୁଏ ନାହିଁ ।

ସେହିପରି ନାରୀର ସ୍ୱଭାବ, ଚିନ୍ତା ଚେତନାର ବିଶ୍ଳେଷଣ ବେଳେ ସାମ୍ନାକୁ ଆସନ୍ତି – ଛ’ମାଣ ଆଠଗୁଣ୍ଠର ‘ସାଆନ୍ତାଣୀ’, ‘ସାରିଆ’, ଲଛମାର ‘ଲଛମା’, ‘ମହାଦେବୀ’, ମାମୁଁର ‘ଚାନ୍ଦମଣୀ’, ‘ବିଶାଖାଦେଈ’, ‘ସରସ୍ୱତୀ ଦେଈ’, ପ୍ରାୟଶ୍ଚିତର ‘ଇନ୍ଦୁପ୍ରଭା’, ସାଆନ୍ତାଣୀ ଶ୍ରୀହରିପ୍ରିୟା ପ୍ରଭୃତି ସରଳ ଚରିତ୍ରଗଣ । ସ୍ୱଭାବରେ ଶାଳୀନତା, ନିରୀହା, ପତିପ୍ରାଣାଗତା ଏହି ଚରିତ୍ରଗଣଙ୍କର ଭୂମିକା ତାଙ୍କ କଥା ସାହିତ୍ୟର ଜନପ୍ରିୟତା ନିମନ୍ତେ ଯଥେଷ୍ଟ ପୁଞ୍ଜି ଥିଲା ।

ଛ’ମାଣ ଆଠଗୁଣ୍ଠର ନିରବ ନାୟିକା ‘ସାଆନ୍ତାଣୀ’ ଜଣେ ପତିପ୍ରାଣାଭାବ ସଂପନ୍ନା, ଧର୍ମପରାୟଣା, ଜନମଙ୍ଗଳକାରୀ ସାର୍ଥକ ନାରୀ ଚରିତ୍ର । ମାନ–ଅଭିମାନ ବିହୀନା ହୋଇ ସହିଯାଇଛନ୍ତି ସ୍ୱାମୀଙ୍କର ଆଲୋଡାପଣିଆକୁ । ପାବନୀ ଗଙ୍ଗାସଦୃଶା ସ୍ୱାମୀଙ୍କ

ଅଧର୍ମ, ଅନ୍ୟାୟ, ପାପ–ତାପକୁ ଆପଣାର ଧର୍ମକର୍ମରେ ଧୋଇଦେଇଛନ୍ତି । ଅସୁମାରୀ ବ୍ୟଥା, ଦୁଃଖଯନ୍ତ୍ରଣାକୁ ହୃଦୟରେ ଚାପି ଅନ୍ୟର ସେବା ପାଇଁ ବ୍ୟାକୁଳ ହୋଇଉଠେ ତାଙ୍କ ଅନ୍ତରାତ୍ମା । ଲେଖକ କେତେ ବାଗରେ ଏ ଭାବକୁ ଦୃଷ୍ଟିପାତ କରିଛନ୍ତି, ଆମେ ଟିକେ ଦୃଷ୍ଟିଦେବା । 'ବେମାରୀ ସମୟରେ ପୋଇଲି ହେଉ ବା ବୋହୂ ହେଉ, ନାହିଁ କରୁ କରୁ ଗୋଡ଼ରେ ହାତରେ ହାତ ବୁଲାଇ ଦେବେ । ବାହାରେ ହେଉ ଘରେ ହେଉ, କେହି ଉପାସ ଥିଲେ ତାହାକୁ ନ ଖୁଆଇ ଜଳ ଛୁଅଁନ୍ତି ନାହିଁ । ଗାଁର ବିଧବା ବୁଢ଼ୀ ବା ଅନାଥା ବିଧବାମାନଙ୍କର ସର୍ବଦା ଖବର ନିଅନ୍ତି । କାହାରି ଘରେ ଖାଇବାକୁ ନଥିବାର ଶୁଣିଲେ, ସାଆନ୍ତଙ୍କୁ ଲୁଚାଇ, ପୁଅବୋହୂଙ୍କୁ ଲୁଚାଇ ଚାଉଳ ମାଣେ, ବିରିଜାଇ ମୁଠାଏ, ଲୁଣ ବକଟେ, ତେଲ ଟିକିଏ, କଖାରୁ ଖଣ୍ଡେ, ଭେଣ୍ଡି ଜହ୍ନି ପୁଞ୍ଜାଏ, ଯାହାର ଯାହା ଦରକାର ପଠାଇ ଦିଅନ୍ତି । ଗାଁର କାହାର ବୋହୂ ଝିଅ ଦେହକୁ ଲାଗିଲେ ପୋଇଲି ପଠାଇ ତନଖି କରନ୍ତି । ଦେଉନ୍ତୁ ନ ଦେଉନ୍ତୁ ଗରିବ ଦୁଃଖୀମାନଙ୍କର ତାଙ୍କଠାରେ ଗୋଟାଏ ବଡ଼ ଆଶା ଭରସା ଥାଏ ।'

(ଛ'ମାଣ ଆଠଗୁଣ୍ଠ)

ଏହିଭଳି ପୁଣ୍ୟାତ୍ମାଙ୍କ ପାଇଁ ଯେଉଁ ମଙ୍ଗରାଜ ପାପ କରି ବି ନିସ୍ତାର ପାଇ ଯାଉଥିଲେ, ତାଙ୍କ ବିୟୋଗାନ୍ତେ, ଘୋର ଦୁର୍ଗତି ଘୋଟି ଆସିଛି । ପାପାର୍ଜିତ ଧନ ସମୂଳେ ନାଶ ଯିବା ସହିତ, ଭଗିଆର ଗାଈ ନେତ ଏବଂ ଜମି ଚୋରି ଅଭିଯୋଗରେ ଜେଲ୍‌ଦଣ୍ଡ, ପରିଣାମରେ ମୃତ୍ୟୁଦଣ୍ଡ ଭୋଗ କରିଛନ୍ତି ।

ଏ କ୍ଷେତ୍ରରେ ସରଳା ନିରୀହା 'ସାରିଆ' ଚରିତ୍ରଟି ଫକୀର ମୋହନଙ୍କ ଅନ୍ୟତମ ସଫଳତା । ସନ୍ତାନଟିଏ ପାଇଁ ଚମ୍ପାର କୁଚକ୍ରାନ୍ତରେ ପଡ଼ି ପ୍ରାଣଠୁ ଅଧିକ ଭଲ ପାଉଥିବା ସ୍ୱାମୀ, ସନ୍ତାନ ତୁଲ୍ୟା ଗାଈ ନେତ, ଛ'ମାଣ ଆଠଗୁଣ୍ଠ ଜମିକୁ ନେଇ ଗଢ଼ିଉଠିଥିବା ସୁନାର ସଂସାର ଛାରଖାର ହୋଇଯାଇଛି । ପାଗେଳି ହୋଇ ଶେଷରେ ମୃତ୍ୟୁବରଣ କରିଛି ସେ ।

ନାରୀଟିଏ ସରଳା ହୋଇପାରେ ସତ, ମାତ୍ର ସହିବାର ସୀମା ଅତିକ୍ରାନ୍ତ ହେବା ପରେ ତାର ବିପ୍ଳବିଣୀ ବିଶ୍ୱରୂପକୁ ପ୍ରକଟ କରାଏ । ଶାନ୍ତସୁଶୀଳା ସ୍ୱଭାବ ପରିବର୍ତ୍ତେ ସଂହାରିଣୀ ଦଶଭୁଜା ଦୁର୍ଗାଙ୍କ ପରି ଦୁଷ୍ଟ ତଥା ଶତ୍ରୁବିନାଶନ ରୂପଧରି ସମାଜକୁ ସଠିକ୍ ଦିଗ୍‌ଦର୍ଶନ ପ୍ରଦାନ କରାଏ । ସେ ହୋଇଥାଇପାରେ ଅସୂର୍ଯ୍ୟଂପଶ୍ୟା, ପରାଧୀନା ସାଧାରଣୀ ନାରୀଟିଏ, ତଥାପି ତା'ର ଆହ୍ୱାନଭରା ବକ୍ର–ବାଣୀରେ ଉଲ୍ଲସିତ, ଉତ୍‌ଫୁଲ୍ଲିତ, ଉଚ୍ଛସିତ ଯୁବବୃନ୍ଦଙ୍କୁ ମାଟି ମାଆ ନିକଟକୁ ଆତ୍ମୋତ୍ସର୍ଗ ନିମନ୍ତେ ପ୍ରେରିତ କରେ । ନାରୀ ଶକ୍ତିର ଉତ୍ତୁଙ୍ଗ–ପ୍ରତିଭା ପ୍ରତି ବେଶ୍ ସଚେତନ ଥିଲେ ଫକୀର ମୋହନ । ନାରୀଟି ଯଦି ଅବଳା, ଦୁର୍ବଳା, ଅପରିଚିତା, ସୁଖ ସୌଖୀନର କଣ୍ଢେଇ ଭଳି ସାହିତ୍ୟରେ ପରିଚିତ ପାଏ, ତେବେ ଏ ଦେଶ ଓ ଏ ଜାତିର ଉନ୍ନତି ଚିନ୍ତା କରିବା ବୃଥା । ପ୍ରଥମ କରି ତାଙ୍କ ପରିପକ୍ୱ ମାନସିକତା ଏ ଧରାବନ୍ଧା ନୀତି ନିୟମକୁ ବିରୋଧ କରିଛି । ଏହାର ସଫଳ ଦୃଷ୍ଟାନ୍ତ 'ଲଛମା' ଉପନ୍ୟାସର ନାୟିକା'ଲଛମା' । ପ୍ରଥମେ ପାଠକ ତା'ସହ ସରଳା, ନିରୀହା ଚରିତ୍ର ଭାବେ ଭେଟ ହୁଅନ୍ତି ।

ଜଗନ୍ନାଥ ଦର୍ଶନ ନିମନ୍ତେ ତୀର୍ଥଯାତ୍ରାରେ ଆସିଥିବା ଲଛମା ବର୍ଗୀ ଆକ୍ରମଣ ତଥା ମରହଟ୍ଟାଙ୍କ ଉତ୍ପାତରେ ସ୍ୱାମୀ ବାଦଲଠାରୁ ବିଚ୍ଛିନ୍ନ ହୋଇଯାଇଛି । ଘଟଣାକ୍ରମରେ ଏଇ ସରଳା, ନିରୀହା ଗ୍ରାମ୍ୟ ରମଣୀଟି ସ୍ୱାମୀ ଏବଂ ପିତୃହନ୍ତାଙ୍କଠାରୁ ପ୍ରତିଶୋଧ ନେବା ନିମନ୍ତେ ବୀରାଙ୍ଗନା ରମଣୀ ଭାବେ ଚିତ୍ରିତ ହୋଇଛି । ସେ ହୋଇପାରେ ସାଧାରଣ କିନ୍ତୁ ତା'ର ପଣ ଅସାଧାରଣ । ତା'ରି ଭାଷାରେ– 'ମୋର ବର୍ତ୍ତମାନ ଦୁଇଟି କର୍ତ୍ତବ୍ୟ–ସ୍ୱାମୀଙ୍କ ଅନ୍ୱେଷଣ, ପିତୃହନ୍ତା ମରହଟ୍ଟାର ବଧ ସାଧନ, ଶତ୍ରୁ ଅସଂଖ୍ୟ, ପ୍ରବଳ, ମୁଁ ଅନାଥା, ଏକାକିନୀ । ଚିନ୍ତାନାହିଁ, ଭୟ ଭଞ୍ଜନ ମଧୁସୂଦନ ସହାୟ ହେବେ, କୁଳ ଦେବତା ଏକ ଲିଙ୍ଗ ରକ୍ଷାକରିବେ, ସାଧୁକାର୍ଯ୍ୟରେ ପ୍ରଭୁ ସହାୟ ହୁଅନ୍ତି ।' (ଲଛମା)

ପରିଣତିରେ ତା'ର ଏ ପଣ ସାର୍ଥକ ହୋଇଛି । ଶତ୍ରୁ ଭାସ୍କର ପଣ୍ଡିତକୁ ହତ୍ୟାକରି ସ୍ୱାମୀ ସହ ତା'ର ପୁନର୍ମିଳନ ହୋଇଛି ।

ହୋଇପାରେ 'ଲଚ୍ଛମା' ଏକ ଐତିହାସିକ ଉପନ୍ୟାସ, ମାତ୍ର ତା'ର କାଳଜୟୀ ଚରିତ୍ର 'ଲଚ୍ଛମା'ର ବୀରତ୍ୱପୂର୍ଣ୍ଣ ଆଚରଣ ବର୍ତ୍ତମାନ ପରିପ୍ରେକ୍ଷୀ ପାଇଁ କ'ଣ ଆଦ୍ୟ ସ୍ୱତନ୍ତ୍ରତାର ଆହ୍ୱାନ୍ ନଥିଲା କି !! ଏ ଯେ ନାରୀ ଜାଗରଣ ନିମନ୍ତେ ଉଚ୍ଛ୍ୱାସର ଆଦ୍ୟସୂତ୍ର, ଏହା କ'ଣ ଆମେ ଅସ୍ୱୀକାର କରିପାରିବା !!!

'ମାମୁ'ର 'ସରସ୍ୱତୀ ଦେଈ', ପ୍ରାୟଶ୍ଚିତର 'ଶ୍ରୀହରିପ୍ରିୟା'ଙ୍କର ସନ୍ତାନ ବତ୍ସଳା, ସ୍ନେହମୟୀ ଜନନୀର ସ୍ୱରୂପକୁ ମଧ୍ୟ ଔପନ୍ୟାସିକ ଦେଇଛନ୍ତି ଯଥାର୍ଥ ରୂପ ।

ଉପନ୍ୟାସମାନଙ୍କର ଗୌଣ ଚରିତ୍ର ଯଥା : – ମାଣିକ, ମରୁଆ, ଗେହ୍ଲେଇ, ନାକଫୋଡ଼ିଆ ମାଆ, ଜଗା ଫତେସିଂହର ମାଆ ପ୍ରମୁଖ ନାରୀ ସ୍ୱତନ୍ତ୍ରତା ତଥା ସ୍ୱାଧୀନତାର ମନ୍ତ୍ର ଉଚ୍ଚାରଣ କରନ୍ତି ।

ଏଇ ସଂକ୍ଷିପ୍ତ ତର୍ଜମାରୁ ଏତିକି ମନେହୁଏ ଯେ, ସରଳ, ଖଳ ପ୍ରଭୃତି ଚରିତ୍ରଗଣଙ୍କ ଜରିଆରେ ଫକୀର ମୋହନ ସମାଜକୁ ଶୁଣାଇଛନ୍ତି ସତର୍କ ବାର୍ତ୍ତା । ସେ 'ଚମ୍ପା', 'ଚିତ୍ରକଳା' ପରି ଖଳନାୟିକାଙ୍କ ଜରିଆରେ ସମାଜର ସରଳା ନାରୀମାନଙ୍କୁ ସାରିଆ ଓ ଚାନ୍ଦମଣି ଆଦିଙ୍କ ପରି ଏତେ ନିରୀହା, ଭାଗ୍ୟ ବିଶ୍ୱାସୀ ହୋଇ ଅଧୋବଦନ କରି ପଡ଼ିରହିବା ପାଇଁ ଶତ ବାରଣ କରିଛନ୍ତି । ଏ ସୁସ୍ୱଭାବ ପାଇଁ ତମେମାନେ ତାଙ୍କ ଦ୍ୱାରା ବଳି ନ ପଡ଼ିଯାଅ, ବରଂ ତାଙ୍କୁ ଦେଖି ତମେ ସୁ ସଚେତନ ହୁଅ । ସତେକି ଏହା ତାଙ୍କ ହୃଦୟନିଃସୃତ ବାଣୀ ଥିଲା । ବାସ୍ତବିକ କେତେ ମହତ୍ ସତେ ଲେଖକଙ୍କ ସୁଚିନ୍ତିତ ଭାବନା !!!

ଆଧୁନିକ କଥା ସାହିତ୍ୟର ଯୋଗଜନ୍ମା କ୍ରାନ୍ତିକାରୀ ସ୍ରଷ୍ଟାପୁରୁଷ – କଥା ସମ୍ରାଟ୍ ଫକୀର ମୋହନ ସେନାପତିଙ୍କ ବାମାବାଦୀ ଭାବଧାରା ବର୍ତ୍ତମାନ ସାହିତ୍ୟ ତଥା ସମାଜ ପାଇଁ ଥିଲା ପ୍ରାକ୍ ମଶାଲ୍ ତଥା ନିତ୍ୟ ନୂତନ । ନାରୀ ସାହସୀ ହେଉ, ସମାଜରେ ସୁ–ମର୍ଯ୍ୟାଦା ପାଇଁ ନିଜକୁ ପ୍ରସ୍ତୁତ କରୁ, ସ୍ୱେଚ୍ଛାଚାରିତାକୁ ଉପେକ୍ଷା କରି ପରିବର୍ତ୍ତନର ବାହିକା ହେଉ, ଏହା ହିଁ ତ ସେନାପତୀୟ ସାହିତ୍ୟରେ ବାମାବାଦୀ ଭାବାଧାରିତ ଚେତନାର ଆଭିମୁଖ୍ୟ ।

### ଅନୁସୃତ ଗ୍ରନ୍ଥମାଳା


୧. ସେନାପତି ଫକୀର ମୋହନ, ଗଳ୍ପସ୍ୱଳ୍ପ ୧ମ ଭାଗ ଓ ଗଳ୍ପସ୍ୱଳ୍ପ ୨ୟ ଭାଗ ।

୨. ବେହେରା କୃଷ୍ଣ ଚରଣ, ଦାଶ ଅଧ୍ୟାପକ ଦେବେନ୍ଦ୍ର କୁମାର, ଫକୀର ମୋହନ ଗ୍ରନ୍ଥାବଳୀ (୧ମ ଖଣ୍ଡ) ।

୩. ସାମନ୍ତରାୟ ଡଃ ନଟବର, ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩–୧୯୨୦)

୪. ଆଚାର୍ଯ୍ୟ ଡଃ ବୃନ୍ଦାବନ, ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ ।

୫. ଭଞ୍ଜ ସଂଘମିତ୍ରା, ଗଳ୍ପଧୂରୀଣ ସ୍ରଷ୍ଟା ଫକୀର ମୋହନ ।

୬. ମହାନ୍ତି ସୁରେନ୍ଦ୍ର, ଫକୀର ମୋହନ ସମୀକ୍ଷା ।

୭. ସାମନ୍ତରାୟ ଡଃ ନଟବର, ଫକୀର ମୋହନ ସାହିତ୍ୟ ସମୀକ୍ଷା ।

୮. ମାନସିଂହ ଡଃ ମାୟାଧର, ସରସ୍ୱତୀ ଫକୀର ମୋହନ ।

୯. ଦାଶ ଅଧ୍ୟାପକ ସର୍ବେଶ୍ୱର, ଯୁଗସ୍ରଷ୍ଟା ଫକୀର ମୋହନ ।



ଅତିଥି ଅଧ୍ୟାପିକା
ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର, ପିନ୍– ୭୫୧୦୨୨


